# An Authentic Edition
OF
# KUNJABIHAR
BY
**Krushna Kar**

# କୁଞ୍ଜବିହାର

ଭକ୍ତକବି ୰ କୃଷ୍ଣକରଙ୍କ ବିରଚିତ

ପ୍ରଥମ ମୁଦ୍ରଣ

ପାଠାନ୍ତର ମୁଖବନ୍ଧ ଓ ଟୀକାସହ
ଶ୍ରୀ ଶିବପ୍ରସାଦ ଦାଶଙ୍କଦ୍ୱାରା
ସମ୍ପାଦିତ

—୦—

ପ୍ରକାଶକ—
ଟ୍ରେଡିଂ କମ୍ପାନୀ, କଟକ

ମୂଲ୍ୟ ଟ୍ —

## ଶ୍ରୀଯୁକ୍ତ ଶିବପ୍ରସାଦ ଦାଶଙ୍କ ପୁସ୍ତକାବଳୀ

| | | |
|---|---|---|
| ୧। | ଭାରତ ଇତିହାସ (ପ୍ରବେଶିକା ପରୀକ୍ଷା ସକାଶେ) | ଟ ୨ ୯ |
| ୨। | ମଧ୍ୟୋଚ୍ଚ ଭାରତ ଇତିହାସ | ଟ ୦ ୩ |
| ୩। | ଉଚ୍ଚପ୍ରାଥମିକ ଭାରତ ଇତିହାସ (ନୂତନ ଛାପା) | ଶୀଘ୍ର ବାହାରିବ |
| ୪। | ମିବାର (ରାଜସ୍ଥାନ—୧ମ ଖଣ୍ଡ) | ଟ ୧ । |
| ୫। | ମାରବାର (ରାଜସ୍ଥାନ—୨ୟ ଖଣ୍ଡ) | ଟ ୦ ୳ |
| ୬। | ଅମର (ରାଜସ୍ଥାନ—୩ୟ ଖଣ୍ଡ) | ଶୀଘ୍ର ବାହାରିବ |
| ୭। | ବୀରକେଶରୀ ଶିବାଜୀ | ଟ ୦ ୳ |
| ୮। | ଗୁରୁଗୋବିନ୍ଦ ସିଂହ | ଟ ୦ ୳ |
| ୯। | ରୁକ୍ମିଣୀ | ଶୀଘ୍ର ବାହାରିବ |
| ୧୦। | ଧ୍ରୁବ (ଶିଶୁସାହିତ୍ୟ) | ଟ ୦ ୶ |
| ୧୧। | ରଘୁ ( ,, ) | ଟ ୨ । |
| ୧୨। | ସରଳ ରଘୁବଂଶ (ଶିଶୁସାହିତ୍ୟ) | ଟ ୦ ।୶ |
| ୧୩। | କୁଞ୍ଜବିହାର (ଭକ୍ତକୃଷ୍ଣ ବର) | ଟ ୧ ୯ |
| ୧୪। | ରଘୁନାଥ ବିଳାସ ( ,, ) | ଶୀଘ୍ର ବାହାରିବ |
| ୧୫। | ଅସ୍ପୃଶ୍ୟ ଶଙ୍କର (ଐତିହାସିକ ଚତୁର୍ଦ୍ଦଶ କାବ୍ୟ)—ଯନ୍ତ୍ରସ୍ଥ | |

—ଉତ୍କଳର ସର୍ବତ୍ର ପ୍ରାପ୍ତବ୍ୟ—

———

# ମୁଖବନ୍ଧ



ବରପାଲି ଅନ୍ତର୍ଗତ ବାଇଙ୍ଗପାଲିର ଗୌନ୍ତିଆ ବଂଶର ମୋହର ପ୍ରିୟ ଛାତ୍ର ଶ୍ରୀମାନ୍ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ସାହାଯ୍ୟରେ ମୁଁ "ଲୁଣ୍ଠିବିହାର"ର ଖଣ୍ଡିଏ ପାଣ୍ଡୁଲିପି ପୋଥି ପାଇଥିଲି । କୃଷ୍ଣଚନ୍ଦ୍ରଙ୍କ ଜ୍ୟେଷ୍ଠ ଭାଇ ଶ୍ରୀଯୁକ୍ତ କରୁଣାକର ପ୍ରଧାନ ବିଶେଷ ଯତ୍ନ କରି କବିଙ୍କ ବଂଶଧରମାନଙ୍କଠାରୁ କାବ୍ୟ ପ୍ରକାଶ କରିବା କ୍ଷମତା ଆଣାଇଦେଲେ । ତା' ପରେ ମୁଁ ଗ୍ରନ୍ଥର ଉଦ୍ଧାର କାର୍ଯ୍ୟରେ ଲାଗି ଦେଖିଲି, ପୋଥିର ସ୍ଥାନେ ସ୍ଥାନେ କେତେକ ପ୍ରମାଦ ଅଛି । ତଦନ୍ତ ନେଇ ବୁଝିଲି, କବିଙ୍କ ସ୍ୱଲିଖିତ ଗ୍ରନ୍ଥଟି ନାହିଁ ଏବଂ ସବୁ ପୋଟରେ ତିନିଖଣ୍ଡ ମାତ୍ର ଗ୍ରନ୍ଥପ୍ରତିଲିପି ହୋଇଅଛି । ଏହି ତିନି ପ୍ରତିଲିପିମଧ୍ୟରୁ ଦୁଇଖଣ୍ଡ ସମାନ ଥିଲା ଏବଂ ମୁଁ ପାଇଥିବା ଖଣ୍ଡିକ ତହିଁ ମଧ୍ୟରୁ ଖଣ୍ଡିଏ । ବହୁ ଚେଷ୍ଟା କରି ବରଗଡ଼ ନିକଟବର୍ତ୍ତୀ ଗୋଡ଼େଝିରା ଗ୍ରାମର ଶ୍ରୀଯୁକ୍ତ ଚିନ୍ତାମଣି ମେହେରଙ୍କ ଘରୁ ମୋହର ମାଉଳ ଶ୍ରୀଯୁକ୍ତ ଧନପତି ଦାଶ ଗୌନ୍ତିଆଙ୍କ ସାହାଯ୍ୟରେ ତୃତୀୟ ପୋଥିଟି ଆଣାଇଲି । ପାଠାନ୍ତର ଯାହା ମିଳିଲା, ପାଦଟୀକାରେ ଦେଇଅଛି । କବିଙ୍କର ପୌତ୍ର ଶ୍ରୀଯୁକ୍ତ ଲମ୍ବୋଦର କର ସେହି ପୋଥି ଦେଖି କହିଲେ ଯେ ତାହା କବିଙ୍କ ହସ୍ତଲିଖିତ ପୋଥି ।

ବଂଶପରିଚୟ—କବି କୃଷ୍ଣ କବିଙ୍କ ପିତାମହ ଫକୀର କର ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଶାସନରୁ ସମ୍ବଲପୁର ରାଜଧାନୀକୁ ଆସିଥିଲେ । ସେଠାରେ କିଛିଦିନ ରହି ସେ ବୋଡ଼ାସମ୍ବର ଜମିଦାରଙ୍କୁ ପ୍ରସ୍ଥାନ କରିଥିଲେ । ଫକୀର ବିଦ୍ୱାନ୍ ଥିଲେ । ସେ କବିତା ରଚନା କରୁ

ପାରୁଥିଲେ । ନରସିଂହ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଅଦ୍ଭୁତରଚଣ୍ଡ ଦେଇ ସେ ଗୋଟିଏ କବିତା ଲେଖିଥିଲେ । ଏହି କବିତା ନଷ୍ଟ ହୋଇ ଯାଇଅଛି ସତ, ତନ୍ତୁ କବିଙ୍କ ବଂଶଧରମାନେ କବିତାର କେତେକ ଚରଣ ଅଦ୍ୟପର୍ଯ୍ୟନ୍ତ ବୋଲି ପାରୁଛନ୍ତି । ତହିଁର ଦୁଇ ଚରଣ ତଳେ ଉଦ୍ଧାର କଲି ।

ପ୍ରଭୁ ମାର୍ଜାରକେଶରୀ,
ଅତିଥି ବ୍ରାହ୍ମଣ ଅଛି ବନେ ବାସ କରି ।

ନରସିଂହ ତୀର୍ଥ ଦର୍ଶନ କରିବାକୁ ଯାଇ ଫକୀରଙ୍କ କାଳ ହୋଇଥିଲା ।

ଫକୀରଙ୍କ ମୃତ୍ୟୁ ପରେ ତାଙ୍କ ଦୁଇ ପୁତ୍ର କାଶୀ କର ଓ ଚକ୍ରଧର କର ବୋଡ଼ାସମ୍ବର ପରିତ୍ୟାଗ କରି ବରପାଲି ଚକ୍ରବର୍ତ୍ତୀ କୁମ୍ଭାରି ଗ୍ରାମରେ ବାସ କରିଥିଲେ । ଏତେଦିନ ପର୍ଯ୍ୟନ୍ତ ସେମାନଙ୍କର ଭୂସମ୍ପତ୍ତି ହୋଇ ପାରି ନ ଥିଲା । କାଶୀ କର କେତେବେଳେ କୁମ୍ଭାରିରେ କେତେବେଳେ ବା ବରପାଲି ଜମିଦାରି ଅନ୍ତର୍ଗତ ବାରଙ୍ଗପାଲିରେ ଅବସ୍ଥାନ କରୁଥିଲେ ।

କାଶୀ କର ପ୍ରାଣାୟାମପରାୟଣ ନୈଷ୍ଠିକ ବ୍ରାହ୍ମଣ ଥିଲେ । ପ୍ରତ୍ୟହ "କୋଟିଏ ଗାୟତ୍ରୀ" (?) ଜପ ନ କଲେ ସେ ଜଳସ୍ପର୍ଶ କରୁ ନ ଥିଲେ । କବି କୃଷ୍ଣ କର ତାଙ୍କ 'ରଘୁନାଥ ବିଳାସ" କାବ୍ୟରେ ଗାଇଛନ୍ତି—

ରମାଦେବଙ୍କନ୍ଦ ମୋର ଅଜାଙ୍କ ନାମ ଫକୀର,
ଦାଦା ନାମ ଚକ୍ରଧର, ଦେବ ସୂକ୍ଷ୍ମ ନର ।
ଋଷି ପ୍ରାଏ ବିପ୍ରବର ପିତା ମୋର କାଶୀ କର
କୋଟିଏ ଗାୟତ୍ରୀ ଜପିଥିଲେ ଟି ସାର ।

କାଶୀ ବଦନେ ପ୍ରାଣାୟାମ ଓ ଗାୟତ୍ରୀ ଜପ ପରେ ମୁଣ୍ଡିଆ ମାରିଛନ୍ତି; ଆଉ ଉଠୁ ନାହାନ୍ତି । ଲୋକେ ଦେଖିଲେ, ବହୁ ସମୟ ଗଲା-ବୁଢ଼ା ଉଠୁ ନାହାନ୍ତି । ସେମାନଙ୍କର ସନ୍ଦେହ ହେଲା—ବୁଢ଼ାଙ୍କୁ ଉଠାଇ ଦେଖିଲେ, ପ୍ରାଣବାୟୁ ଛାଡ଼ି ଯାଇଛି ।

କାଶୀନାଥ ସୁକବି ଥିଲେ । ତାଙ୍କ ରଚିତ କେତେକ କବିତା ଆଜି ସୁଦ୍ଧା ଅଛି । ପାଠକଙ୍କ କୌତୂହଳ ନିବାରଣ ନିମନ୍ତେ ତାଙ୍କ ରଚିତ ସଜନୀଗୀତରୁ କେତେକ ପଂକ୍ତି ଏଠାରେ ଉଲ୍ଲେଖ କଲି ।

କୁଞ୍ଜେ ଚନ୍ଦ୍ରପା କୁମାରୀ ।
କହନ୍ତି ଶ୍ରୀମତୀ କରକୁ ଧରି । ଗୋ ।
କାହିଁ ନଇଲେ କୁଞ୍ଜବିହାରୀ । ସଜନୀରେ । ୧ ।

କ୍ଷୀଣ ହେଲା ଏବେ ତନୁ ।
ଖଣ୍ଡିଗଲେ ସୁଖ ନନ୍ଦର କାହ୍ନୁ ଗୋ ।
କ୍ଷିପ୍ର ନଳିନ ନ ଦେଖି ଭାନୁ । ସଜନୀରେ । ୨ ।

ଗଲା ବନୁ ବଂଶୀଧାରୀ ।
ଶୁଣ ଶୁଣି ତନୁ ହେଉଛି ସାରି ଗୋ ।
ଗଙ୍ଗାଧର-ରିପୁ ହେଲା ସାରି । ସଜନୀ ରେ । ୩ ।

ଘନବରନ ସୁନ୍ଦର
ଘର କଲେ ଯାଇ ମଥୁରା ପୁର ଗୋ ।
ଘାଣ୍ଟି ହେଉଛି ଅମ୍ଭ ଶରୀର ସଜନୀରେ । ୪ ।

---

ତନ୍ତି (ତନ୍—ବର୍ଣ୍ଣନି କ୍ରିୟା)—ତୋ । ତନ୍ତିପା—ଗୋପାଳ, ଗୌଡ଼

ଉମାପତି-ରୂପ-ଦେଖା ।

ଉନ୍ମତ୍ତ କଲେ ଗୋପୀଙ୍କର ଚିନ୍ତା ଗୋ ।

ଉରେ ଲିହିଗଲେ କୁଚ ତଟୀ । ସଙ୍ଗୀରେ । ୬ ।

ଏହି ଗୀତ କଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷର ନିୟମରେ ରଚିତ । ଭାବ କି ସୁନ୍ଦର, କି ମଧୁର ! ଭାଷା କି ସରଳ ! ସୁବିଧା ହେଲେ ମୁଦ୍ରଣ କରିବାର ବାସନା ରହିଲା ।

**କବିଙ୍କ ଜୀବନୀ**—'କୃଷ୍ଣବିହାର' କାବ୍ୟର କବି କୃଷ୍ଣ କର ଏହି କୁଳୀନ ବ୍ରାହ୍ମଣ କାଶୀ କରଙ୍କ ପୁତ୍ର । ଶାସ୍ତ୍ରଜ୍ଞାନ ଓ କାବ୍ୟରଚନା ପାଟବରେ କୃଷ୍ଣ କର ପିତା ଓ ପିତାମହଙ୍କୁ ବଳିଗଲେ । କବିଙ୍କ ଜନ୍ମ ଓ ମୃତ୍ୟୁର ସଠିକ ସାଲର ନିର୍ଣ୍ଣୟ କରିବାର କୌଣସି ଉପାୟ ନାହିଁ, କିନ୍ତୁ ତାଙ୍କ ଶେଷ ରଚନା "ରଘୁନାଥବିଳାସ"ରେ ସେ ସେହି ଗ୍ରନ୍ଥ ରଚନାର କାଳ ଦେଇଛନ୍ତି । କବି ରଘୁନାଥବିଳାସର ରଚନାର ଅବ୍ୟବହିତ ପରେ ଇହଲୀଳା ସାଙ୍ଗ କରିଥିଲେ । ତାଙ୍କ ପୁଅ ଭରତ କର ଜୀବିତା-ବସ୍ଥାରେ କହୁଥିଲେ, କବି "ସାତ କମ୍ ଶହେ" ବର୍ଷ ଅର୍ଥାତ୍ ୯୩ ବର୍ଷ ବଞ୍ଚିଥିଲେ ।

ଚକ୍ଷୁରେ ଶାଳିବାହନ ଶକାବ୍ଦ ଅଟେ ପୁଣ

ଅଠରଶ ବାର ବୋଲି ଗଣୁ ସକଳ ।

ରସିକେ ଶୁଣ ସମ୍ବାଦ ବୀର ବିକ୍ରମାଦିତ୍ୟାବ୍ଦ

ଉଣେଇଶ ଶହ ସତଚାଳିଶ ସାଲ ।

ବିଭୁ ଏ ଶରଦ ଅଦ୍ୟର ।

ରଚନା କରିବା ଦୋଷ ମୋ କ୍ଷମା କର ॥

ରସାରେ ଭୋଗ କଳିର ବରଷ ଚଉ ହଜାର

ଅଧିକ ନଅଶ ଏକାନବେ ଅଟଇ ।

ରାଜା ଶ୍ରୀମୁକୁନ୍ଦଦେବ          ରାଜାଙ୍କ ପରେ ଯେ କବି
ବୟସ ବାର ବରଷ ତାଙ୍କର ହୋଇ ।
'ରଘୁନାଥ ବିଳାସ' ଗୀତ ।
ରାଜତ୍ୱରେ ତାଙ୍କର ହୋଇଲା ରଚିତ ।

ସୁତରାଂ ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛି, କବି କୃଷ୍ଣ କର ବିକ୍ରମାବ୍ଦ ପ୍ରାୟ ୧୯୫୦ରେ ମାନବଲୀଳା ସମ୍ବରଣ କରିଥିଲେ ଏବଂ (୧୯୫୦–୯୩) ବିକ୍ରମ ସମ୍ବତ୍ ପ୍ରାୟ ୧୮୫୭ରେ ଜନ୍ମଗ୍ରହଣ କରିଥିଲେ । ଅର୍ଥାତ୍ ଖ୍ରୀଷ୍ଟୀୟ ପ୍ରାୟ ୧୮୦୧ରେ ତାଙ୍କର ଜନ୍ମ ଏବଂ ପ୍ରାୟ ୧୮୧୪ରେ ମୃତ୍ୟୁ ଘଟିଥିଲା ।

କବି ନାନାଶାସ୍ତ୍ରରେ ଧୁରୀଣ ଥିଲେ । ବିଶେଷତଃ ଜ୍ୟୋତିଷ ଓ ଚିକିତ୍ସାଶାସ୍ତ୍ରରେ ସେ ଯଥେଷ୍ଟ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ପିତାଙ୍କ ମୃତ୍ୟୁପରେ ସେ ବାରଙ୍ଗପାଲି ଓ କୁମ୍ଭାରି ଉଭୟ ଗ୍ରାମ ତ୍ୟାଗ କରି ସୋନପୁର ରାଜ୍ୟ ଅନ୍ତଃପାତୀ ରାମପୁର ଜମିଦାରୀକୁ ପ୍ରସ୍ଥାନ କରିଥିଲେ । ସେହି ଜମିଦାରୀ ଅନ୍ତର୍ଗତ କର୍ଲେ ଗ୍ରାମରେ ଅବସ୍ଥାନ କରୁଥିବା ବେଳେ ରାମପୁର ଜମିଦାର ରାଜସିଂହ ତାଙ୍କ ସଦ୍‌ଗୁଣର ପରିଚୟ ପାଇଥିଲେ । କୃଷ୍ଣ କର ରାଜସିଂହଙ୍କୁ ଉନ୍ମାଦ ବ୍ୟାଧିରୁ ମୁକ୍ତ କରି ଭୂମିବୃତ୍ତି ପୁରସ୍କାର ପାଇଥିଲେ । ଜମିଦାର ତାଙ୍କୁ ନିଜ ଜମିଦାରୀର କାର୍ଯ୍ୟୀ ବା ଖଜାଞ୍ଚି ନିଯୁକ୍ତ କରିଥିଲେ । ରାଜସିଂହଙ୍କ ପୁତ୍ର ଓ ପରବର୍ତ୍ତୀ ଜମିଦାର ବଳରାମ ସିଂହ ଅପୁତ୍ରକ ଅବସ୍ଥାରେ ମୃତ ହେବାରୁ ତାଙ୍କ ଅନ୍ତେ ତାଙ୍କ ପିତୃବ୍ୟ (ରାଜ ସିଂହଙ୍କ ଭାଇ) ନାରାୟଣ ସିଂହ ଜମିଦାର ହେଲେ । ନାରାୟଣଙ୍କ ସଙ୍ଗେ କୃଷ୍ଣ କରଙ୍କ ମନୋମାଳିନ୍ୟ ଘଟିବାରୁ ସେ ଦତ୍ତକ ଭୂସମ୍ପତ୍ତି ଓ ଜମିଦାରୀ ଉଭୟ ପରିହାର କରି ବାରଙ୍ଗପାଲିକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ସମୟରେ ଭବାନୀ ସିଂହ ବରପାଲିର ଜମିଦାର ଥିଲେ । ତାଙ୍କ ଅମଳରେ ଥରେ ବରପାଲିରେ ଭୀଷଣ ବସନ୍ତରୋଗର ପ୍ରାଦୁର୍ଭାବ ହୋଇଥିଲା । ଭବାନୀଙ୍କ ଦୁଇ ପୁତ୍ର, ଗଜେନ୍ଦ୍ର ଓ ନରେନ୍ଦ୍ର, ଉକ୍ତ ରୋଗରେ ପୀଡ଼ିତ ହେଲେ । କୃଷ୍ଣ କବିଙ୍କର ଚିକିତ୍ସାରେ ସେମାନେ ସୁସ୍ଥ ହେଲେ ଏବଂ ବରପାଲିର ବହୁ ରୋଗୀ ମୃତ୍ୟୁକବଳରୁ ରକ୍ଷା ପାଇଲେ । କୃଷ୍ଣକବିଙ୍କ ବଡ଼ ସୁଖ୍ୟାତି ହେଲା । ସନ୍ତୁଷ୍ଟ ହୋଇ ଭବାନୀ ସିଂହ ତାଙ୍କୁ ବାରଗାଁ ପାଲିରେ ଖଣ୍ଡିଏ ଜମିର ବ୍ରହ୍ମୋତ୍ତର ଚିରଦିନ ସକାଶେ ପ୍ରଦାନ କଲେ । ବଂଶଧରମାନେ ଆଜିପର୍ଯ୍ୟନ୍ତ ସେହି ବ୍ରହ୍ମୋତ୍ତର ଜମିର ଭୋଗ କରୁଅଛନ୍ତି ।

କୃଷ୍ଣ କବି ଯେ କେବଳ ଜ୍ୟୋତିଷିକ ଓ କବିରାଜ ଥିଲେ ଏପରି ନୁହେ । ସେ ଜଣେ ପ୍ରସିଦ୍ଧ ଗାୟକ ମଧ୍ୟ ଥିଲେ । ସମ୍ବଲପୁର ଜିଲ୍ଲା, ବିଶେଷତଃ ବରଗଡ଼ ତହସିଲର ଗ୍ରାମେ ଗ୍ରାମେ ତାଙ୍କର ସୁଗାୟକତା ଉଦ୍‌ଘୋଷିତ ହେଉଅଛି । ବୈଦେହୀଶବିଳାସ, ବିଦଗ୍ଧଚିନ୍ତାମଣି, ରସକଲ୍ଲୋଳ ପ୍ରଭୃତି ବହୁବିଧ ଗ୍ରନ୍ଥର ଭାବ ବୁଝାଇବାରେ ତାଙ୍କପରି ପଣ୍ଡିତ ସେତେବେଳେ ଦ୍ୱିତୀୟ ନ ଥିଲେ ।

ଅଣୁ କବିତା ରଚନାରେ କବିଙ୍କର ବିଶେଷ ପ୍ରତ୍ୟୁତ୍ପନ୍ନତା ଥିଲା । ଥରେ ଭବାନୀ ସିଂହଙ୍କ ନାତିଙ୍କ ବିବାହରେ କବି ବରଯାତ୍ରୀରୂପେ ସାନ ଖେମଣ୍ଡିକୁ ଯାଇଥିଲେ । ସେଠାରେ ପାଣ୍ଡିତ୍ୟ ପରୀକ୍ଷାରେ କେହି କବିଙ୍କର ସମକକ୍ଷ ହୋଇ ପାରିଲେ ନାହିଁ । ଏହି ପରୀକ୍ଷା ପରେ ପାଠର ପରୀକ୍ଷା ହେଲା । ସାନ ଖେମଣ୍ଡି ରାଜା କହିଲେ, "ଆପଣ ପାଣ୍ଡିତ୍ୟ ଓ ଶାସ୍ତ୍ରଜ୍ଞାନରେ ସମସ୍ତଙ୍କୁ ଜିଣିଲେ । ବର୍ତ୍ତମାନ ଯେବେ ସଭାସଦ୍‌ମାନଙ୍କୁ ଓ ଉପସ୍ଥିତ ଜନତାକୁ ଚଡ଼ାଇ ପାରିବେ, ଆପଣଙ୍କୁ ଯଥୋଚିତ ପୁରସ୍କୃତ କରାଯିବ ।" କବି ମୁଖେ ମୁଖେ ଅକଳ୍ପିତ ଗୀତ ଗାଇବାକୁ ଲାଗିଲେ ।

ଧନ୍ୟ ଧନ୍ୟ ସାନ ହେମନ୍ତ ବାଣୀ ।
ମାଳପା ପୁତ୍ରୀ. ମନୁଷ୍ୟେ ଗନ୍ଧର୍ବ, ଦେଶଯାକ ବଡ଼ ଦୃଷ୍ଟି ପାଣି ।
ସ୍ତ୍ରୀଙ୍କ ନାକରେ ଢନ ଢନ ଗୁଣା ସର୍ବେ ଦିଶୁଛନ୍ତି ଢୁଣ୍ଡ୍‌କୀମୁହାଁ ।
ଫୁଲ ପୁନା ପିନ୍ଧି ଫୁଲାଇ ଫୁଲାଇ, ଆରମ୍ଭ କହିଲେ ସରଇ ନାହିଁ ।
× × × × ।

ସଭାରେ ବଡ଼ ଚାଞ୍ଚଲ୍ୟ ଦେଖାଗଲା । ସଭାସ୍ଥ ସମସ୍ତେ ବିରକ୍ତ ହେଲେ । ଗୀତ ବନ୍ଦ ହେଲା । ରାଜା କବିଙ୍କ ଉପରେ ବହୁ ପାରିତୋଷିକ ପ୍ରଦାନ କଲେ ।

କବି ଶାକ୍ତ ଥିଲେ । ସେ 'ତାରଦା'ର 'ତାରଦାଈ'ଙ୍କୁ ଧାରଣାଦ୍ୱାରା ସନ୍ତୁଷ୍ଟ କରିଥିଲେ । ଧାରଣା ପରେ ତାରଦାଈ କବିଙ୍କୁ ବର ଯାଚ୍ଞା ସକାଶେ ଆଦେଶ କଲେ । କବି କହିଲେ, "ମା, ମୁଁ ଆଉ ମାଗିବି କଣ ? ତୁ ସର୍ବଦା ମୋହର ଆଗେ ଆଗେ ଥିବୁ ।" ରଘୁନାଥବିଳାସର ଶେଷ ଛାନ୍ଦରେ କବି ଗାଇଛନ୍ତି ।

"ରୁଦ୍ରକାନ୍ତା ତାରଦାଈ, ନାମ ଯାର କୃପାମୟୀ
ସେ ଦେବୀ ଇଷ୍ଟ ମୋହର କହିଲି ମୁହିଁ ।"

'କୁଞ୍ଜବିହାର'ର ଶେଷ ଛାନ୍ଦରେ ମଧ୍ୟ କବି ବର୍ଣ୍ଣନା କରିଛନ୍ତି—

"କାଶୀ କରଙ୍କ କୁମର, ନାମ ମୋର କୃଷ୍ଣ କବି,
କୈଳାସବାସିନୀ କାଳୀ ଇଷ୍ଟ ମୋହର ।"

କବି ଆରାଧନା ବଳରେ ଶକ୍ତିଙ୍କୁ ସନ୍ତୁଷ୍ଟ କରିଥିଲେ । ଥରେ ସେ ପୁରୀଧାମକୁ ଯାତ୍ରା କରିଥିଲେ । ନୀଳକଣ୍ଠ ପଣ୍ଡା ପ୍ରତିହାରୀଙ୍କ ପୁତ୍ର ଉନ୍ମାଦ ରୋଗରେ ପୀଡ଼ିତ ଥିଲେ । ବହୁ ଚିକିତ୍ସକଙ୍କ ଚିକିତ୍ସା ବିଫଳ ହୋଇଥିଲା । ପ୍ରତିହାରୀ କୃଷ୍ଣଙ୍କ ଗୁଣର ପରିଚୟ ପାଇ

ତାଙ୍କୁ ପୁତ୍ରର ଆରୋଗ୍ୟ ସକାଶେ ପ୍ରାର୍ଥନା କଲେ । କୃଷ୍ଣ କର ଲୋକଙ୍କ ନିବାରଣ ସତ୍ତ୍ୱେ ପୁରୀ ମନ୍ଦିରରେ ଥିବା କାଳୀଙ୍କ ସଦନକୁ ପଶି ସେଠାରେ ଏକରାତ୍ରି ଧାରଣା ବସିଲେ ଏବଂ ଦେବୀଙ୍କ ଆଦେଶପ୍ରାପ୍ତ ହୋଇ ତପସ୍ୟା ଆରମ୍ଭ କଲେ । କହିବା ବାହୁଲ୍ୟ—ରୋଗର ଉପଶମ ହେଲା । ପଣ୍ଡା ପ୍ରୀତ ହୋଇ ପୁରସ୍କାର ପ୍ରଦାନ କରିବାକୁ ଗଲେ । ତପସ୍ୱୀ କହିଲେ "ପଣ୍ଡା, ମୁଁ ଦର୍ଶନ ସକାଶେ ଆସିଅଛି । ସେଥିରେ ଏପରି ପୁଣ୍ୟ ଅର୍ଜନ ଭାଗ୍ୟକୁ ଘଟେ । ପୁରସ୍କାର ଗ୍ରହଣ କଲେ ପୁଣ୍ୟ କ୍ଷୀଣ ହେବ । ମୁଁ ପୁରସ୍କାର ଗ୍ରହଣ କରିବି ନାହିଁ । ଯେବେ ଆପଣଙ୍କର ଦୟା ହୁଏ, ସ୍ୱାମୀଙ୍କର ବଡ଼ଶିଂହାର ବେଶ ଦେଖାଇ ଦିଅନ୍ତୁ ।"

ପଣ୍ଡା ଅନୁରୋଧ ରକ୍ଷା କଲେ । 'ବଡ଼ଶିଂହାର' ବେଶ ଦର୍ଶନ କରି କବି କୃଷ୍ଣ କର ମୌଖିକ ରଚନାବଳୀରେ ଜଣାଣ ଆରମ୍ଭ କଲେ—

ଅଧିକ ନ ମାଗଇ ଆନ ।
ଛଡ଼ା ତୁଳସୀ ମୁଣ୍ଡେ, କୈବଲ୍ୟ ଥିବ ତୁଣ୍ଡେ
ବୃନ୍ଦାବନରେ ଜୀବ ଯାଉ ହେ । ମହାବାହୁ । ଘୋଷା ।

ଗନ୍ଧସାର ଅର୍ଚ୍ଚିତ, ଗଳେଣ ବନମାଳୀ, ରୂପକୁ କହିଁ ଲଜ୍ଜା ବେଲରୁ । ଇନ୍ଦୁ ଅଛଇ କଣୀନିକା ଅକ୍ଷର ପ୍ରାଏ, ଦେବ ଦ୍ୱୀପରେ କଳ୍ପତରୁ ହେ ମହାବାହୁ । ୧ । କଳା କଣ୍ଠ—ଶ୍ରୀମୁଖ, ଦେଖିଲେ କୋଟି ଜନ୍ମ, ଦୁଃଖ ହରଇ ତତ୍କାଳରେ । କମଳା ଅଭିଳାଷୀ ହବନ୍ଦା କାଳେ ଯନ୍ତ୍ରୀ, ଇନ୍ଦ୍ରାଦି ଶଙ୍କର ପଦ୍ମରେ ହେ ମହାବାହୁ । ୨ । ଅହେ ଶ୍ରୀ ଜଗନ୍ନାଥ, ଅନାଥ ଲୋକନାଥ, ସଂସାରାର୍ଣ୍ଣବରେ ବୋଇତ । ନୀଳାଦ୍ରି ଷଟ୍‌ପୁରେ, ଶତଦଳ ପଦ୍ମରେ, ମଧ୍ୟରେ ରତ୍ନବେଦୀ ସ୍ଥିତ ହେ । ମହାବାହୁ । ୩ । ଇତ୍ୟାଦି ।

**ଗ୍ରନ୍ଥ ରଚନାକାଳ**—କବିଙ୍କ ରଚିତ ପ୍ରାୟ ସମସ୍ତ ଛନ୍ଦ କାବ୍ୟ ମଧ୍ୟରେ ତାଙ୍କର ତିନି କାବ୍ୟ ପ୍ରଧାନ । ୧ କୃଷ୍ଣବିହାର, ୨ ରଘୁନାଥ ବିଳାସ ଓ ୩ ପଦ୍ମପୋଇ । ଏହି ତିନି କାବ୍ୟ ମଧ୍ୟରେ ପଦ୍ମପୋଇ ପ୍ରଥମେ ରଚିତ ହୋଇଥିଲା । କର୍ଲେରେ ଅବସ୍ଥାନ କରିବା ବେଳେ କବି ଏହା ରଚନା କରିଥିଲେ । ତହିଁର ଏକ ସ୍ଥାନରେ ଅଛି—

"ମଣ୍ଡଳାଦି ପର୍ଶୁରାମର । ଚଉଦକୋଣରେ ଅଟଇ ମୋହର ଘର,"
ଅର୍ଥାତ୍ "ପରଶୁରାମଙ୍କର ଆଦିମଣ୍ଡଳ, ଚଉଦକୋଣ ( ସୋନପୁରରେ ) ମୋହର ଘର" । କୃଷ୍ଣବିହାର" ତତ୍ପରବର୍ତ୍ତୀ ରଚନା । କବିଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବେ ଅର୍ଥାତ୍ ସେବା ଶେଷରେ 'ରଘୁନାଥବିଳାସ' ରଚିତ ହୋଇଥିଲା । ଏହି ତିନି କାବ୍ୟର ରଚନାର ମଝିରେ ମଝିରେ ଚୌପଦୀ ଓ ଜଣାଣମାନ ରଚିତ ହୋଇଥିଲା । ଭାଷା ଓ ଭାବର କ୍ରମବିକାଶ 'କୃଷ୍ଣବିହାର'କୁ 'ରଘୁନାଥବିଳାସ'ର ପୂର୍ବବର୍ତ୍ତୀ ରଚନା ବୋଲି ପ୍ରତିପାଦିତ କରୁଅଛି । 'ରଘୁନାଥବିଳାସ' ରଚନା ବେଳକୁ କବିଙ୍କ ବିଦଗ୍ଧତା ଅଧିକ ପରିସ୍ଫୁଟ ହୋଇଥିଲା । ତାଙ୍କ ଯଶଃ ମଧ୍ୟ ପ୍ରସାରିତ ହୋଇଥିଲା । ତେଣୁ ସେ 'ରଘୁନାଥବିଳାସ'ରେ ନିଜ ପରିଚୟ, ଗ୍ରନ୍ଥରଚନାକାଳ ଇତ୍ୟାଦି ସ୍ପଷ୍ଟଭାବରେ ବିବୃତ କରି ଅଛନ୍ତି ।

**କାବ୍ୟବିଚାର**—କବିଙ୍କ ପୂର୍ବୋକ୍ତ କାବ୍ୟତ୍ରୟର ବହୁ ସୁନାମ ଅଛି । ଏ ଅଞ୍ଚଳରେ ବୃଦ୍ଧମାନେ ସେହି କାବ୍ୟତ୍ରୟର ଅଂଶବିଶେଷମାନ କଣ୍ଠସ୍ଥ କରିଅଛନ୍ତି । ମୋହର ନିବାସ ଗ୍ରାମ ରୋହଣୀପୁରାକୁ କବି ବିଶେଷ ପରିମାଣରେ ଯିବା ଆସିବା କରୁଥିଲେ ଏବଂ ମୋହର ପରିବାର ମଧ୍ୟରେ ତାଙ୍କର ବନ୍ଧୁତା ସମ୍ବନ୍ଧ ଥିବାରୁ ଗ୍ରାମବାସିଙ୍କୁ ସେହି କାବ୍ୟମାନ ଶୁଣାଇବାର ସୁଯୋଗ ପାଉଥିଲେ । ମୋହର ଜ[illegible]ଦେଇ

ବ୍ରଜମୋହନ ଦାସ ଓ କବି ନିଜେ ସୁପ୍ରସିଦ୍ଧ ଗାୟକ ଥିବାରୁ, ସେମାନେ ଗ୍ରନ୍ଥଗୁଡ଼ିକ ଏପରି ସୁଲଳିତ ବୃତ୍ତରେ ଗାୟନ କରୁଥିଲେ ଯେ ଜନତା ମନ୍ତ୍ରମୁଗ୍ଧ ପରି ତାହା ଶୁଣୁଥିଲେ । କାବ୍ୟର ଉତ୍କର୍ଷତା ଜନତାର ଉତ୍କଣ୍ଠା ବେଳକୁ ବେଳ ବଢ଼ାଉଥିଲା ।

'କୁଞ୍ଜବିହାର' ଓଡ଼ିଆ ସାହିତ୍ୟକୋଷର ଏକ ଅମୂଲ୍ୟ ରତ୍ନ-ସମ୍ପଦ । ସେହି କାବ୍ୟର ସମାଲୋଚନା କରିବା, ତହିଁର ପ୍ରକୃତ ଗୁଣ ଲୋକଚକ୍ଷୁ ଆଗରେ ଉପସ୍ଥାପିତ କରିବା ମାଦୃଶ ସ୍ୱଳ୍ପଶକ୍ତି ବ୍ୟକ୍ତିର ସାମର୍ଥ୍ୟ ଓ ଜ୍ଞାନର ବହିର୍ଭୂତ । କୃଷ୍ଣ କବି ଉଚ୍ଚ କୋଟିର କବି । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ଓ ଦୀନକୃଷ୍ଣଙ୍କର ସେ ଉପଯୁକ୍ତ ଦାୟାଦ । "କୁଞ୍ଜବିହାର"ର ଭାଷା ସରଳ ଓ ସୁଖପାଠ୍ୟ, ଭାବ ଉଚ୍ଚ ଓ ଗମ୍ଭୀର, ରଚନାପରିପାଟୀ ମଧୁର ଓ ନୈସର୍ଗିକ ।

'କୁଞ୍ଜବିହାର' ସମ୍ଭୋଗଶୃଙ୍ଗାରରସାତ୍ମକ କାବ୍ୟ । ଏହାର ନାୟକ ଶ୍ରୀକୃଷ୍ଣ, ନାୟିକା ଶ୍ରୀରାଧା, ବିଷୟ ଶ୍ରୀକୃଷ୍ଣଙ୍କର କୌମାର, ପୌଗଣ୍ଡ ଓ କୈଶୋରଲୀଳା । ଶ୍ରୀକୃଷ୍ଣଙ୍କର କଂସବଧ ଓ ଗୋପୀମାନଙ୍କ ନିକଟକୁ ଦୂତ ପ୍ରେରଣ ପର୍ଯ୍ୟନ୍ତ ବିଷୟ ଏଥିରେ ବର୍ଣ୍ଣିତ ହୋଇଅଛି । କାବ୍ୟ ବର୍ଣ୍ଣିତ ଲୀଳା ବିଶେଷତଃ ବୃନ୍ଦାବନର କୁଞ୍ଜରେ ଅଭିନୟ କରିଥିବାରୁ କବି ଏହାକୁ "କୁଞ୍ଜବିହାର" ଆଖ୍ୟା ପ୍ରଦାନ କରିଛନ୍ତି । 'କୁଞ୍ଜବିହାର' ଗତ ବିଷୟ ଭାଗବତ, ବିବିଧ ପୁରାଣ ଇତ୍ୟାଦିରେ ସଙ୍କଳିତ ହୋଇଥିଲେ ମଧ୍ୟ କବି ଅଗାଧ ପାଣ୍ଡିତ୍ୟ ଓ ଅସାମାନ୍ୟ ନୈସର୍ଗିକ ପ୍ରତିଭା-ବଳରେ କାବ୍ୟକୁ ଏକ ଅଭିନବ ଓ ମନୋହର ଆକାର ପ୍ରଦାନ କରି ଅଛନ୍ତି । କବିଙ୍କର ଶକ୍ତିଶାଳୀ ସିଦ୍ଧ ବର୍ଣ୍ଣନା ପାଠକର ମନ ବିମଳ ଭକ୍ତିମିଶ୍ର ଆନନ୍ଦରସରେ ପରିପ୍ଲୁତ ହୁଏ ।

କାବ୍ୟର ନାୟକ ଶ୍ରୀକୃଷ୍ଣ ବ୍ରହ୍ମ ବା ପରମାତ୍ମାଙ୍କ ସ୍ୱରୂପ, ନାୟିକା ରାଧା ଜୀବାତ୍ମାଙ୍କ ସ୍ୱରୂପ ।

"× × × × । ଆତ୍ମା ରାଧା ସ୍ୱରୂପମୟେ ।
ପରମଆତ୍ମା କୃଷ୍ଣରୂପ । ଶରୀରେ ଚନ୍ଦ୍ର ଅଟେ ଅପ ।"
* (ଚୈତନ୍ୟ ଭାଗବତ, ୨୧ଶ ଅଧ୍ୟାୟ—ଈଶ୍ୱର ଦାସ)
"ପରମବ୍ରହ୍ମ ଜଗନ୍ନାଥ । ଯେଉଁଠାରୁ ଅବତାର ପଥ ।
× × × ×

ତହିଁରୁ ରାଧା ମୋ ପ୍ରକୃତି । ପୁରୁଷ କୃଷ୍ଣ ପୂର୍ଣ୍ଣଜ୍ୟୋତି ।"
* (ଚୈତନ୍ୟଭାଗବତ, ୨୦ ଅଧ୍ୟାୟ—ଈଶ୍ୱର ଦାସ)

ପୁଣି ଜୀବାତ୍ମା ଓ ପରମାତ୍ମା ଉଭୟ ଏକ । ଦୁହିଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

"କୃଷ୍ଣର ରାଧା ନାମ ହୋଇ । ବୈଷ୍ଣବୀ ତତ୍ତ୍ୱ ଆରାଧଇ ।
ଶ୍ରୀଜଗନ୍ନାଥ ଯନ୍ତ୍ରରୂପ । ଶ୍ରୀରାଧା ଅଙ୍ଗ ଯହିଁ ଗୋପ୍ୟ ।
ରାଧାଙ୍ଗେ କୃଷ୍ଣ ଗୋପ୍ୟ ହୋଇ । ଏ ତତ୍ତ୍ୱ ବେଦେ ବଖାଣଇ ।"
* (ଚୈତନ୍ୟ ଭାଗବତ—୨୦ଶ ଅଧ୍ୟାୟ—ଭବ—ଈଶ୍ୱର ଦାସ)

ଯେ ରାଧା ସେହି କୃଷ୍ଣ । ରାଧାଙ୍କ ଅଙ୍ଗରେ କୃଷ୍ଣ ଏବଂ କୃଷ୍ଣଙ୍କ ଅଙ୍ଗରେ ରାଧା ଗୋପ୍ୟ ରହନ୍ତି, ଅର୍ଥାତ୍ ପରମାତ୍ମା ଓ ଜୀବାତ୍ମା ମଧ୍ୟରେ ପରସ୍ପର ଅଙ୍ଗାଙ୍ଗୀଭାବ ରହିଅଛି । ଜୀବାତ୍ମାକୁ ଯେପରି ପରମାତ୍ମା ଏବଂ ପରମାତ୍ମାକୁ ଯେପରି ଜୀବାତ୍ମା । ଉଭୟ ପରସ୍ପରଠାରୁ ଅଭିନ୍ନ । ଏହି ଭାବରେ ବିହ୍ୱଳ ହୋଇ ବ୍ରହ୍ମଜ୍ଞାନୀ କହିଛନ୍ତି, "ସୋଽହଂ ।"

---

* ପ୍ରାଚୀ ଲାଇବ୍ରେରୀ ।

ପରମାତ୍ମାଙ୍କଠାରୁ ଜୀବାତ୍ମା ଭିନ୍ନ । ଏହି ପରମାତ୍ମା ବା ବ୍ରହ୍ମ ନିରବଦ୍ୟ, ନିର୍ଗୁଣ, ମୋକ୍ଷର ଆସ୍ପଦ ଏବଂ ପରମାତ୍ମାଙ୍କଠାରୁ ଜୀବାତ୍ମା ଅଭିନ୍ନ ହୋଇଥିଲେ ମଧ୍ୟ, ଜୀବାତ୍ମା ମାୟାପ୍ରଭାବରେ ନିଜକୁ ଚିହ୍ନିପାରେ ନାହିଁ । ଫଳତଃ, ଚନ୍ଦ୍ରାଦି ଅକର୍ତ୍ତା ଅନନ୍ତ ସେ, ହୀନଜ୍ଞାନ ସ୍ୱଳ୍ପବଳ କର୍ତ୍ତା ଓ ଭୋକ୍ତା ହୋଇପଡ଼େ । ଜୀବାତ୍ମା ଏପରି ପାପପୁଣ୍ୟର ଫଳ ଭୋଗ କରି, ଶେଷରେ ଯେତେବେଳେ ଜଗତ୍ ଅବ୍ୟକ୍ତ ମାୟାରେ ସୂକ୍ଷ୍ମ ଭାବରେ ଅବସ୍ଥାନ କରେ, ସେତେବେଳେ ସୁଷୁପ୍ତି ପ୍ରାପ୍ତ ଓ ପରମାତ୍ମାରେ ଲୀନ ହୁଏ ।

ଜୀବାତ୍ମା ପରମାତ୍ମାଙ୍କୁ ଲାଭ କରିବା ସକାଶେ ସର୍ବଦା ବ୍ୟାକୁଳ । ପରମାତ୍ମାଙ୍କୁ ଲାଭ କରିବା ସକାଶେ ଜୀବାତ୍ମା ଯେତେ ବ୍ୟାକୁଳ, ଜୀବାତ୍ମାଙ୍କୁ ମାୟାରୁ ମୁକ୍ତ କରିବା ସକାଶେ ପରମାତ୍ମା ତତୋଽଧିକ ବ୍ୟାକୁଳ । ବୃନ୍ଦାବନରେ ମଧୁର ମୁରଳୀ ବଜାଇଥିଲେ କିଏ, କାହିଁକି ? ଶ୍ରୀକୃଷ୍ଣ ମଧୁର ମୁରଳୀ ବଜାଇଲେ, ଗୋପୀମାନଙ୍କ ମନକୁ ଟାଣି ଆଣିବା ସକାଶେ । ଗୋପୀମାନେ ତ ତାଙ୍କୁ ସେଥିଲାଗି ପ୍ରାର୍ଥନା କରି ନ ଥିଲେ, ସେଥିପୂର୍ବରୁ ତ ସେମାନେ ସେ ବିଷୟରେ ଶ୍ରୀକୃଷ୍ଣଙ୍କୁ କିଛି କହି ନ ଥିଲେ । ଶ୍ରୀକୃଷ୍ଣ ଦେଖିଲେ, ଗୋପୀମାନେ ପତି-ପୁତ୍ର-ବିଷୟଲିପ୍ତ ହୋଇ ତାଙ୍କୁ ଭୁଲି ଯାଉଛନ୍ତି, ତାଙ୍କ ପ୍ରତି ସେମାନଙ୍କର ମନ ଆକର୍ଷଣ କରିବାକୁ ହେବ । ଭାଗବତରେ ଅଛି—

"ଭଗବାନପି ତା ରାତ୍ରୀଃ ଶରଦୋତ୍ଫୁଲ୍ଲମଲ୍ଲିକାଃ ।
ବୀକ୍ଷ୍ୟ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ॥"

ଶରତ୍ ଋତୁ, ଉତ୍ଫୁଲ୍ଲ ମଲ୍ଲିକା ଯୋଗେ ରାତ୍ରି ରମଣୀୟ ହୋଇଅଛି । ତେବେ ଏହିପରି ରାତ୍ରିରେ ରମଣ କରିବା ଇଚ୍ଛା ହେଲା କାହାର ? ଶ୍ରୀକୃଷ୍ଣଙ୍କର ନା ଗୋପୀମାନଙ୍କର ? ପୁଣି ରମଣ—କିପ୍ରକାର

ଫଳଭୋକ୍ତା କିଏ ? କବି କହୁଛନ୍ତି, "ମନସ୍ତନ୍ତେ"; ଫଳଭୋକ୍ତା ସ୍ୱୟଂ ଭଗବାନ୍, ଗୋପୀମାନେ ନୁହନ୍ତି । ଗୋପୀମାନେ କୃଷ୍ଣଙ୍କୁ ଲାଭ କରିବେ, ତେବେ ସେଥିରେ ସୁଖ କାହାର ? ସ୍ୱୟଂ ଶ୍ରୀକୃଷ୍ଣଙ୍କର । ରମଣ ପାଇଁ ବ୍ୟାକୁଳ କିଏ ? ଶ୍ରୀକୃଷ୍ଣ । ପରମାତ୍ମା ବା ପୁରୁଷ ବେଶରେ ଶ୍ରୀକୃଷ୍ଣ ଏବଂ ଜୀବାତ୍ମା ବା ପ୍ରକୃତି ବା ଦାସୀ ବେଶରେ ଶ୍ରୀରାଧା (ଅଥବା ଗୋପୀମାନେ) ଯେଉଁ ଲୀଳା କରୁଛନ୍ତି, ତାହା ଜୀବର ମାୟା—ଆବରଣ ଉନ୍ମୋଚନ ଓ ମୋକ୍ଷଲାଭର ରୂପାନ୍ତର ମାତ୍ର । ଜୀବାତ୍ମାର ଚକ୍ଷୁ ମାୟାରେ ଅଜ୍ଞାନ; ସେ ନିଜକୁ ଚିହ୍ନିପାରେ ନାହିଁ । ସେଥିପାଇଁ ପରମାତ୍ମାଙ୍କୁ ଚିହ୍ନିପାରେ ନାହିଁ । ପରମାତ୍ମା ଅତି ବ୍ୟାକୁଳ । ସେ ତାକୁ ମାୟାମୁକ୍ତ କରିବାକୁ, ବିଷୟ ପରିତ୍ୟାଗ କରାଇବାକୁ କାତର ହୋଇ ଉଠନ୍ତି, ବ୍ରହ୍ମଜ୍ଞାନ—ମୁରଲୀ ବଜାଇ ଜୀବାତ୍ମାକୁ ଚେତାଇ ଦିଅନ୍ତି, ନିଜ ଆଡ଼କୁ ଟାଣି ଆଣିବାକୁ ଚେଷ୍ଟା କରନ୍ତି । ଏଇଥିରେ ତାଙ୍କର ଆନନ୍ଦ, ସୁଖ । ସେ ଯେ ଆତ୍ମାରାମ, ଅତ୍ମାରେହିଁ ତାଙ୍କର ରମଣ । ଏଇଥିଲାଗି କବିଶ୍ରେଷ୍ଠ ଜୟଦେବ କହନ୍ତି—

"ବହୁମନୁତେ ନନୁ ତେ ତନୁସଙ୍ଗତ ପବନଚଳିତମପି ରେଣୁଂ"

—ତୁମ୍ଭର ତନୁରେ ଲାଗିଥିବା ପବନରେ ଉଡ଼ି ଆସିଥିବା ସାମାନ୍ୟ ରେଣୁ ମଧ୍ୟ ତାଙ୍କର ବହୁମତ । ଆହା, କବି କି ସରଳ ଭାଷାରେ ଅତ୍ମା-ପରମାତ୍ମାର କି ନିଗୂଢ଼ଭାବ ବ୍ୟକ୍ତ କରିଛନ୍ତି ! ଜୀବାତ୍ମାର ଶରୀରସଂଲଗ୍ନ ପବନସ୍ଖଳିତ ସାମାନ୍ୟ ରେଣୁ ପରମାତ୍ମାଙ୍କର ଏଡ଼େ ଆଦରର ସାମଗ୍ରୀ !! ଜୀବାତ୍ମା ପରମାତ୍ମା ପକ୍ଷରେ ଏଡ଼େ ପ୍ରେମର ସାମଗ୍ରୀ !!! ଏହି ପ୍ରେମର ସାମଗ୍ରୀକୁ ନିଜଠାକୁ ଟାଣି ନେବାକୁ ସେ ବ୍ରହ୍ମଜ୍ଞାନ—ମୁରଲୀ ବଜାନ୍ତି । ପରମାତ୍ମାରୂପୀ ଶ୍ରୀକୃଷ୍ଣ ପୁରୁଷ ବା ସ୍ୱାମୀ ବେଶରେ ବ୍ରହ୍ମଜ୍ଞାନ—ମୁରଲୀ ବଜାଇ ଜୀବ ବା ସ୍ତ୍ରୀରୂପିଣୀ ଜୀବାତ୍ମା ରାଧାଙ୍କର ମାୟା ବା ଅଜ୍ଞାନ

ଆବରଣ ଉନ୍ମୋଚନ କରିବା ଉଦ୍ୟମ କରୁଛନ୍ତି; ସେହି ମୋହନ ମୁରଲୀର ଅଦ୍ଭୁତ ନିନାଦରେ ରାଧାଙ୍କର ପ୍ରାଣ ସୁପ୍ରୋଦ୍ଭିତ ପରି ଉନ୍ମତ୍ତ ହୋଇଅଛି, ସେ ପାର୍ଥିବସତ୍ତା ବିସ୍ମୃତ ହୋଇଛନ୍ତି, କୃଷ୍ଣଭାବରେ ନିମଗ୍ନ-ବିହ୍ୱଳ ହୋଇଛନ୍ତି, ବିଷୟ ଭୁଲି ଯାଇଛନ୍ତି; ସଚ୍ଚିଦାନନ୍ଦଙ୍କ ପ୍ରାପ୍ତି ସକାଶେ ତାଙ୍କ ପ୍ରାଣ ଉଚ୍ଛ୍ୱସିତ ଆତ୍ମବିସ୍ମୃତ ହୋଇଅଛି । ବ୍ରହ୍ମଜ୍ଞାନ-ବଳରେ ଯେତେବେଳେ ଜୀବାତ୍ମା ନିଜକୁ ଚିହ୍ନିପାରେ, ପରମାତ୍ମାଙ୍କ କଥା ବୁଝିପାରେ, ସେତେବେଳେ ତାକୁ ବିଷୟ ବିଷପରି ଲାଗେ; ଗୋପୀମାନଙ୍କ ପତି ପୁତ୍ର ବିଷୟ ସମ୍ପତ୍ତି ତ୍ୟାଗ କରିବା ପରି ସେ ସମସ୍ତ ପରିତ୍ୟାଗ କରେ, କେବଳ ପରମାତ୍ମାହିଁ ତାକୁ ଦେଖାଯାନ୍ତି ଆଉ କିଛି ଦିଶେ ନାହିଁ ।

ଏହି ମହାଭାବକୁ କବିମାନେ ନାନା ପୁରାଣରେ ବର୍ଣ୍ଣନା କରିଛନ୍ତି । ରାଧାକୃଷ୍ଣଙ୍କର ରମଣକୁ ବା ଶ୍ରୀକୃଷ୍ଣ ଗୋପୀମାନଙ୍କର ରମଣକୁ ମାନବୋଚିତ ଆକାରରେ ବର୍ଣ୍ଣନା କରିଛନ୍ତି । ଏହି ଚିତ୍ରଣରେ ଅଶ୍ଳୀଳତାର ଲେଶଗନ୍ଧ ନାହିଁ ! କେହି ରଙ୍ଗିନ ପ୍ରତିଚକ୍ଷୁ ସାହାଯ୍ୟରେ ଯାହା ଦେଖେ, ତାକୁ ରଙ୍ଗିନ ଦିଶେ । ସେହିପରି ରାଧାକୃଷ୍ଣଙ୍କର ଏହି ଗୂଢ଼ଲୀଳା ମାନବର ବିକୃତ ଚକ୍ଷୁରେ ଦୁଷ୍ଟ ଦେଖା ଯାଇପାରେ; କିନ୍ତୁ ତାହା ବସ୍ତୁତଃ ଶୁଦ୍ଧ, ପୂତ, ନିର୍ମଳ ଓ ନିର୍ଦ୍ଦୋଷ । ଭକ୍ତର ବା ବ୍ରହ୍ମଜ୍ଞାନୀର ଚକ୍ଷୁରେ ତାହା କେବେ ଦୁଷ୍ଟ ବୋଲି ଦେଖାଯାଏ ନାହିଁ । ଯେ ଇନ୍ଦ୍ରିୟର ଅଗୋଚର, ତାଙ୍କଠାରେ କାମର ଉଦ୍ରେକ କାହିଁ ? ବିଷୟ ଭୋଗ ବା କାହିଁ ? ଯେ ନିର୍ଗୁଣ, ରୂପରେଖହୀନ, ତାଙ୍କଠାରେ ପାର୍ଥିବ ଆବିଳତା ସମ୍ଭବେ କିପରି ?

ଯୋଗେଶ୍ୱର ଶଙ୍କରାଚାର୍ଯ୍ୟ ଓ ଅର୍ଯ୍ୟା ବିଦୁଷୀ ''ଉଭୟଭାରତୀ''ଙ୍କ ମଧ୍ୟରେ ଯେତେବେଳେ ଶାସ୍ତ୍ରୀୟ ବିବାଦ ଚାଲିଥିଲା, ଉଭୟଭାରତୀ ଶଙ୍କରାଚାର୍ଯ୍ୟଙ୍କୁ ଅବାଲ୍ୟ-ବ୍ରହ୍ମଚାରୀ ମନେକରି କାମଶାସ୍ତ୍ରସଂକ୍ରାନ୍ତ

କେତେକ ପ୍ରଶ୍ନ କଲେ । ଶଙ୍କର ବିଦୁଷୀଙ୍କ ପ୍ରଶ୍ନର ସମାଧାନ ସକାଶେ ତାଙ୍କ-ଠାରୁ ଏକମାସ ଅବସର ଗ୍ରହଣ କଲେ ଏବଂ ଯୋଗବଳରେ ସ୍ୱୀୟ ଶରୀର ତ୍ୟାଗପୂର୍ବକ ଏକ ରାଜାର ମୃତ ଶରୀରରେ ପ୍ରବେଶ କରି କାମଶାସ୍ତ୍ର ଶିକ୍ଷା କରିବା ସକାଶେ ଶିଷ୍ୟମାନଙ୍କ ସମ୍ମୁଖରେ ପ୍ରସ୍ତାବ କଲେ । ଏହି ପ୍ରସ୍ତାବରେ ତାଙ୍କ ପ୍ରଧାନ ଶିଷ୍ୟ ସନନ୍ଦନ ବ୍ରହ୍ମଚର୍ଯ୍ୟ ବ୍ରତଭଙ୍ଗ ଆଶଙ୍କା କରି ବ୍ୟାକୁଳତା ପ୍ରକାଶ କଲେ । ଶଙ୍କର କହିଲେ, 'ବତ୍ସ' କାମଶାସ୍ତ୍ର ଅତି ଗର୍ହିତ, ବିଷୟବାସନା ଯତିମାନଙ୍କର ସୁଦ୍ଧା ବ୍ରତଭଙ୍ଗ କରାଇ ଥାଏ । କିନ୍ତୁ ସମସ୍ତଙ୍କ ପକ୍ଷରେ ଏହା ସତ୍ୟ ନୁହେ । ଶ୍ରୀକୃଷ୍ଣ ଅହୀର ବଧୂମାନଙ୍କ ସଙ୍ଗେ ବିହାର କରିଥିଲେ, କିନ୍ତୁ *ବଜ୍ରୋଲୀ ଯୋଗ ପ୍ରଭାବରେ ତାଙ୍କର ବ୍ରତଭଙ୍ଗ ( ରେତଃପାତ ) ହୋଇ ନ ଥିଲା । ଆସକ୍ତି ବିନିର୍ମୁକ୍ତ ଲୋକଠାରେ କାମୋଦୟ ଅସମ୍ଭବ । ସଙ୍କଳ୍ପହିଁ କାମର ମୂଳ । ସଙ୍କଳ୍ପନାଶରେ ଭବବନ୍ଧନାଶ ଅବଶ୍ୟମ୍ଭାବୀ । ଅନାସକ୍ତ (ମୁକ୍ତ) ଲୋକକୁ ବିଷୟସୁଖ କୌଣସି କ୍ରମେ ଆବଦ୍ଧ କରି ରଖିପାରେ ନାହିଁ । ଲୋକ ସ୍ୱପ୍ନରେ ପାପପୁଣ୍ୟ ଅନୁଷ୍ଠାନ କରେ, କିନ୍ତୁ ସେ ସେହି ସ୍ୱପ୍ନକୃତ ପାପପୁଣ୍ୟର ଫଳଭୋଗୀ ହୁଏ ନାହିଁ । ପରମାର୍ଥତତ୍ତ୍ୱବିତ୍ ସହସ୍ର ଜୀବହତ୍ୟା କରୁ, ସହସ୍ର ଯଜ୍ଞାନୁଷ୍ଠାନ କରୁ, ସେଥିରେ ତାହାର ପାପ ବା ପୁଣ୍ୟ କିଛି ହୁଏ ନାହିଁ । ମୁଁ କାମଶାସ୍ତ୍ର ଅନୁଶୀଳନ ମାତ୍ର କରିବି । ସେଥିରେ ମୋହର କୌଣସି ପାପ ହେବାର ଆଶଙ୍କା ନାହିଁ । ତଥାପି ଶିଷ୍ଟସରଣୀ ରକ୍ଷା କରିବା ସକାଶେ ସ୍ୱକୀୟ ଶରୀର ସାହାଯ୍ୟରେ ତାହା ନ କରି ଅନ୍ୟର ଶରୀର ସାହାଯ୍ୟରେ ସମ୍ପାଦନ କରିବି ।"

---

*ମେହ୍ରଣେନ ଶନୈଃ ସମ୍ୟଗୂର୍ଦ୍ଧ୍ୱାକୁଞ୍ଚନମଭ୍ୟସେତ୍ ।
ପୁରୁଷୋ ବାପି ନାରୀ ବା ବଜ୍ରୋଲୀଂ ସିଦ୍ଧିମାପ୍ନୁୟାତ୍ ॥
"ହଠ ପ୍ରଦୀପିକା ।"

ବ୍ରହ୍ମଚର୍ଯ୍ୟର ଶ୍ରେଷ୍ଠ ସାଧକ ଶଙ୍କରଙ୍କ ପକ୍ଷରେ ଯଦି ଏପରି ମାନବଶକ୍ତି ବହିର୍ଭୂତ ଆଚରଣ ସମ୍ଭବ ହେଲା, ନିର୍ଗୁଣ ନିର୍ଲିପ୍ତ ନିରାକାର ପରମେଶ୍ୱର ସ୍ୱଦେହଧାରୀ ଅଘଟନଘଟନାପଟୀୟସୀ ଶ୍ରୀକୃଷ୍ଣଙ୍କ ପକ୍ଷରେ ତାହା ଯେ ଅତି ଅକିଞ୍ଚିତ୍କର, ସେହି କଥା କହିବା ନିତାନ୍ତ ଅନାବଶ୍ୟକ । ସ୍ୱୟଂପ୍ରକାଶ ଅପ୍ରମାଣଙ୍କୁ ସାର୍ଦ୍ଧତ୍ରିହସ୍ତ ପରିମିତ ମାନବ କି କେବେ ନିଜ ତୁଳାଦଣ୍ଡରେ ମାପି ଯୋଖି ପାରେ ?

ରାଜା ପରୀକ୍ଷିତ ଏହି ସମ୍ପର୍କରେ ଭାଗବତ ଦଶମସ୍କନ୍ଧ ପୂର୍ବାର୍ଦ୍ଧ [illegible] ଅଧ୍ୟାୟରେ ଶ୍ରୀମଦ୍ ଦେବପାଦ ଶୁକଦେବଙ୍କୁ ଜିଜ୍ଞାସା କରିଅଛନ୍ତି :—

"ସଂସ୍ଥାପନାୟ ଧର୍ମସ୍ୟ ପ୍ରଶମାୟେତରସ୍ୟ ଚ ।
ଅବତୀର୍ଣ୍ଣୋ ହି ଭଗବାନଂଶେନ ଜଗଦୀଶ୍ୱରଃ ॥
ସ କଥଂ ଧର୍ମସେତୂନାଂ ବକ୍ତା କର୍ତ୍ତାଭିରକ୍ଷିତା ।
ପ୍ରତୀପମାଚରଦ୍ ବ୍ରହ୍ମନ୍ ପରଦାରାଭିମର୍ଶନମ୍ ॥
ଆପ୍ତକାମୋ ଯଦୁପତିଃ କୃତବାନ୍ ବୈ ଜୁଗୁପ୍ସିତଂ ।
କିମଭିପ୍ରାୟ ଏତଂ ନଃ ସଂଶୟଂ ଛିନ୍ଧି ସୁବ୍ରତ ॥"

(ହେ ଭଗବନ୍ ଧର୍ମର ସଂସ୍ଥାପନନିମନ୍ତେ ଅଧର୍ମର ପ୍ରଶମନ ନିମନ୍ତେ ସ୍ୱୟଂ ଯେ ଭଗବାନ୍ ଜଗଦୀଶ୍ୱରଙ୍କର ଅଂଶ ସେନ ଅବତୀର୍ଣ୍ଣ ହୋଇଥିଲେ ଏବଂ ଯେ ଧର୍ମସେତୁର ବକ୍ତା, କର୍ତ୍ତା ଓ ଅଭିରକ୍ଷିତା ସେ କିପରି ତହିଁର ବିପରୀତାଚରଣ ପରଦାରାଭିମର୍ଶଣ କଲେ ? ସେହି ଯଦୁପତି ଶ୍ରୀକୃଷ୍ଣ କିପରି କାମର ବଶବର୍ତ୍ତୀ ହୋଇ ଜୁଗୁପ୍ସିତ କାର୍ଯ୍ୟ କଲେ ? ଏହାର ଅଭିପ୍ରାୟ କଣ ? ମୋର ସଂଶୟ ଛେଦନ କରନ୍ତୁ ) ଏହାର ଉତ୍ତରରେ ଶୁକଦେବ କହନ୍ତି—

ଧର୍ମବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂ ଚ ସାହସଂ
ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା ॥
ନୈତତ୍ସମାଚରେଜ୍ଜାତୁ ମନସାପି ହ୍ୟନୀଶ୍ୱରଃ ।
ବିନଶ୍ୟତ୍ୟାଚରନ୍ମୌଢ୍ୟାଦ୍ୟଥାରୁଦ୍ରୋବ୍ଧିଜଂ ବିଷଂ ॥

× × × ×

କୁଶଳାଚରିତେନୈଷାମିହ ସ୍ୱାର୍ଥୋ ନ ବିଦ୍ୟତେ ।
ବିପର୍ଯ୍ୟୟେଣ ବାନର୍ଥୋ ନିରହଙ୍କାରିଣାଂ ପ୍ରଭୋ ।

× × × ×

ଯତ୍ପାଦପଙ୍କଜପରାଗ ନିଷେବତୃପ୍ତା
ଯୋଗପ୍ରଭାବବିଧୁତାଖିଳକର୍ମବନ୍ଧାଃ ।
ସ୍ୱୈରଂ ଚରନ୍ତି ମୁନୟୋଽପି ନ ନହ୍ୟମାନା
ସ୍ତସ୍ୟେଚ୍ଛୟାତ୍ତବପୁଷଃ କୁତ ଏବ ବନ୍ଧଃ ।

× × × ×

ଅନୁଗ୍ରହାୟ ଭକ୍ତାନାଂ ମାନୁଷଂ ଦେହମାସ୍ଥିତଃ ।
ଭଜତେ ତାଦୃଶୀଃ କ୍ରୀଡ଼ା ଯାଃ ଶ୍ରୁତ୍ୱାତତ୍ପରୋ ଭବେତ୍ ।"

(ତେଜୀୟାନ୍ ବହ୍ନି ସମସ୍ତ ପ୍ରକାର ଦ୍ରବ୍ୟ ଦହନ କରିପାରେ । ସେହିପରି ତେଜୀୟାନ୍ ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତି ପକ୍ଷରେ ଧର୍ମବ୍ୟତିକ୍ରମ ବା ସାହସ ଦୋଷାବହ ନୁହେ । କିନ୍ତୁ ତାହା ବୋଲି ଅନୀଶ୍ୱର ବ୍ୟକ୍ତି ତାହାର ଆଚରଣ ମନରେ ସୁଦ୍ଧା କଳ୍ପନା କରିବା ଉଚିତ ନୁହେ । ମୂଢ଼ତାବଶତଃ ସେ ଯେବେ ଏହା ଆଚରଣ କରେ, ତାହାର ବିନାଶ ଘଟେ । ସମୁଦ୍ର ମନ୍ଥନରୁ ଜାତ ବିଷ ପାନ କରି ଶିବ ମଧ୍ୟ ପାର କରି ପାରିଲେ ନାହିଁ । × × × । ଐଶ୍ୱର୍ଯ୍ୟବାନ୍ ବ୍ୟକ୍ତି କୁଶଳ ଆଚରଣ କଲେ ସ୍ୱାର୍ଥଭାଗୀ, ଅକୁଶଳ ଆଚରଣ କଲେ ଅନର୍ଥଭାଗୀ

ହୁଅନ୍ତି ନାହିଁ; କାରଣ ସେମାନେ ଅହଙ୍କାରଶୂନ୍ୟ, ଏଣୁ ଫଳଭାଗୀ ହୁଅନ୍ତି ନାହିଁ। × × × । ଯାହାଙ୍କର ପାଦପଦ୍ମ ସେବାରେ ମୁନିମାନେ ତୃପ୍ତ ହୋଇଅଛନ୍ତି (କାମନାର ଶାନ୍ତି ହୋଇଅଛି), ଯାହାଙ୍କର ଯୋଗଧ୍ୟାନରେ ସେମାନଙ୍କର କର୍ମବନ୍ଧନ ଭଙ୍ଗ ଯାଇଛି, ସେମାନେ ମୁକ୍ତ ଭାବରେ ଇଚ୍ଛାବିହାର କରୁଛନ୍ତି, ସେହି ଇଚ୍ଛାବିଗ୍ରହବପୁ (ଯେ ନିଜ ଇଚ୍ଛାରେ ବପୁ ଧାରଣ ବା ଜନ୍ମଗ୍ରହଣ କରିଛନ୍ତି-ଶ୍ରୀକୃଷ୍ଣ)ଙ୍କର ବନ୍ଧନ ନାହିଁ ଅର୍ଥାତ୍ ସେ କପରି ସଂସାରରେ ଲିପ୍ତ ହେବେ ? × × × । ଭକ୍ତମାନଙ୍କ ପ୍ରତି ଅନୁଗ୍ରହପରାୟଣ ହୋଇ ସେ ମାନୁଷ ଦେହ ଧାରଣ କରନ୍ତି ଏବଂ ଲୀଳା କରନ୍ତି । ସେ ଲୀଳାର ଶ୍ରବଣରେ ଜୀବ ଈଶ୍ୱର-ପରାୟଣ ହୁଏ ।)

ଯେ ଲୀଳାମୟ, ଭଗବାନ ଇନ୍ଦ୍ରିୟର ଅଗୋଚର ତାଙ୍କଠାରେ ଅସମ୍ଭବ ସମ୍ଭବ, ସେ କପରି ସାଂସାରିକ ପାପପୁଣ୍ୟ, କର୍ମାକର୍ମ, କୁଶଳ ଅକୁଶଳର ଭାଗୀ ହେବ ? ସେ ପୁଣି ସର୍ବବ୍ୟାପୀ, ସର୍ବମୟ, ନିର୍ଗୁଣ, ନିର୍ଲିପ୍ତ । ତାଙ୍କଠାରେ ପତି କିଏ, ପତ୍ନୀ କିଏ, ପୁତ୍ର କିଏ, ପିତା କିଏ, ମାତା କିଏ, ବନ୍ଧୁ କିଏ ? ଭାଗବତକାର ୧ମସ୍କନ୍ଧ ୨ୟ ଅଧ୍ୟାୟରେ ଶୁକଦେବଙ୍କୁ ପ୍ରଣାମ କରି କହୁଛନ୍ତି—

"ଯଂ ପ୍ରବ୍ରଜନ୍ତମନୁପେତମପେତକୃତ୍ୟଂ ଦ୍ୱୈପାୟନୋ ବିରହକାତର
ଆଜୁହାବ ।
ପୁତ୍ରେତି ତନ୍ମୟତୟା ତରବୋଽଭିନେଦୁସ୍ତଂ ସର୍ବଭୂତହୃଦୟଂ ମୁନିମାନ-
ତୋଽସ୍ମି ।"

ଯେତେବେଳେ ବ୍ରହ୍ମଜ୍ଞାନୀ ଶୁକଦେବ ପ୍ରବ୍ରଜ୍ୟା ଗ୍ରହଣ କରନ୍ତି, ସେତେବେଳେ ସେ ନିର୍ଲିପ୍ତ; ପଶୁପକ୍ଷୀ ବୃକ୍ଷ ଲତାମାନଙ୍କ ହୃଦୟରେ ମଧ୍ୟ ତାଙ୍କ ଆତ୍ମା ପ୍ରବେଶ କରିଥିଲା । ତେବେ ଏଥିରେ ଆଶ୍ଚର୍ଯ୍ୟ କଥା କଣ ? ଦ୍ୱୈପାୟନ ପୁତ୍ର ବିରହରେ କାତର ହୋଇ ତାଙ୍କୁ "ପୁତ୍ର" "ପୁତ୍ର" ବୋଲି ଡାକୁଛନ୍ତି; କିନ୍ତୁ ଉତ୍ତର ଦେଉଛି କିଏ, ବୃକ୍ଷଲତାମାନେ । ନିର୍ଲିପ୍ତ,

ନିର୍ଗୁଣ ବ୍ରହ୍ମ ବା ପୁରୁଷ ତେବେ କପରି କାର୍ଯ୍ୟାକାର୍ଯ୍ୟର ଫଳଭାଗୀ ହେବ ? ସେ ଭୂତଦେହରେ ପ୍ରବେଶ କରି ଭୂତେନ୍ଦ୍ରିୟଜନ୍ୟ ଗୁଣ ଭୋଗ କରନ୍ତି, କିନ୍ତୁ ତହିଁର ଫଳଭାଗୀ ହୁଅନ୍ତି ନାହିଁ । ସେଥିପାଇଁ ଭାଗବତାକାର ୧ମ ସ୍କନ୍ଧ ୨ୟ ଅଧ୍ୟାୟରେ କହିଅଛନ୍ତି—

ଅସୌ ଗୁଣମୟୈର୍ଭାବୈର୍ଭୂତସୂକ୍ଷ୍ମେନ୍ଦ୍ରିୟାତ୍ମଭିଃ
ସ୍ୱନିର୍ମିତେଷୁ ନିର୍ବିଷ୍ଟୋ ଭୁଂକ୍ତେ ଭୂତେଷୁ ତଦ୍ଗୁଣାନ୍ ।

କିମ୍ବଦନ୍ତୀ ଅଛି, ଭଗବାନ୍ ଶଙ୍କର ଚଣ୍ଡାଳ ଅନ୍ନ ଗ୍ରହଣ କରୁଥିବା ଦେଖି ତାଙ୍କ ଶିଷ୍ୟମାନେ ମଧ୍ୟ ଚଣ୍ଡାଳ ଅନ୍ନ ଗ୍ରହଣ କଲେ । ଏହା ଦେଖି ଶଙ୍କର ତପ୍ତ ତରଳ ସୌଦ୍ୟଗନ୍ଧ ଭକ୍ଷଣ କରି ଶିଷ୍ୟମାନଙ୍କୁ ମଧ୍ୟ ସେହିପରି କରିବାକୁ କହିଲେ । ଶିଷ୍ୟମାନେ କହିଲେ, "ଗୁରୋ ! ଏତଦ୍ଦ୍ୱାରା ତ ଆମ୍ଭେ ମରିଯିବୁ ।" ଶଙ୍କର ଉତ୍ତର କଲେ, "ତେବେ ମୁଁ ଚଣ୍ଡାଳ ଅନ୍ନ ଗ୍ରହଣ କରିବା ଦେଖି ତୁମ୍ଭେମାନେ ତାହା କଲ କାହିଁକି ?" ଯେ ନିତ୍ୟ, ନିର୍ଗୁଣ, ତାହାଙ୍କ ପକ୍ଷରେ ସବୁ ସମ୍ଭବ; ତାହାଙ୍କ ପକ୍ଷରେ ତାପ, ଶୈତ୍ୟ, ସୁଖ, ଦୁଃଖ, କର୍ମ, ଅକର୍ମ, ପାପ, ପୁଣ୍ୟ ସବୁ ସମାନ । ତାଙ୍କୁ କିଛି ସ୍ପର୍ଶ କରି ପାରେ ନାହିଁ । ଶ୍ରୀକୃଷ୍ଣଙ୍କ ରାଧାଙ୍କଠାରେ ଅମ୍ବା ଗୋପୀମାନଙ୍କଠାରେ ରମଣ ଯେତେବେଳେ ମୂଳରୁ ଦୋଷାବହ ନୁହେଁ, ସେଥିରେ ବା ଅଶ୍ଲୀଳତା ଆସିବ କେଉଁଠୁ ? ସର୍ବବ୍ୟାପୀ, ସର୍ବଜ୍ଞ, ନିର୍ଲିପ୍ତ, ନିର୍ଗୁଣ, ଇନ୍ଦ୍ରିୟବିଷୟର ଅଗୋଚର, ଲୀଳାମୟଙ୍କଠାରେ ମାନବକତାର ଆରୋପ କାହିଁ ?

ଶ୍ରୀକୃଷ୍ଣ ସ୍ୱୟଂ ପରବ୍ରହ୍ମ ବ୍ରହ୍ମ । ତାଙ୍କର କିଏ ପତ୍ନୀ, କିଏ ବଧୂ ? ତାଙ୍କ ନିକଟରେ ସ୍ତ୍ରୀ କିଏ, ପୁରୁଷ ବା କିଏ ? ସେ ଯେ ଅସ୍ୱାତ୍ମା— ଆତ୍ମାରେ ତାହାଙ୍କର ରମଣ । ତାଙ୍କ ଆଗରେ ପୁରୁଷ ଯେ କେହି ନାହିଁ, ସମସ୍ତେ ସ୍ତ୍ରୀ । ଜୀବାତ୍ମାମାନେ ମାତ୍ରେ ସ୍ତ୍ରୀ; ସେହି ପୁରୁଷ ପରମାତ୍ମାଙ୍କର

ଭ୍ରମଣସ୍ଥାନ । ସେଠାରେ ରାଧା ବା କିଏ ? ଗୋପୀମାନେ ବା କିଏ ? ଏମାନେ ତ ସମସ୍ତେ ତାଙ୍କର ଅଙ୍ଗ । ଅଙ୍ଗ ଯେମିତି ଅଙ୍ଗୀର ଚମଣ ।

"ଅସୌ ଗୁଣମୟୈର୍ଭାବୈଃ ଭୂତସୂକ୍ଷ୍ମେନ୍ଦ୍ରିୟାତ୍ମଭିଃ ।
ସ୍ୱନିର୍ମିତେଷୁ ନିର୍ବିଷ୍ଟଃ ଭୁଂକ୍ତେ ଭୂତେଷୁ ତଦ୍‌ଗୁଣାନ୍ ।

( ଭାଗବତ, ପ୍ରଥମ ସ୍କନ୍ଧ, ୨ୟ ଅଧ୍ୟାୟ )

ଅର୍ଥାତ୍ "ପରମାତ୍ମା ପୁରୁଷ ଗୁଣମୟ ଭାବ ଭୂତ ସୂକ୍ଷ୍ମେନ୍ଦ୍ରିୟାଦ ଗ୍ରହଣ କରି ନିଜ ସୃଷ୍ଟ ଭୂତମାନଙ୍କର ଶରୀରରେ ପ୍ରବେଶ କରି ସେହି ଭୂତମାନଙ୍କର ଅନୁଭୂତ ଗୁଣ ଭୋଗ କରନ୍ତି ।" ମୋଟ କଥାରେ ଏହା ଲୀଳାମୟଙ୍କର ଲୀଳା । ସ୍ୱପ୍ନଅତଏବ କର୍ମ ସକାଶେ ଜୀବ ଫଳଭୋଗୀ ନ ହେବା ପରି ଲୀଳାମୟ ପୂର୍ଣ୍ଣ ବ୍ରହ୍ମ ଶ୍ରୀକୃଷ୍ଣ ଏହି ଲୀଳାରେ ଗୁଣ ବା ଦୋଷାଦୋଷର ବଶୀଭୂତ ହୁଅନ୍ତି ନାହିଁ । ଶ୍ରୀରାଧାଙ୍କ ସମ୍ବନ୍ଧରେ ଯାହା ଗୋପୀମାନଙ୍କ ସମ୍ବନ୍ଧରେ ମଧ୍ୟ ତାହାହିଁ ପ୍ରଯୁଜ୍ୟ । ଗୋପୀମାନଙ୍କର ପତି, ପୁତ୍ର ଇତ୍ୟାଦି ସଂସାରର ବିଷୟବାସନାର ପ୍ରତିରୂପ । ରାଧା ହେଉନ୍ତୁ ବା ଗୋପୀମାନେ ହେଉନ୍ତୁ, ଯେତେବେଳେ ସେମାନେ ପତି ପୁତ୍ର ବିଭବ ତ୍ୟାଗକରି ଶ୍ରୀକୃଷ୍ଣଙ୍କ ପ୍ରତି ଧାଉଁଛନ୍ତି, ସଂସାରର ମୋହମାୟା ତ୍ୟାଗ କରି ଜୀବାତ୍ମା ପରମାତ୍ମା ପ୍ରତି ଧାଉଁଛି; ଏହା ତହିଁର ଅନ୍ତର୍ନିହିତ ଭାବ । ଏଥିରେ କି କାମବିକାରର ଗନ୍ଧ ଅଛି ? ଜୟଦେବ, ଭକ୍ତଶିରୋମଣି ଯେତେବେଳେ ଗାଉଥିଲେ:—

ରତିସୁଖସାରେ ଗତମଭିସାରେ ମଦନମନୋହରବେଶଂ
ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶଂ ।

× × × ×

ଚଳ ସଖି କୁଞ୍ଜଂ ସତିମିରପୁଞ୍ଜଂ ଶୀଳୟ ନୀଳନିଚୋଳଂ ।

× × × × ×

ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନଂ
କିଶଳୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନଂ ।

ସେ କଣ କାମବିକାରରେ ବିବ୍ରତ ହୋଇ ଏହା ଗାୟନ କରିଥିଲେ ? କେବଳ ପୁରାଣ ନୁହେଁ, କେବଳ ଜୟଦେବ ନୁହନ୍ତି, ସବୁ ପୁରାଣରେ, ସବୁ କବି, ସମସ୍ତ ଭକ୍ତ ଏହି ମହାଭାବକୁ ଶୃଙ୍ଗାରରସପୂର୍ଣ୍ଣ ଛନ୍ଦୋବନ୍ଧରେ ସରସ ତରଳଭାବମୟ କରି ଚିତ୍ରିତ କରିଅଛନ୍ତି । ଓଡ଼ିଆ ଶ୍ରେଷ୍ଠ କବିମାନେ ମଧ୍ୟ ସେମାନଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । ଏଣୁ ଏହି କବିମାନଙ୍କ ଚରିତ୍ରଚିତ୍ରଣରେ ଦୋଷାରୋପ କରିବା ଶକ୍ତି ଆମ୍ଭମାନଙ୍କର ନାହିଁ । ପରନ୍ତୁ ଏଥିରେ ଓଡ଼ିଆ କବିଙ୍କର ଚରିତ୍ରରେ କଳଙ୍କ ବା ସେମାନଙ୍କର ଲାମ୍ପଟ୍ୟପ୍ରକାଶର ଅବସର ରହୁ ନାହିଁ । ଏହା ସେକାଳର ଧର୍ମ ବା ଗତି ଥିଲା । ସେକାଳର ଲୋକେ "ଅଧୁନାତନ ରୁଚି"ରେ ଅନୁପ୍ରାଣିତ ହୋଇ ନ ଥିଲେ । ସେମାନଙ୍କର ରୁଚି ଉଚ୍ଚ ଥିଲା । କାବ୍ୟ ଓ କବିତା କଳାମଧ୍ୟରେ ଯାଏ । କଳାକୁ ଉତ୍କର୍ଷ କରିବାକୁ ଗଲେ ସୁନ୍ଦର ଛନ୍ଦ ତଥା ସୁନ୍ଦର ଅଳଙ୍କାରର ଆଶ୍ରୟ ନେବାକୁ ହୁଏ । ଛନ୍ଦ ଓ ଅଳଙ୍କାର କଳାର ମନୋହାରିତା ସକାଶେ ଅତୀବ ଉପାଦେୟ ଜିନିଷ । କେବଳ 'କୁରୁଚି' 'ସୁରୁଚି' ବୋଲି ହୁଡ଼ା ପକାଇ ଅତୀତକାଳ ଓଡ଼ିଆ-ସାହିତ୍ୟ ଓ ନମସ୍ତରକୁ ଆସିଅଛୁ, ଏପରି ନୀରସ,—ସାରହୀନ ହୋଇଅଛୁ; ତାହା ଏଠାରେ ବର୍ଣ୍ଣନା କରିବା ଚର୍ବିତଚର୍ବଣ କରିବା ଛଡ଼ା ଅନ୍ୟ କିଛି ନୁହେ । କାବ୍ୟ, କବିତା, କଳା କେବେ ଅଶ୍ଳୀଳ ହୋଇ ନ ପାରେ ।

ଏହି ରୁଚିର ଦୋହାଇ ଦେଇ ଅମ୍ଭେମାନେ ଅତୀତକାଳ କଳାର ଶ୍ରେଷ୍ଠ ରସିକ ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, ଏପରି କି ମାରଳା ଦାସ, ବଳରାମ ଦାସଙ୍କର କବିତା ଓ କାବ୍ୟଗୁଡ଼ିକ ପ୍ରତି ନାକ ଟେକୁଥାଉଁ । ସେଥିରେ କି ଜିନିଷ ରହିଅଛି, କି କଳା ରହିଅଛି, କି ସେହ—

ବସ୍ତୁର ଛବି ରହିଅଛି, ତ କୃତିତ୍ୱ ରହିଅଛି, ତ ଅପୂର୍ବ ମାଧୁର୍ଯ୍ୟ ରହିଅଛି, ସ୍ୱଭାବ ଓ ରୁଚି ସମାବେଶ ରହିଅଛି, ସେସବୁ ପ୍ରତି ଅସୂୟାର ଚକ୍ଷୁ ପଡ଼େ ନାହିଁ; ପଡ଼େ କେବଳ ଅଶ୍ଳୀଳତା ପ୍ରତି । "ବ୍ରଣମିଚ୍ଛନ୍ତି ମକ୍ଷିକାଃ"—ଦୋଷ, ଛିଦ୍ରାନ୍ୱେଷଣ ଅସୂୟାର କାର୍ଯ୍ୟ ।

**କବିତ୍ୱ ଓ ପାଣ୍ଡିତ୍ୟ ବିଚାର**—ମୁଁ ପୂର୍ବେ କହିଅଛି, ଭଞ୍ଜବର ନୈସର୍ଗିକ କବି ଥିଲେ । ସେ କେବଳ କବି ନ ଥିଲେ, ପଣ୍ଡିତ ମଧ୍ୟ ଥିଲେ । ବହୁ ସଂସ୍କୃତ ଓ ପ୍ରାକୃତ ଶାସ୍ତ୍ର ଅଧ୍ୟୟନ ତାଙ୍କ ଜ୍ଞାନକୁ ପରିପକ୍ୱ ଓ ମାର୍ଜିତ କରିଥିଲା । ଧର୍ମଗ୍ରନ୍ଥଗୁଡ଼ିଏ ସେ ତନ୍ନ ତନ୍ନ କରି ପଢ଼ିଥିଲେ । 'ଅମରକୋଷ', ମେଦିନୀ 'ହଳାୟୁଧ' ପ୍ରଭୃତି ଅନେକ କୋଷ ତାଙ୍କର କଣ୍ଠସ୍ଥ ଥିଲା । ତାହାଙ୍କର ବହୁ ଶାସ୍ତ୍ରଜ୍ଞାନ, ଅଗାଧ ପାଣ୍ଡିତ୍ୟ, ଗମ୍ଭୀର ବିଚାର, ସମ୍ୟକ୍ ପର୍ଯ୍ୟାଲୋଚନା ଶକ୍ତି, ସାହିତ୍ୟକ୍ଷେତ୍ରରେ ବିଚକ୍ଷଣ ଭାବ, ଉଦାରତା ଏବଂ ଧୀଶକ୍ତିର ପ୍ରକୃଷ୍ଟ ପ୍ରମାଣ ତାଙ୍କ ଶାସ୍ତ୍ରନିଚୟରୁ ମିଳେ ।

ବର୍ତ୍ତମାନ କାବ୍ୟ ପୂର୍ବୋକ୍ତ ପ୍ରାଚୀନ ରୀତିର ଲେଖା, ଯହିଁର କବି ଉପେନ୍ଦ୍ର, ଅଗମ୍ୟ ଅଦ୍ଭୁତ ପଥର ପଥିକ । ସେହି ପଥରେ ସ୍ୱଳ୍ପ କବି କୃତକାର୍ଯ୍ୟ ହୋଇଅଛନ୍ତି । ସ୍ଥାନେ ସ୍ଥାନେ କବିଙ୍କର ବର୍ଣ୍ଣନା କଳ୍ପନାରାଜ୍ୟରେ ଶୀର୍ଷସ୍ଥାନ ଅଧିକାର କରିଅଛି । କଳ୍ପନାରାଜ୍ୟରେ ବିଚରଣ କରିବାରେ କବି କେଡ଼େ ପଟୁ ଥିଲେ, ପାଠକମାନେ କାବ୍ୟ ପାଠ କରି ତାହା ବୁଝି ପାରିବେ । କବି କାବ୍ୟର ପ୍ରତ୍ୟେକ ପଂକ୍ତିର ଆଦ୍ୟ ଅକ୍ଷର 'ବ'ରେ ଆରମ୍ଭ କରିଛନ୍ତି । ପ୍ରଥମଛାନ୍ଦର ପ୍ରତି ପାଦର ଆଦ୍ୟ ଓ ପ୍ରାନ୍ତ ଅକ୍ଷର 'ବ' । ଏ ସମସ୍ତ ବନ୍ଧନ ମଧ୍ୟରେ ରହି କବି ରଚନାରେ ଯେ ପରିପାଟୀ ଦେଖାଇଅଛନ୍ତି, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ ।

'କୁଞ୍ଜବିହାର' ଛନ୍ଦୋମୟ କାବ୍ୟ । ଏଥିରେ ଭାଷାର ଉଦାମ ଯୌବନାଶକ୍ତି ଅଛି, ମୌଳିକତା ଅଛି, ସ୍ୱାଧୀନତା ଅଛି । ଏହାର ଛନ୍ଦ—ବନ୍ଧାପରିପାଟୀ, ପଦଲାଳିତ୍ୟ, ଅଲଙ୍କାର, ଉପମା ଏହାର ଅମୂଲ୍ୟ ସମ୍ପଦ । ଏହା ସଙ୍ଗୀତମୟ, ସଙ୍ଗୀତବହୁଳ ଏହାର ପ୍ରତି ଛନ୍ଦ, ପ୍ରତି ପୃଷ୍ଠା, ପ୍ରତି ପଂକ୍ତି ଝଙ୍କାରିତ । କବିତାର ଭାବ, ଭାଷା ପରସ୍ପର ଶ୍ରୀସମ୍ବର୍ଦ୍ଧନ କରିବାରେ ଲାଗିଛନ୍ତି । କୁଞ୍ଜବିହାର ହିନ୍ଦୁସ୍ଥାନୀର ଚମତ୍କାର କଳାପୂର୍ଣ୍ଣ ଭବ୍ୟ ନୂତନ, ଚିରସୁନ୍ଦର ସୌଧ । ଏହି ସୌଧର ବିଭିନ୍ନ ଅଙ୍ଗମାନ ପୃଥକ୍ ଭାବରେ ବିଚାର କରି ଦେଖୁଁ ।

(୧) ପଦଲାଳିତ୍ୟ—ଏହା ସେହି କାବ୍ୟଟି ଭର ରହିଅଛି । କେତେକ ବିଶିଷ୍ଟ ସ୍ଥାନ ଉଲ୍ଲେଖ କରିବା ବାଞ୍ଛନୀୟ ।

କାଳନ୍ଦୀଜଳକଲ୍ଲୋଳରଙ୍ଗିଅ,
କଦମ୍ବତରୁତଳତ୍ରିଭଙ୍ଗୀଅ ଯେ ।
କଟିରେ ଶୋଭି ହରିତ ବାସ,
କାମକେଳି କରିବାକୁ ଉଲ୍ଲାସ ଯେ । ୭।୬

କନକ ରସାଣ ଝଳ ଦର୍ପଣ,
କରିବ ଯେବେ ଯୋଗ ପଣ ପଣ ଯେ ।
କାନ୍ତିକି କେବେ ନୋହେ ସମାନ,
କଞ୍ଜନାଥ ଅଗେ ଜ୍ୟୋତିରଗଣ ଯେ । ୭।୧୧
କଲ୍ଲୋଳ ଉଠିଲେ କୂଳ ବୁଡ଼ାଇ ଯେ । ୯।୯
କାନ୍ତ ଜଙ୍ଘାର ଯତନ,
କାମକାନ୍ତକେତନ ବନୀ ହେବେ ମୀନ । ୧୦।୩
କନକ କାଠିରେ ଶୋଭି ମାଣିକର ଝରା.
କର୍ଣ୍ଣରେ ଖଞ୍ଜିଲେ ଅଳୀ ହସେ କେଡ଼େ ତୋଷ,

କାମସ୍ତ୍ରୂଳଙ୍ଗ ପସ୍ୱଏ,
କାମୀହୃଦେ ପଡ଼ି ହୃଦ ଦହନ କସ୍ୱଏ । ୧୦।୪
ଭୁଢଲ ହେମନାସାରେ ମୁକୁତା ବସଣୀ ।
କାମାତ ବଡ଼ିସୀ ଥୋପ ମେଳଅଛୁ ଅଣି,
କାମୀମନମୀନଧର ।
ଦଣ୍ଟେ ଅକର୍ଷି ନଏ ଗଛ କରି ଚୋସ୍ୱ । ୧୦ । ୬
ଲୁଞ୍ଚେ ଲୁଞ୍ଚେ ଚଳୁଛନ୍ତି ରଙ୍ଗେ ସ୍ୱଧାମୋହନ ।
କୋହଦେ ତିଅ ଝୁଲିରେ ନ ଦଣ୍ଡିବ ଷମନ । ୬୦।୧
କାନନ୍ତୁ ଗୋଧନ ଘେନ ଅସିବାକୁ ଖିନ୍ନ କରେ ତନୁ ଅତନୁ,
ତେମନ୍ତେ ବକ୍ଷରୁ ବରଜକାମିନୀ ଭୁମ୍ଭେ ଗଲେ ଗୋପଭୁବନ,
କୃଷ୍ଣ ହେ । ମକରଧ୍ୱଜଅଳୀମୃଣ,
ତଳାସନ ଶଶୀ ପଦ୍ମଏ ବଗ୍ରନ୍ଥ କରିବ ଅହେ ପଦ୍ମମୁଖ । ୨୭।୬

୨) ଗାନ୍ଧୂର୍ଯ୍ୟୋକ୍ତି—

କେତେ ପାଣିପଯୂରେ, ଲାଗିଛୁ କହ ମୋରେ,
କଉଭୁକେ ହସନ୍ତି କୃଷ୍ଣେ । ୫।୨୪
କହନ୍ତି ଜ୍ୟାତ ଦଷ୍ଟକେଶର,
କାମିନୀ ଗୁରିଧାନ ଦାନ କର ଯେ । ୨।୬
କୃଷ୍ଣ ଅଟନ୍ତି ଭଙ୍ଗିଅଙ୍କ ଗୁରୁ,
ତାହା କଷ୍ଟ ଭୁମ୍ଭ ଅନାଇ ହୃରୁ ଯେ । ୭।୧୬
କହନ୍ତି ଭୁମ୍ଭଧସ୍ୱଲ ସ୍ୱହ୍ନିଁ,
ଭୁମ୍ଭରେ ପାଣି ମୁଁ ଦେବଇ ନେଇ ଯେ ।
ଭୁମ୍ଭସ୍ତ୍ରୀ ବୋଲେ ଦର ଧଟିଛୁ,
ଭୁମ୍ଭ ଧରିବା ଦର ନାହିଁ ଲଜ୍ଜ ଯେ,

କୁମ୍ଭରେ ଯେଜ ଯାନ୍ତ୍ର ବସାଇ,
କେବେ ଚଳୁଥିଲ ଜଳ କଳାଇ ଯେ । ୨।୭

(୩) **ଉପମାଳଙ୍କାର—**

କଣ୍ଟ କଙ୍କିଣୀ ନିନାଦ ଗର୍ଜନ,
ଛନ୍ଦୁବା ଶୃଙ୍ଖଳା ବରଷେ ଘନ ଯେ । ୭ । ୧୦
କାମିନୀଜାଲ ଜଳ ହୋଇଲା,
କୃଷ୍ଣ-ମନ-ମୀନ ଚଦ୍ଧ ହୋଇଲା ଯେ । ୭ । ୧୪
କାମସାରଙ୍ଗ ଜିଣି କୁଳଟା । ୭ । ୧୫
ଜବା ରମ୍ଭା ମେନକା ହେବେ ଏ ପ୍ରକ୍ରି । ୪ । ୮
କପିଳାସରୁ ଅସନ୍ତ ଉମା ସେ । ୪ । ୯ ।
କଳାଘମର-ଅଙ୍କେ ଘଣକାନ୍ତ,
କରେ ଝଙ୍କ ଚଢ଼ିଡଗେ କାନ୍ତ । ୩ । ୧୮
କାନ୍ତ କନକ-ବଲ୍ଲରୀ ସମାନ,
କୃଷ୍ଣ ନିର୍ମାଣ ଲାଗେ କଷ୍ଟମାନ । ୩ । ୧୯
ଜବା ସାରଙ୍ଗ ଏ ଦେବତା—ତରୁ ।
କର୍ମେ ଗଳ ପଡ଼ିଲେ ଜ ଡମ୍ବରୁ । ୩ । ୨୧

(୪) **ଅତିଶୟୋକ୍ତି—**

କବ କଲ୍ପିବାରେ ଭୁଲେ ଭୁଲିବାରେ,
ନାହିଁ ଅଛୁ ସମତୁଲ । ୭ । ୧୬
କଣ୍ଟକମ୍ବୁକ ସଂସାରସାର କରୁ ପୂଳ ବାନ୍ଧ ଅମୃତର ।
କେତେକାଳ ଜତୁ କଲୁଷ ବହୁ ।
ଜନ୍ମ ଏ ରୂପ ନବାଇ । ୭ । ୧୭

(୫) ସ୍ୱଭାବୋକ୍ତି—

ଯଶୋଙ୍କ ବଳାବଳେବର ଧୂଳଧୂସର, କୋଳେ ଧରନ୍ତି ମାଏ ନେଇ ।
ହର୍ଷମଣ୍ଡପେ ବସି ଖେଳନ୍ତି ଲୀଳା କରି । କର ଦୁନ୍ଦେ ମାରନ୍ତି ଧାଇଁ ।୮
ବଚ୍ଛରୂପରେ ଗୋପୀ ହସନ୍ତି ଚନ୍ଦ୍ରମୁଖୀ । କୋଳରେ ଯଶୋଦାଙ୍କ ଦେଇ ।
ବସାଇ କ୍ଷୀର ପାନ ମାତା ଆନନ୍ଦ ମନ । କେ କାହା କୋଳୁ ନେଇଯାଇ ।୯
କରନ୍ତି ନାନାକେଳ ବ୍ରଜଯୌବନ୍ତ ମିଳ । କେ ଆଳୀ ବୋଲେ ବାପ ଭାଇ ।
ବିଡ଼ମ୍ବନ ଗୃହିଁ ନୃତ୍ୟ ମୁ ଯାଉଥାଇ । ଏପାଁ ଖେଳରେ ଶ୍ରମଦେହୀ ।୧୦ ।

(ପଞ୍ଚମ ଛାନ୍ଦ)

(୬) ଅନୁପ୍ରାସ—

ଜଳେ ଅଞ୍ଜନଜ କଷ୍ଟ ବାରଣ
ଜଳେ ବାରଣ କଷ୍ଟ ନିବାରଣ । ୩ । ୭୨
ଜଠରେ ଅଠକ ହୋଇଲେ ଜଠରୁଁ ଜଠକ କଠଡ ଖସିବ ।
କାର୍ତ୍ତସ୍ୱରଚନ୍ ଅଚନୂକଳମ୍ ଜାନ୍ତୁଜ ଦୂର କରିଇବ ।
ବୃଷ୍ଟି ହେ, ଭୂମ୍ଭି ଖୁଣ ହେବ ବୃଷାନୁ ।
କୋଠରେ ଲଟିଲ ପରାଏ ବରୁହ ଦଗ୍ଧ ହୋଇବ ଅମ୍ବୁ ଚନ୍ଦୁ । ୨୬ ।୧୨।

(୭) ଉତ୍ପ୍ରେକ୍ଷାଦି ଅନ୍ୟାନ୍ୟ ଅର୍ଥାଲଙ୍କାର ଓ ମହାଯମକ, ମାଳଯମକ, ଶୃଙ୍ଖଳା, ସିଂହାବଲୋକନ, ବ୍ୟାଘ୍ରଗତି, ଛଳବଚନ, ଅନ୍ତର୍ଲାପି, ବହିର୍ଲାପି ପ୍ରଭୃତି ସବାଶେ କାବ୍ୟର ଛନ୍ଦମାନ ବିଶେଷତଃ ୧୧ଶ ଛାନ୍ଦ ଦ୍ରଷ୍ଟବ୍ୟ । ଏ ସମସ୍ତ ବର୍ଣ୍ଣନା କରୁ କହିଲେ ମୂଳଗ୍ରନ୍ଥର ଆକାର ବଢ଼ିଯିବା ଭୟରେ ବିରତ ହେଲୁ ।

(୮) ବର୍ତ୍ତମାନ କବିଙ୍କର ବର୍ଣ୍ଣନାପଦ୍ଧତି ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଉ :—

## (ଖ) ଋତୁବର୍ଣ୍ଣନା—

× × ×

ଗ୍ରୀଷ୍ମକାଳ ଗ୍ରାବ ଗଲା ସଜନି ।
କନ୍ଦର୍ପଦର୍ପ ଘୃଷ୍ଟ ରହିଲା ପୁଣି ଯେ ।
ବୃଷାନୁଭାନୁ ପ୍ରାଏ ବେତଣ୍ଡଭାନୁ ।
ଖେଡ଼େ ତପତ ମହୀ କଲା ସୁତନୁ ଯେ । ୨ ।

× × ×

କାସାରମାନଙ୍କରୁ ଭୂଷିଲେ ବନ ।
ଭୁଜଙ୍ଗୋଷ୍ଠପ୍ରାଏ ମୃଗତୃଷ୍ଣା ଶୋଭନ ଯେ ।
କାନନେ ଧନଞ୍ଜୟ ଚରଣ ଶୋଭା ।
କଲେ ଜ୍ୟୋତିଙ୍ଗଣ ପରାଏ ପ୍ରଭା ଯେ । ୪ । (୧୭ଶ ଛାନ୍ଦ)

ଜଗଜୀବନ ଘନାଘନରେ । କରେ ବଳେ ଘନାଘନ ସଙ୍ଗରେ ।
କେଶୀବେଶୀଧ୍ୱନି ବାଜେ ଝମକ । କରବାଲ ତ ଚଞ୍ଚଳାଚମକ ।
ତ ଶୋଭା ବଳାକପନ୍ତି ଯେ ।
ତାମ ତ ଶ୍ୱେତ ଥଲମ୍ ଉଡ଼ାଇଣ ବଜେ କରନ୍ତି ନୃପତି ଯେ ।୧୬।୨

## (ଗ) ରୂପବର୍ଣ୍ଣନା—

ତା... ଘନାଘନ ପ୍ରାଏ ସୁବାସ ଚିକୁର । ତ ଶୋଭା ଚୂର୍ଣ୍ଣକୁନ୍ତଳ ଦଶେ ମନୋହର । କଣ୍ଠର ସ୍ୱେଦ ଲଗାଇ । କଣ୍ଠଦନ୍ତ ତଳଚଳା ଲୁଳନ୍ତି ତହିଁ । ୨ ।

ଜାନକୀକଣ୍ଠୋଳେ ଏଏ ଚନ୍ଦ୍ରକାନ୍ତ ଖ୍ୟାତେ । ତବା ଜାନକୀର ଶୁକ୍ଳ ସୁମନ ପ୍ରକାଶେ । କାନ୍ତି ଜୁଡ଼ାର ଯତନ । କାମ ତାଙ୍କରେ ରହିବ ବନ୍ଦୀ ହେବ ମୀନ । ୩ ।

କନକକାଠିରେ ଶୋଭେ ମାଣିକର ଝରା । କଣ୍ଠରେ ଲମ୍ବିଲେ ମାଳୀ ଯଶେ ବେଢ଼େ ତୋରା । କାମନ୍ତୁ ଲଗି ପରାଏ । କାମୀହୃଦେ ପଦ୍ମ ହ୍ରଦ ଦହନ କରାଏ । ୪ ।

ବୃନ୍ଦାବର ସ୍ତ୍ରୀର ଭଣି କରକରଦନୀ । କୃଷ୍ଣଚନ୍ଦ୍ର ମନଧରା କୈବଲ୍ୟଦାୟିନୀ । ଚମ୍ପାଗଉର ଜଘାଧରା । କନକ କେତକୀ ଭଣି ଶୋଭନ୍ତି ଗଉରା । ୬ ।

କୃଷ୍ଣଙ୍କ ହେମ ନାସାରେ ମୁକ୍ତାବସଣୀ । କାମ କି ବଡ଼ସୀ ଥୋଇ ମେଲିଅଛୁ ଅଣି । କାମୀ ମନମୀନଧରା । କଣ୍ଠରେ ଆକର୍ଷି ଦିଏ ଗଉ କର ତୋରା । ୭ ।

(ଦଶମ ସ୍କନ୍ଦ)

କେ ବୋଲେ ଏ ଅପଘନ । କଳା ଘନାଘନ ପ୍ରାଏ ଶୋଭନ ଯେ । କେଶୀପୁଚ୍ଛ ଇନ୍ଦ୍ର ଶରାସନ । ସଜନୀ ରେ ୫ ।

କି ଶୋଭା ଅଳକାପନ୍ତି । କଣ୍ଠେ କି ବାଳ ଅଳି ବେଢ଼ିଛନ୍ତି ଯେ । କନ୍ତୁ ଅଳକନ ଶୋଭା ଦିଶନ୍ତି । ସଜନୀ ରେ । ୬ ।

କୁଣ୍ଡଳ ଶ୍ରୁତିରେ ଗଢ଼ । କରିବା ଅଳାଇ ପଚ୍ଛବରତ୍ନ ଯେ । କାମେ ହୁଲୁକ ଉଠାଇ ଛଡ଼ । ସଜନୀ ରେ । ୭ ।

କି ଶୋଭା ନାସାବସଣୀ । କଳାକରେ ଜଡ଼େ ସଉଦାମିନୀ ଯେ । କରେ ଅଶନ ହୃଦୟ ପାଣି । ସଜନୀ ରେ । ୮ ।

( ୬୭ଶ ସ୍କନ୍ଦ )

(ଘ) ବନବର୍ଣ୍ଣନା—

କୁଟମାଳ ଦେଖ ଧାତକି ଧାଉ । ଚଏ ପୁନାଗଗଣେ ଛନ୍ତି ବେଢ଼ି ।
କୁସୁମଲକ୍ଷ ଭ୍ରମି ପଲ୍ଲୀପରେ । କମ୍ପୁଣବଦ ମଙ୍ଗଳ କୁଞ୍ଜରେ ।
କରଇ କି ମାଳୀ । କରୁଛୁ ଅବନୀ ତତ୍ର ଭଞ୍ଜଲୀ ।, ୧୩।୩

## (ଘ) ପ୍ରଭାତ ବର୍ଣ୍ଣନା—

କଳାକର ଅସ୍ତ ଯହୁଁ ମୁଦ୍ରିତ କୁମୁଦ ।
କଳଦ ଯହୁଁ ଅନନ୍ଦ ହୋଇଲେ କଳନ୍ଦ ଯେ ।୧୩।
କଲେ ମନକୁ ଅନନ୍ଦ ଚକ୍ରବାକକୁଳ ।
କରାଇଲେ ଚକୋରଙ୍କ ନୟନ ସଜଳ ଯେ ।୧୪।
କରଟ ତାମ୍ରଚୂଡ଼ଙ୍କ ଶୁଭଇଣି ବାଣୀ ।
କଲେ ସେବକେ ନୀଳାଦ୍ରିପୁରେ କମ୍ବୁଧ୍ୱନି ଯେ ।୧୫।
କମ୍ବୁ ଶବଦ ଶୁଣନ୍ତେ ଧର ଦର ଅର ।
କାର୍ତ୍ତିସ୍ୱର ପଲଙ୍କରୁ ଉଠିଲେ ଶ୍ରୀଧର ଯେ ।୧୬।

( ୨୩ଶ ଛନ୍ଦ )

କରନ୍ତେ ବ୍ରଜବିହାର କମେ ନିଶି ପାହିଲା ।
କମ୍ବୁଘୋଷ ଶମ୍ଭୁ ଅଲେ ତାମ୍ରଚୂଡ଼ ଡାକିଲା ।
କରଟବାଣୀ କର୍ଣ୍ଣକୁ କଳକଳ ଶୁଭିଲା ।
କୋକମିଥୁନଙ୍କ ମନ ଅନନ୍ଦ କରାଇଲା ।୧୭।
କଲେ ବ୍ରଜାଙ୍ଗନାମାନେ ଦଧି ଦେନି ମନ୍ଥନ ।
କୁମୁଦେ ମୁଦ୍ରିତ ହେଲେ ପ୍ରଫୁଲ୍ଲିତ ନଳିନ ।
କଲେକ ଗୋପାଳେ ଗୋପାଳରେ ଗୋଦୋହନ ।
କ ଶୋଭା ବହୁ ମହାକାନ୍ତ ସେହ ଉଦେ ଅରୁଣ ।୧୮।
କାନ୍ତ ତେଜି ଅନନ୍ତରୁ ବୃଷ ହେଲେ ମଳିନ ।
କଲେ ମନକୁ ଉଦ୍ବେଗ ସ୍ନାନ ପାଇଁ ବ୍ରାହ୍ମଣ ।
କରଟ ପାର୍ଥିବମାନେ ଚଢ଼େ ଦର ବୋହଣ ।
କର ଶୀଘ୍ର ଦରସିତ ମଧ୍ୟରେ ସେ ଉହଣ ।୧୯।

ବଲେ ସ୍ୱଜନନେ ରାଧାକୃଷ୍ଣ ନାମ ଗାୟନ ।
ଭୁଲନ୍ତାଏ ଧୂମଅଖୁ ପ୍ରାଏ ବଲେ ଗମନ ।
ବଲ୍ଲଭ ନିର୍ମଳ ଦେଲା ଉଦେ ଦେଲେ ଅରୁଣ ।
ବସଇଲ୍ଲ ରସିକମାନଙ୍କ ପ୍ରଭା ନଉନ । ୨୦ ।

( ଚତୁର୍ଦ୍ଦଶ ଛନ୍ଦ )

## (ଙ) ଖେଦ ବର୍ଣ୍ଣନା—

× × ×

କୃଷ୍ଣପ୍ରିୟା ବଦନ୍ତି ଚାହା ନ ବଦ ।
ବହିଲେ ନ ସହଇ ଅମ୍ଭ ବଗ୍ରନ୍ଦ । ୪ ।

× × ×

ଏ ବନ୍ଧୁ ବହୁ ଧନ ଦେଖାଇ ନେଲା ।
ଭମରଚକ୍ଷୁ ପ୍ରାଏ ଅଣା ମାଇଲା ଯେ । ୫ ।

× × ×

କମଳରେ ମକରନ୍ଦ ପ୍ରାଏ ମକଣ ।
ବଲେ ଅନ୍ତର ଲୋକ ଅନ୍ୟେ ମୋହନ ଯେ ।୬।

× × ×

ବଲେ ନୟମ ଦଉ ଦଉବ ବୁନ୍ଧୁଂ ।
ବଂସନ୍ଧନ ଅନ୍ୟେ ଅସିବ ମୁହିଁ ଗୋ ।
ବଉଥିବ ନୟନ ଅୟନେ ସଜ୍ଞ ।
ବହିଣ ଗଲେ କୃଷ୍ଣ ଅଣା ଲଗାଇ ଗୋ । ୭ ।
କରେ ଲଗାଇ ବଷବୃକ୍ଷକୁ ନାଶ ।
ବରନ୍ତି ନାହିଁ ଅବେ ଗୋବନ୍ଦଦାସ ଦେ ।

× × ×

କଳେବରକୁ ଖର ମାରୁ ଭଞ୍ଜନ ।
କରେ ସଗରସୁତପ୍ରାଏ ଦହନ ଯେ । ୧୨ ।

× × ×

କହନ୍ତୁ ଅଷା ଘନେ ଗୃହକ ପଥ ।
କଲେ ନସ୍ୱଣ କଂପା କୁଞ୍ଜବିହାରୀ ଯେ । ୨୨ ।

× × ×

କୃଷ୍ଣ ଗନ୍ଧ ବନରୁ ମରୁତୁ ଝୁର ।
କୃତ୍ତିବାସଅବାସ୍ତ ଦେଲାଣି ସାର ଯେ । ୨୩ ।

× × ×

କଳାକରବଦନ ସେ ଚନ୍ଦ୍ରାମଣି ।
କଣ୍ଠରେ ଦେଇଗଲେ ଏ ଚନ୍ଦ୍ରାମଣି ଯେ । ୨୪ ।

( ଷଷ୍ଠ ଛାନ୍ଦ )

"କୁଞ୍ଜବିହାର"ର କବି କୃଷ୍ଣ କର ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ, ସେ ସମସ୍ତ ପରିପାକ କରିଥିଲେ । ସେ ପଣ୍ଡିତମ୍ମନ୍ୟ ପଣ୍ଡିତ ନ ଥିଲେ । ସେ ଯାହା ପାଠ କରୁଥିଲେ, ତାହାକୁ ଅନୁଭବ ନ କରି ଛାଡୁ ନ ଥିଲେ । ସେ କେତେ ଶାସ୍ତ୍ର ଅଧ୍ୟୟନ କରିଥିଲେ ଏବଂ ସେ-ସମସ୍ତ କିପରି ଅନୁଭବ କରିଥିଲେ, କୁଞ୍ଜବିହାରରୁ ସାମାନ୍ୟ କେତେକ ପଂକ୍ତି ଉଦ୍ଧାର କରି, ଅନ୍ୟାନ୍ୟ ଗ୍ରନ୍ଥର ତତ୍ସମ ପଂକ୍ତି ଦର୍ଶାଇଲେ ତାହା ସ୍ପଷ୍ଟ ବୁଝା ପଡ଼ିବ ।

(୧) କୃପାଳୁ ଦୀନବାନ୍ଧବ ଲୁବ୍ଧକତାରକ,
କୃତ୍ତିବାସବ୍ରହ୍ମା ଗର୍ବନାଶକାରକ ଯେ ।
କୃପାରେ ଦେଇପାରନ୍ତି ମୁକ୍ତିଭଣ୍ଡାରକ,
କୋଳପାଇଁ ଅଳ କରିଦେଲେ ଯେ କନକ ଯେ ।

ଅଷ୍ଟ ସ୍ୱରପଞ୍ଚର ଶ୍ଳୋକେ ଯା ପାଦକ,
ଏ ସ୍ନେହ ଗୋପୀବଦନାମ୍ବୁଜ ପୀୟୂଷକ ଯେ ।
କୃପାଳୁ ମହିମାବନ୍ତ ସ୍ୱଗନ୍ଧଦାୟକ, (କୃ: ବ:)

× × × ×

ଲୁବ୍ଧକଚାତକ ବ୍ରହ୍ମାଦିଗଙ୍ଗାଧର ।
ଲୁଣ୍ଠାଇପାରି କୃପାରେ ମୁକ୍ତଭଣ୍ଡାର ହେ,
ଲୁଠ ଅଳ କରି କୋଳପାଇଁ ଯଶୋଦାଙ୍କୁ,
ସେରୂପ ଗୋପୀବଦନାମ୍ବୁଜପୀୟୂଷକୁ ହେ ।
ଏମନ୍ତ ମହିମାବନ୍ତ ପ୍ରେମଭକ୍ତିରସ । (ଦ: ଛ:)

(୨) ଅନନ୍ତ ଅନନ୍ତଶୟନରେ ତା ଜାଣି
ଲୋକେ ଲୋକେ ଜନମି ଧାରିବ ମୁଁ ପୁଣି,
ନନ୍ଦରେ ନନ୍ଦରେ ଥାଅ, ବକ୍ଷରେ କହି । (ବ: ଚ:)

× × × ×

× × × । କର୍ଣ୍ଣରେ ଶୁଣିଲେ କୃପାନିଧାନ ।
କହିଲେ ଦେବଙ୍କ ଅଗେ ନନ୍ଦରେ । କର ଦର ଚେଜ୍ୟା ଥାଅ ନନ୍ଦରେ ।
ଏଣୁ ନ ବସ୍ତୁର । କରିବାକୁ ରସ ହେଲା ବସ୍ତୁର । (କୃ: ବ:)
ବଳେ ଅନଙ୍ଗେ ବଳେ ହରପଦେ । × × × × ।
(୩) × × × । କହନ୍ତି ତୋ' ଅଙ୍ଗ ଗୋପେ ଜନମ ।
କହି ଅନ୍ତର୍ଦ୍ଧାନ ହେଲେ ଭବାନୀ । କଲ୍ପ ବସ୍ତୁର ବଜ୍ରଣପମଣି ।
(କୃ. ବ:)

× × ×

ଖରେ ଖରେ ଅନ୍ତର୍ଦ୍ଧାନ ସେଠାରୁ ରାଣୀ,
ଅଙ୍ଗ ଅଧର ତୋର ଜାତ କୁଲୋକେ ।
ଜୀବ ଯିବ ଦୁଷ୍ଟଙ୍କର, ଶୂନ୍ୟରେ ଡାକେ,

ଶ୍ରବଣେ ଶ୍ରବଣେ ବଂଶ ଦେଖା ଭାରତୀ ।

ବୁଡ଼ି ବୁଡ଼ି ବସ୍ତ୍ରବାଦେ ତଳେ ସେ ନାଚ । (ଶୁ: ଘ:)

(୪) ଜନକରସାଣ ଫୁଲ ଦର୍ପଣ,

କରବ କେବେ ଯୋଷ ଘଣ ପଣ ଯେ ।

କାନ୍ତିକ କେବେ ନୋହେ ସମାନ,

କଞ୍ଜନାଥ ଅଗେ ଜ୍ୟୋତିରଙ୍ଗଣ ଯେ । (ଭୁ: ଭ:)

× × ×

ଇନ୍ଦ୍ରନୀଲମଣି ଫୁଲ ଦର୍ପଣ

ଯୋଖ କରିବ ଯେବେ ପଣପଣ ।

ତେବେ ତାହାର କାନ୍ତି ବଢ଼ପଣ,

ତାର କାନ୍ତିକ ଦେବ ସମର୍ପଣ ସେ । (ଧ: ଚ:)

(୫) କବି କଳ୍ପନାରେ ଭୁଲେ ଭୁଲିବାରେ

ନାହିଁ ଆଉ ସମତୁଲ ।

କଞ୍ଜସମ୍ଭବ ସ୍ୱସାରସାର

କର ଠୁଲ ବାନ୍ଧି ଅମୃତର

କେତେ କାଲ ବହୁ କଷ୍ଟଭୁକ୍ତ ବହୁ,

କଲା ଏରୂପ ନିବାର ।

କାନ୍ତି ଅନାଇ ଯଉବନବତୀ,

କାମଦେବଙ୍କୁ ନିନ୍ଦବେ ରତି,

କାନନକୁ ଯିବା ଦେଖି ଏ ଭ୍ରମର,

କରଇ ହୃଏ ମୋ ଛାତି । (ଭୁ: ଭ:)

× × ×

ସଂସାରକାନ୍ତ୍ରସାରକୁ ଅଣିଲା, ଅମୃତ ମିଶାଇ ବାଣ୍ଟ ଛାଣିଲା ।

ବହୁ ଏ ମୂରତିକି ନିର୍ମାଣିଲା, ମର୍ତ୍ତ୍ୟଲୋକରେ ରଖାଣିଲା ସେ ।

ଉପମା ବୃଷ୍ଟି ଭଣିଲ ଯେ ।
ମୋହନମନ୍ଦରେ ଜୀବନନ୍ୟାସ କରି ସାରସ୍ୱଂସାରେ ଗଣିଲି ସେ ।
ଦେଖିବ ଯେବେ ସେ ଯୋଗ୍ୟନୂରକ୍ତ । ଶିବଙ୍କ ପ୍ରଶଂସା କରିବ ଭକ୍ତ ।
ପତି ଛଡା କଲେ ପରବରଣ, ମୋ ଲଭି ଦୁଅନ୍ତା କିନା ବରଣ ସେ ।
(ବ: ଚ:)

(୬) କେନ୍ଦୁ ବପସ୍ୱାନରେ ଅଳଙ୍କାର,
କଳେବରରେ ଶଙ୍କେ ଦେଲା ବାହାର । (ଭୂ ବ:)

× × ×

କଲା ଭୂଷଣ କେନ୍ଦୁ ବପସ୍ୱାନ,
କସ୍ୱଇଲା ବନ୍ଧୁମ ସ୍ୱେଦଚନ୍ଦ୍ର । (ର: ବ:)

(୭) କଲି ମନେ ଭାବନା ଶୁଣ ପ୍ରିୟଅଙ୍ଗନା
କଷୋର ହେବେ ଯେବେ ଏହୁ,
ଦୂଲଟା କୁଳବନ୍ତି କେହୁ ନୋହୁବେ ସତୀ
କଠୋରେ କାନ୍ତା ହେବେ ମୋହ । (କୁ: ବ:)

× × ×

ହେ ବୋଲଇ ଏ କଷୋର ହୋଇଲେ,
କହଁ ସ୍ତ୍ରୀଏ କ ନୋହୁବ ସ୍ୱହଁଲେ ।
ଦୂଲଯୁବତୀଙ୍କ କୁଳ ବୁଡ଼ିବ,
କ୍ରମେ ପତିବ୍ରତା ବ୍ରତ ଛାଡ଼ିବ । (ର: ବ:)

(୮) କାମସାରଙ୍ଗ ଛଣି ବୁଲତା
କେବେ ମନୋହରେ କହେ କଥା,
କାହିଁ ଏ ଭ୍ରମର ନୋହୁଲା ଅମର
କରନ୍ତ୍ର ଲଷ୍ଟ ଦେବତା ।

କୋଟି ବ୍ରହ୍ମାଣ୍ଡ ଯା ପଦ୍ମର
ଚରେ ବନେ ଗୋରୁ ରକ୍ଷିବାର,
ଜନ୍ମେ ପଶୁରଙ୍କୁ ଦେଖି କ୍ଷୁଦନ୍ତୀ
କମ୍ପଇ ମୋ' କଳେବର ।
କେ ବୋଲଇ ଅମ୍ବୁଜାକ୍ଷୀ ଶୁଣ
କଲ୍ଲି ବନ୍ଧୁ ଗୋପାଳଜନମ,
ଭୁଲ ଅସ୍ତ୍ର ବେତ୍ର ଧରିବାର
କଷ୍ଟ ନୃହଇ ଦୂଷଣ ।                (ଭୁ: ଭ:)

× × ×

କଉଥାନ୍ତା ତ, ଦଇବ ଏ ପୁଅ ଅମ୍ବର,
ଜରାନ୍ତାଇଁ ଇଷ୍ଟଦେବତାକୁ ଶ୍ରେଷ୍ଠ ବସାଇ ପଲଙ୍କ ଉପର ।

... ...

କେମନ୍ତ ପ୍ରକାରେ ନାଚଇ ସଖୀରେ କାମଧନୁଜତା ଭ୍ରୂଲତା ।

...

ବାଳବଳ ଏ କାହାର ଅପୂର୍ବ ନୃତଇ,
କେମନ୍ତ ନୋହିଲେ ଶୀବନ୍ତ ହୋଇଲେ କନ୍ଦେ ପଶୁରଙ୍କୁ ବଦଇ ।
କେ ବୋଲଇ ବଡ଼ ହେଲେହେଁ ଗଉଡ଼ଘରେ ପଡ଼ିଲେ ଘେଟେବେଟ୍ଟୁଁ ।
କଠାଉ ଦଉଡ଼ି ଖିଆ ଛୁରବାଡ଼ି ଅସ୍ତ୍ର ହେଲାଣି ଚେଟେବେଟ୍ଟୁଁ,
କାହୁଁ ଖାଇବେ, ନ ରଖିବେ ଯେବେ ଗୋଧନ ।
କେ ବୋଲେ ଯେ ଯାହା ଜୀବିକା ସେ ତାହା ନ କଲେ କେହି ପିବ ଦନ ।
(ଭୁ: ଭ:)

(୮) ଭଜୁଣ ବେଣ୍ଣ ନନ୍ଦନ          ଜଣରେ ଭରୁସା ବନ
ଜନ୍ମେ ସନ୍ତୋଷ ପ୍ରାପ୍ତ ହେବା ସଙ୍ଗର ।

କଣ୍ଠ ହେଲା ଗଦଗଦ    ସୁମରି ଗୋପୀଙ୍କ ପଦ

କରି ଆଲିଙ୍ଗନ ପଶ୍ଚରନ୍ତି ଶ୍ରୀଧର ।    (ଘୁ: ବ:)

× × ×

ଗୋପନବଚନ ଶୁଣି    ଉଦ୍ଧବ ଯୋଡ଼ିଲେ ପାଣି

ପ୍ରେମେ ଥରଥର କମ୍ପେ ଦେହ, ସେ ଯଦୁବୀର ।

କହଇ ଗୋପୀଙ୍କ କଥାମାନ । କ୍ଷଣେ କ୍ଷଣେ ବୁଜଇ ନୟନ ସେ ।

(ମ: ମ: )

(୧୦) କମଳଧର କମଳ    ନ ମୁଖରେ ଢେଉତଳ

କୋପେ ନ ଦଅନ୍ତି ଜଳ ତୃଣ ସକଳ ।

ତାହାର ମନ ହରଷ    ନ ହରଇ ହେ ପୀତବାସ

କୃଷ୍ଣ କୃଷ୍ଣ ବୋଲି ହେଉଛନ୍ତି ବିକଳ ।

କରି ତୁମ୍ଭ ନାମକୁ ଧ୍ୟାନ ।

କଷ୍ଟେ ବରଜବନିତା ବଞ୍ଚନ୍ତି ଧନ ।    (ଘୁ: ବ:)

× × ×

କୂପେ ନ ଦଅନ୍ତି ଜଳ    ବୃକ୍ଷେ ନ ଫଳନ୍ତି ଫଳ

ସୁଗନ୍ଧ ପବନ ନ ବହଇ ।

ଏକା ତୁମ୍ଭ ବିଚ୍ଛେଦରୁ    ଚିନ୍ତା ହେଲା ମହାଭରୁ

ତାହାର ମନେ ହରଷ ନାହିଁ ହେ । ଦୀନବନ୍ଧୁ ।

ରଜନୀ ଦିବସ ଝୁରୁଛନ୍ତି ।

ମହାକଷ୍ଟେ ଗୋପୀଏ ବଞ୍ଚନ୍ତି ହେ ।    (ମ: ମ:)

(୧୧) ଧଳବର୍ଣ୍ଣର ଦୁଆର    ମଣି ଦାମ ଅଳଙ୍କାର

ବର୍ଣ୍ଣେ ଭୃଙ୍ଗର ମୃଦଙ୍ଗ ଗୋପବାସିନୀ ।

କୃବେଳୀ ନଅଳୀ ମଲ୍ଲୀ    ମରୁଅ ଗଙ୍ଗଶିଉଳୀ

ବକାଷିଣ ଝଣ୍ଟି କେନ୍ଥୁଲନ୍ତ ଅବନୀ ।

ଚମ୍ପକେଢ଼ୀ ନୂଦନ୍ତ ବେଶ ।

ଏ କହୁବ ମାନବନ୍ଧୁ ଗୋପସନ୍ଦେଶ ।    (ଭୂ: ବ:)

× × ×

ଚମ୍ପା ଯାଇ କୁରୁବକ    ନଅଳୀ ମଲ୍ଲୀ ଅଶୋକ

ଏ ଆଦି ଯେତେକ ପୁଷ୍ପମାନ ।

ପୂଜନ୍ତି ଝଡ଼ନ୍ତ ତଳେ    ସଞ୍ଜନ୍ତ ଅଇ ପ୍ରବଳେ

ଯେଣୁ ଗୋପୀ ନୃତ୍ୟନ୍ତ ମଣ୍ଡଳ ହେ । ମାନବନ୍ଧୁ ।

ଗୋପପୁର ବାରତା ଏମନ୍ତ ।

ଶୁଣିଲେ ଶ୍ରବଣେ ଦେବ ହସ୍ତ ହେ ।    (ମ: ମ:)

(୧୨) କୃଷ୍ଣ ଛାଡ଼ି ଅନ୍ୟ ଦେବ ଅଶ୍ରପୂ ଯାହାର ।

କୂପ ଖୋଳ ଜାହ୍ନବୀ ତଟରେ ପିଏ ନୀର ।    (ଭୂ: ବ:)

× × ×

ବାସୁଦେବ ପରିତ୍ୟଜ୍ୟ ଯୋଽନ୍ୟଦେବମୁପାସତେ ।

ତୃଷାର୍ତ୍ତୋ ଜାହ୍ନବୀତୀରେ କୂପଂ ଖନତି ଦୁର୍ମତିଃ ।

(୧୩) କୁମାରୀ ନାଚ ହୋଇଛୁ ନନ୍ଦର । କନ୍ୟା ପ୍ରତିଦାନ କର ତହିଁର ।

କୃଷ୍ଣ ତହିଁ ଥୋଇ । କାତ୍ୟାୟନୀ ଆଣ ବଦନ ହୋଇ ।

କର୍ଣ୍ଣେ ତ୍ରିଦଶବଚନ ଶୁଣିଣ । କପୋଳରେ କୃଷ୍ଣ ଥିବେ ଧରିଣ ।

କବାଟ ଫିଟିଛୁ ଶିକ୍ଳ ଖାଙ୍କୋଳ । କହ୍ନାଏ ଘଣ୍ଟ ଗଢରେ ଯଚୁଳୀ ।

କେତେଦେହିଁକ ଦୂରେ । ଲୁଲଯଦୁଶ୍ରେଷ୍ଠ ଲେଉଟେ ମାର୍ଗରେ ।

ତହିଁବାଲ କରେ କରେ ଝମକ । ତଣ୍ଡ ବସୁଦେବ ତୁଷ୍ଟ ଚମକ ।

ତତକ୍ଷ ବନ୍ଧ ପରାଏ ହୋଇଲା । ତତ୍କ୍ଷ ଧଇର୍ଯ୍ୟବନ୍ଧ ନ ରହିଲା ।
କୃଷ୍ଣଙ୍କ ଧାଇଣ । ତନ୍ତ୍ର ତନ୍ତ୍ରା ଭଣ ଅଗତତ୍ତ୍ୱାଣ । (କୃ: ବ:)

× × ×

ଏମନ୍ତ କହୁ ନରହରି । ନରବାଳକ ରୂପ ଧରି ।
ଗୋବନ୍ଦ ଅଜ୍ଞା ଦେନ ଶିରେ । ବୋଲେ ଧଇଲା ଚକ୍ରଧରେ ।
ଫିଟିଲା ପଦ୍ମବ୍ରୁ ଖାଙ୍କୋଳ । ପଥ କଢ଼ାଇଲା ବନ୍ଦୁଳ ।
ବୋଲରେ ଦେଖି ନାରାୟଣ । ତବାହ ଫିଟିଲା ଚରଣ ।

... ... ... ... ...

ଯାଥନ୍ତେ କୃଷ୍ଣଙ୍କ ଦେନଣ । ପଥେ ଓଗାଳେ ଉଗ୍ରସେନ ।
(ଭ: ଭା: ୧୦ମ)

(୧୪) କଂସ୍ତ୍ରି ଶୁଣି ବସୁଦେବ ଗୁହାରି । କରୁଣାସାଗର ମୁରଲୀଧାରୀ ।
ତରେ ଦର ଅର ଚିହ୍ନ ଦେଖାଇ । କହନ୍ତି ଉଗ୍ରସେନଙ୍କୁ ଚେତାଇ ।

... ... ... ...

ତରେ ମାଳଧରି କମଳାବର । କଣ୍ଠେ ଲମ୍ବାଇଲେ ଉଗ୍ରସେନର ।
କହିଲେ ତିତାଙ୍କୁ ନିର୍ଭଏ କର । ତଳ ମଥୁରାରେ ନୃପତିବର ।
ତର ବେନଯୋଡ଼ । କରେ ସ୍ତୁତି କୃଷ୍ଣ ଚରଣେ ପଡ଼ି । (କୃ: ବ:)

× × × ×

ଚିତାଚ ବକଳ ଦେଖିଣ । ବୋଲନ୍ତି ପ୍ରଭୁ ଭଗବାନ ।

... ... ... ...

ଶୁଣି ବୋଲଇ ଉଗ୍ରସେନ । ଦେଖାଅ ଶଙ୍ଖ ଚକ୍ର ଚିହ୍ନ ।
ଭକ୍ତଙ୍କୁ ଦୟାଭାବ ବହି । ଶଙ୍ଖ ଚକ୍ର ଚିହ୍ନ ଦେଖାଇ ।
ସ୍ତୁତି କରଇ ଉଗ୍ରସେନ । ଚରଣେ କଲାକ ପ୍ରଣାମ ।
ସମ୍ମୁଖେ ଆଜ୍ଞା ତାଙ୍କୁ ଦେଲେ । ନୃପତି ହୋଇବୁ ବୋଇଲେ ।
(ଭ: ଭା: ୧୦ମ)

(୧୫) ତାଳଦୀଚ ଅଜ୍ଞା ଦେଲେ ମୋହନ । × × × ।
ତଲ ବାଇବନ୍ଧ ବାଟରେ ବାହ (କୃ: ବ:)

× × × ×

ହରଙ୍କି ଦେଖି ଭୟ କଲା । ବାଳକହୃଦରେ ବାଢ଼ ଦେଲା ।

(ଜ: ଭା: ୧୦୨)

(୧୬) ବଦନକୁ ଚାହିଁ ଚନ୍ଦ୍ରକୁ ଚାହିଁ । ବଦଳ ଏହୁ ତ ସଫଳ ହେଉ ଯେ ।

(ଧନୁର୍ଭଙ୍ଗ ପରେ ବର ବରିବା ପୂର୍ବେ ସୀତାଙ୍କର ବେଶବର୍ଣ୍ଣନା)

( ବୈ: ବ: )

× × × ×

କଳାକରରେ ତନ୍ତ, ଶ୍ରୀମୁଖେ ତନ୍ତ ଦାନ, କାନ୍ତି ତ ସମାନ ନୁହଇ ।

କର ତାଙ୍କର ଛଏ, ଏ ଅଛନ୍ତି ଅକ୍ଷଏ, କଳାକର ସେ ପୂର୍ଣ୍ଣ ଏହୁ ।

( ଲୁ: ବ: )

(୧୭) ବନ୍ଧା ସୁମନରେ ଜୁଡ଼ା ଯେ ଧୈର୍ଯ୍ୟ ଉଜୁଡ଼ା ହେଲୁ । (ବୈ: ବ:)

× × × ×

କମଳାସ୍ତ୍ର ଜୁଡ଼ା, କେତକୀ ବେଢ଼ା । କାନ୍ତାକଦମ୍ବର ଧଇର୍ଯ୍ୟବୁଡ଼ା ସେ ।

( ଲୁ: ବ: )

(୧୮) ଚଳେପି ଅଙ୍କୁ ତଇଳ ଶ୍ୟାମଳ । ବାରଣଦନ୍ତ ପ୍ରସାଧନୀ ଘଳ ।

ତଭ୍ରବସୁଜା କଲ୍ଲୋଳରେ ଭାସେ । ଚକଷି ଅପିଛ କୁମୁଦ କି ସେ ।

ବାନ୍ଧିଲେ ଜୁଡ଼ା ଯତନେ ଯେ ।

ବନ୍ଦୀ ହୋଇଲ ମର୍କତବୃବେଣୀରେ ବନ୍ଦୀ ହେବେ ମନମାନେ ଯେ ।

( ବୈ: ବ:

× × ×

କଳା ଘନାଘନ ପ୍ରାଏ ସୁବାସ ଚକ୍ଷୁର ।

କ ଶୋଭା ଚୂର୍ଣ୍ଣ କୁନ୍ତଳ ଦଶେ ମନୋହର ।

କସ୍ତୁରୀ ସ୍ନେହ ଲଗାଇ । କସ୍ତାଦନ୍ତ କଙ୍କତିକା ଗୁନ୍ଥନ୍ତି ତହୁଁ ।

କାଳନ୍ଦୀକଲ୍ଲୋଳେ କି ଏ ଚନ୍ଦ୍ରକାନ୍ତି ଭାସେ ।

ଶୋଭା ଜାନକୀର ଶୁକ୍ଳ ସୁମନ ପ୍ରକାଶେ ।

କାନ୍ତି କବରୀର ଯତନ । କାମ କାନ୍ତିକେତନ ବନ୍ଦୀ ହେବେ ମୀନ ।

( ଲୁ: ବ: )

**କବିଙ୍କ ହୃଦୟର ଭକ୍ତିପ୍ରବଣତା**—'କୃଷ୍ଣବିହାର'ର ଅନ୍ୟାନ୍ୟ ଗୁଣମଧ୍ୟରେ କବିଙ୍କ ହୃଦୟର ଭକ୍ତିପ୍ରବଣତା କାବ୍ୟର ଶ୍ରେଷ୍ଠ ଭୂଷଣ ହୋଇ ରହିଅଛି । କୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଆସକ୍ତି ଓ ଭକ୍ତି କବି ଯେପରି ହୃଦୟସ୍ପର୍ଶୀ ଭାବରେ ବର୍ଣ୍ଣନା କରିଛନ୍ତି, ତାହା ତାଙ୍କ ହୃଦୟର ଭକ୍ତିର ସ୍ୱଚ୍ଛ ଦରପଣ । ଭକ୍ତିପରିପ୍ଳୁତ ହୃଦୟ ନ ହେଲେ, କୃଷ୍ଣପ୍ରେମରେ ତନ୍ମୟ ନ ହେଲେ, ଉନ୍ମତ୍ତ ନ ହେଲେ, ଆତ୍ମବିସ୍ମୃତ ନ ହେଲେ ଏପରି ଲେଖା କଦାପି ସମ୍ଭବେ ନାହିଁ । କୃଷ୍ଣ-ଭକ୍ତିସ୍ରୋତରେ ନିଜକୁ ଭସାଇ ଦେଇ, ତାଙ୍କ ପ୍ରାଣରୁ ଭକ୍ତିର ଯେଉଁ ସ୍ୱଚ୍ଛ ମନ୍ଦାକିନୀଧାରା ଝରି ପଡୁଛି, ସେହି ଧାରାରେ ତାଙ୍କ କବିତା ଧୌତ, ପୂତ ଓ କଲ୍ଲୋଳିତ ହୋଇଅଛି ।

କୃଷ୍ଣ କବି ଭକ୍ତ ଥିଲେ, କିନ୍ତୁ ତାଙ୍କର କାମନା ନ ଥିଲା । ସେ ଶ୍ରୀକୃଷ୍ଣଙ୍କ ଲାଗି ଶ୍ରୀକୃଷ୍ଣଙ୍କୁ ଭଜୁଥିଲେ । ନିଷ୍କାମଭକ୍ତି ତାହାଙ୍କର କବିତାକୁ ମଧୁମୟ କରିଅଛି । ନିଷ୍କାମଭକ୍ତି କାବ୍ୟର ସର୍ବାଙ୍ଗ ପୁଷ୍ପରୁ ଗନ୍ଧ ବାହାରିବା ପରି ସ୍ପଷ୍ଟ ବାହାରି ପଡ଼ୁଛି । ସେ ଦାସ୍ୟଭାବପନ୍ନ ଥିଲେହେଁ ଦାସ୍ୟଭକ୍ତି ଚିତ୍ରଣରେ ଯେ ପରିମାଣରେ କୃତିତ୍ୱ ଦେଖାଇ ଅଛନ୍ତି ରାଧାଙ୍କର ଓ ଗୋପୀମାନଙ୍କର ରାଗାତ୍ମିକା ଭକ୍ତି ତଥା ନନ୍ଦ, ଯଶୋଦା, ବସୁଦେବ ଓ ଦେବକୀଙ୍କର ବାତ୍ସଲ୍ୟଭାବ ମଧ୍ୟ ସେହିପରି ଫୁଟାଇ ପାରି ଅଛନ୍ତି । ବହୁ ଧର୍ମଗ୍ରନ୍ଥ ଅଧ୍ୟୟନ ତାହାଙ୍କର ହୃଦୟର ଭକ୍ତିସ୍ରୋତକୁ ଅତି ନିର୍ମଳ ଓ ପୂତ କରିଥିଲା । ଧର୍ମ ସମ୍ବନ୍ଧରେ ତାଙ୍କର ସଙ୍କୀର୍ଣ୍ଣତା ନ ଥିଲା । ଏକ ଈଶ୍ୱରଙ୍କ ମହାଭାବ ତାଙ୍କ ହୃଦୟକୁ ବିଭାବିତ କରିଥିଲା । ସେହି ମହାନ୍ ଈଶ୍ୱରଙ୍କ ନିକଟରେ ସେ ଆପଣାକୁ ଅତି ତୁଚ୍ଛ, ହୀନ ଦୀନ ବୋଲି ଜ୍ଞାନ କରୁଥିଲେ । ଜ୍ଞାନ ଅପେକ୍ଷା ଭକ୍ତି ବଡ଼, ଏହି ଭାବ ତାଙ୍କ ହୃଦୟରେ ଦୃଢ଼ମୂଳ ହୋଇଥିଲା । ପଦସେବା, ରୂପଧ୍ୟାନ, ନାମଶ୍ରବଣ, ନାମକୀର୍ତ୍ତନକୁ ସେ ଭକ୍ତିର ଅଙ୍ଗସ୍ୱରୂପ ଜ୍ଞାନ କରୁଥିଲେ । ଯେତେବେଳେ କବି ତନ୍ମୟ ହୋଇ ଗାଇଛନ୍ତି—

"କୃପାବଳ୍ପ ଅଣିମାଦ ଭୋଗ ଏ ଯେତେକ
କାହିଁରେ ମୋ ରତ୍ତ ନାହିଁ ଜଣାଣ ଏତେକ ।
କଣ୍ଠେ ପ୍ରେମଭକ୍ତି ରତ୍ନ ଦେଇ ପ୍ରକାଶକ ।
କର ତୁମ୍ଭ ପାଦପଦ୍ମ ସେବାରେ ସେବକ ।"
"କପର୍ଦ୍ଦୀ ଅଟନ୍ତି ଯାହା ଭାବରେ ଭୋଳକ ।
କୋଟିଏ କୀଟରେ କୀଟ ଗୋଟିଜେ ମୁଁ ଏକ ।"

ସେତେବେଳେ ତାଙ୍କର ହୃଦୟକନ୍ଦରରୁ ଭକ୍ତିସ୍ରୋତର ତରଳ ସ୍ନିଗ୍ଧ ଉଚ୍ଛ୍ୱାସ ଗଦ୍‌ଗଦ ଧାରାରେ ପ୍ରବାହିତ ହୋଇଅଛି । ଅଦ୍ୱୈତବାଦ ପରିସ୍ଫୁଟ ହୋଇଅଛି । ଶିବ, ବ୍ରହ୍ମାଦି ସେହି ଅଦ୍ୱୈତ ବ୍ରହ୍ମଙ୍କର ଉପାସକ-ରୂପେ ସୂଚିତ ହୋଇଅଛନ୍ତି । ଶିବଙ୍କ ପରି ବଡ଼ ଲୋକ ଯାହାଙ୍କ ଧାରଣାରେ ଭୋଳ ଥାନ୍ତି; ତାଙ୍କ ଆଗରେ କବି ତଏ ? ସେ କୀଟ ସ୍ୱୀକା ନୁହନ୍ତି ! ଆହା, କ ଉଚ୍ଚ ଭକ୍ତି ! ସେ ଅପଣାକୁ ଅତି ତୁଚ୍ଛ ଜ୍ଞାନ କରୁ-ଥିଲେ, ଏହା ତାଙ୍କର

"କଲି ବହୁ ବପ୍ରଜନ୍ମ    କୁସଙ୍ଗରେ ନେଲି ଦିନ
କ୍ଷଣିତରେ ସାଧୁସଙ୍ଗେ ବସିଲି ନାହିଁ ।"

ପଂକ୍ତିରୁ ସ୍ପଷ୍ଟ ପରିସ୍ଫୁଟ ହୋଇଅଛି ।

**ଉପସଂହାର**—'କୃଷ୍ଣବିହାର' ପାଠ କରି ଉତ୍କଳର ବରପୁତ୍ର ଅଧ୍ୟାପକ ଅର୍ତ୍ତବଲ୍ଲଭ ମହାନ୍ତି କହୁଥିଲେ, "ଆହା, ରସିକ କବିଟିଏ ! ଦୀନକୃଷ୍ଣ ତାଙ୍କୁ ପାଖରେ ବସାଇ କହିବେ,—ଏଉଟା ମୋର ସାନ ଭାଇ ।" ପ୍ରକୃତ ସତ୍ୟ କଥା । କୃଷ୍ଣ କବି ଉତ୍କଳର ଜଣେ ଶ୍ରେଷ୍ଠ କବି । କବି ସଙ୍ଗେ କବିର ତୁଳନା କରାଯାଏ ନାହିଁ । ପ୍ରତି କବିର ବିଶେଷତ୍ୱ ଥାଏ, ଯାହା ଅନ୍ୟଠାରେ ଥାଏ ନାହିଁ । ସୁତରାଂ, ମୁଁ କୃଷ୍ଣ କବିଙ୍କୁ ଅନ୍ୟ କବି ସଙ୍ଗେ ତୁଳନା କରିବାକୁ ଚାହୁନାହିଁ । ତେବେ ସେ ଉପେନ୍ଦ୍ର,

ଅଭିମନ୍ୟୁ, ଦୀନକୃଷ୍ଣ, ଭକ୍ତଚରଣ ଆଦି କବିଙ୍କ ଜନ୍ମଭୂମିରେ ଜାତ ହୋଇଥିଲେ, ସେମାନଙ୍କର ପଦାଙ୍କ ଅନୁସରଣ କରିଛନ୍ତି ଏବଂ ନିଜ ଶୈଳୀ ପ୍ରତିଭା, ନୈସର୍ଗିକ କବିତ୍ୱଶକ୍ତି ଓ କୃତିତ୍ୱ ବଳରେ ସେମାନଙ୍କ ସଙ୍ଗେ ସମାସନ ଦାବୀ କରି ବସିଛନ୍ତି । ଯେବେ ଦିନ ଓଡ଼ିଆ ସାହିତ୍ୟ ଥିବ, ତେତେଦିନ ଲୁଞ୍ଜବିହାର-ବୀଣାର ଅମୃତ ଝଙ୍କାର ଓଡ଼ିଆର ମନ ମୋହୁଥିବ, ତେତେଦିନ କବି କୃଷ୍ଣ କବି ଯଶୋଦେହରେ ଜୀବିତ ଥିବେ ।

ପରିଶେଷରେ ବକ୍ତବ୍ୟ ଏହି ଯେ ବହୁ ପରିଶ୍ରମପୂର୍ବକ ମୁଁ "ଲୁଞ୍ଜବିହାର" କାବ୍ୟର ମୂଳପାଠ ଓ ଘଣ୍ଟାପଥ ସଙ୍କଳନ କରିଥିଲେ ମଧ୍ୟ ସେଥିରେ କୃତକାର୍ଯ୍ୟ ହୋଇଅଛି ବୋଲି ମନେ କରୁନାହିଁ । ପାଠକବର୍ଗ ଦୟା କରି ଯାହା ଏଥିରେ ଭ୍ରମ ପ୍ରମାଦ ବା ତ୍ରୁଟି ଦେଖାଇ-ଦେବେ, ପରବର୍ତ୍ତୀ ସଂସ୍କରଣରେ ତାହା ସଂଶୋଧନ କରିବି । ମୋହର ଭକ୍ତିଭାଜନ ଗୁରୁ ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ. ତାହାଙ୍କର ଅମୂଲ୍ୟ ସମୟ ବ୍ୟୟ କରି ମୂଳପାଠରୁ ୫।୬ ସ୍ଥଳ ସଂଶୋଧନ କରି ଏବଂ ମୁଖବନ୍ଧର କେତେକ ପରିବର୍ତ୍ତନ ସକାଶେ ସତ୍ପରାମର୍ଶ ଦେଇ ମୋତେ ଅନୁଗ୍ରହପାଶରେ ଅବଦ୍ଧ କରିଅଛନ୍ତି ।

ଶ୍ରୀ ଶିବପ୍ରସାଦ ଦାଶ ।



# କୁଞ୍ଜବିହାର



## ପ୍ରଥମ ଛାନ୍ଦ

### ମଙ୍ଗଳାଚରଣ

ରାଗ—ମଙ୍ଗଳ

କରୁଣାକର ଗଣେଶ ବିଘ୍ନ-ବିନାଶକ ।
କଣ୍ଠେ ବସ, ପଦ ଫୁରୁ, ଯାଉ ମୋ ପାତକ ଯେ । ୧ ।

କର କୃପା ଲମ୍ବୋଦର ଦର—ବିନାଶକ
କବି-ଆନନ ମୋଠାରେ ସୁବର-ଦାୟକ ଯେ । ୨ ।

କଣ୍ଠେ ବିଜେ ନାଗରାଜ ଦଂଶେ କି ଶୋଭକ
କରନ୍ତି ଭୂଦେବେ ଯଜ୍ଞେ ଅଗେ ଯା ପୂଜକ ଯେ । ୩ ।

କୃତ୍ତିବାସ—ନନ୍ଦନ ଶରୀର ପୃଥୁଳକ ।
କରରେ ଅମୃତ ଲଡୁ କ୍ଷୁଧା-ବିନାଶକ ଯେ । ୪ ।

କର୍ଣ୍ଣରେ କୁଣ୍ଡଳ କଣ୍ଠରେ ପାରିଜାତକ ।
କୃପା-ବିଲୋକନେ ଭୃତ୍ୟ-କଲୁଷ-ନାଶକ ଯେ । ୫ ।

---

ପାଠାନ୍ତର—୫ । ୧—କଣ୍ଠରେ· କଣ୍ଠେ ଘ ୫ । ୨·କୃପାବିଲୋକନେ—
କୃପାବିଲୋକନେ ।

କୃପାରେ ତୁମ୍ଭର ବ୍ୟାସଦେବସୂନୁ ଶୁକ ।
କଲେ ଭାଗବତ ଗ୍ରନ୍ଥ ବଖାଣ ଅନେକ ଯେ । ୬ ।

କର କୃପା ବାଳଚନ୍ଦ୍ର ଚନ୍ଦ୍ର-ଆନନକ ।
କରେ ପାଶାଙ୍କୁଶ ଶୋଭା ଭକ୍ତବତ୍ସଳକ ଯେ । ୭ ।

କଲେ କୃତ୍ତିବାସ ଯାକୁ ପ୍ରଶଂସା ଅନେକ ।
କରେ ଦେଲେ ସୁଧା ଲଡ଼ୁ ବୋଧିଲେ କାର୍ତ୍ତିକ ଯେ । ୮ ।

କହି କେ ପାରିବ ତୁମ୍ଭ ମହିମା ଅନେକ ।
କୃପାରେ ମୂକକୁ ଛନ୍ଦ ଫୁରେ ବାକ୍ଯଣିକ ଯେ । ୯ ।

କରରେ ଘେନ ଲେଖନ ଭୃତ୍ୟ ମୁଁ ଲେଖକ ।
କଣ୍ଠେ ବସି କହନ୍ତୁ ଯା ଶ୍ରୀଗଣନାୟକ ଯେ । ୧୦ ।

କର ହେ କୋବଦେ ମନ କୃଷ୍ଣପାଦେ ଏକ ।
କଲେ ଧ୍ୟାନ ନ ରହିବ ହୃଦରେ ପାତକ ଯେ । ୧୧ ।

କରୁଣାକର ଶ୍ରୀକୃଷ୍ଣ ରଥାଙ୍ଗଧାରକ ।
କରନ୍ତେ ଅବଲୋକନ ମୁକତିଦାୟକ ଯେ । ୧୨ ।

କଳା ପଟ୍ଟଡରେ ବନ୍ଦେ କମଳାନାୟକ ।
କରନ୍ତୁ କୃତାର୍ଥ ଜୀବ ହରଣ ପାତକ ଯେ । ୧୩ ।

କଳ୍ପତରୁ ଚିନ୍ତାମଣି ସୁଗତିକାରକ ।
କରୁଣା କର ଅନ୍ଧକୁ ଲୋଚନଦାୟକ ଯେ । ୧୪ ।

କରେ ଶୋଭା କୌମୋଦକୀ-କମଳ ତାରକ ।
କରନ୍ତୁ ଭକ୍ତେ କରୁଣା-ଚନ୍ଦନ ଅଧିକ ଯେ । ୧୫ ।

---

୯ । ୨ ଫୁରେ ବାକ୍ଯଣିକ—ଫୁରଇ ଅନେକ ।

କଉସ୍ତୁଭ ମଣି ଶୋଭା ହୃଦରେ ପଦକ ।
କମଳା-ବଲ୍ଲଭ ହରି କଷ୍ଟ-ଉଦ୍ଧାରକ ଯେ । ୧୬ ।

କୃପାଳୁ ଦୀନବାନ୍ଧବ ଲୁବ୍ଧକ ତାରକ ।
କୃତ୍ତିବାସ-ବ୍ରହ୍ମାଗର୍ବ—ବିନାଶକାରକ ଯେ । ୧୭ ।

କୃପାରେ ଦେଇ ପାରନ୍ତି ମୁକ୍ତି-ଭଣ୍ଡାରକ ।
କୋଳି ପାଇଁ ଅଳ କରି ଦେଲେ ଯେ କନକ ଯେ । ୧୮ ।

କଣ୍ଠ ସୁରପତିର ଲୋଟେ ଯା ପାଦକ ।
କି ନେହ ଗୋପୀବଦନାମ୍ବୁଜ ପୀୟୂଷକ ଯେ । ୧୯ ।

କୃପାଳୁ ମଦ୍ଧମାବନ୍ତ ସୁଗତିଦାୟକ ।
କୃପାକର ଅବସରେ ହୁଅ ଏ ପୁସ୍ତକ ଯେ । ୨୦ ।

କୃପାନିଧି ଅଣିମାଦି ଭୋଗ ଏ ଯେତେକ ।
କାହିଁରେ ମୋ ଶକ୍ତି ନାହିଁ ଜଣାଣ ଏତେକ ଯେ । ୨୧ ।

କଣ୍ଠେ ପ୍ରେମ ଭକ୍ତିରସ ହୁଅ ପ୍ରକାଶକ ।
କରି ତୁମ୍ଭ ପାଦପଦ୍ମ ସେବାରେ ସେବକ ଯେ । ୨୨ ।

କୃଷ୍ଣ ଭକତଙ୍କ ହୃଦ ଆଜ୍ୟ ପତ୍ରିଏକ ।
କରଣ ଏ ମେଷ-ଘନୁ ତରଳକାରକ ଯେ । ୨୩ ।

କୃଷ୍ଣ-ଅମାସ୍ୟା-ଅଜ୍ଞାନ-ଅନ୍ଧାର-ନାଶକ ।
କୋଟି ଓଷଧୀଶ ହେବ ଅଘ-ବିନାଶକ ଯେ । ୨୪ ।

---

୧୭ । ୨-ବଳାପର୍ବୃଷ ବନ୍ଧୁ ନରେଶଭଜକ ।

୨୧ଶ ପଦ ପରେ ଅଧିକା—କହେ ବର ବଂଶୀଧାରୀ ମାଧବ ଏତେକ—ବନ୍ଧୁ ରାଧିକାଦାସୀ ହେବା ମାଧବ ।

କୁଞ୍ଜବିହାର ହୋଇଣ ହେବ ଏ ପୁସ୍ତକ ।
କରିବେ ଗୋପିକା-ଭକ୍ତେ ହୃଦରେ ପଦକ ଯେ । ୨୫ ।

କବିଙ୍କ କୃତାର୍ଥ ଗତ ସୁଗତକାରକ ।
କଲେ ହିରଣ୍ୟ ବିନାଶ ରଖି ଭକ୍ତ ଟେକ ଯେ । ୨୬ ।

କହି କେ ପାରିବ ତାଙ୍କ ମହିମା ଅନେକ ।
କରି ନାହିଁ ନୈବକର୍ଣ୍ଣ—ଯିଏ ଯା ଅନ୍ତକ ଯେ । ୨୭ ।

କପର୍ଦ୍ଦୀ ଅଟନ୍ତି ଯାହା ଭାବରେ ଭୋଳକ ।
କୋଟିଏ ଗାଣ୍ଠରେ ଗାଣ୍ଠ ଗୋଟିକେ ମୁଁ ଏକ ଯେ । ୨୮ ।

କଲେ ବସ୍ତୁର ଗୋଲୋକ ବୈକୁଣ୍ଠେ ଅନେକ ।
କରିବା ଗୋପରେ ଲୀଳା ସଙ୍ଗତେ ଗୋପିଙ୍କ ଯେ । ୨୯ ।

କରି ଏମନ୍ତ ବସ୍ତୁର କୈବଲ୍ୟଦାୟକ ।
କଉତୁକେ ବୋଲାଇବା ସୁରଭିପାଳକ ଯେ । ୩୦ ।

କଦମ୍ବ ରହିଛି ଠାକ ଅନେକ କାଳକ ।
କରିବା ତା ତଳେ ଲୀଳା କେଳି କଉତୁକ ଯେ । ୩୧ ।

କରୁଣପକୁଳଥିର ବସ୍ତୁର ଏତକ ।
କଂସ ଆଦି ନାଶିବାକୁ ମାନସ ଉଚ୍ଛକ ଯେ । ୩୨ ।

କରି କଞ୍ଜ-ନେଇ ଅନୁକମ୍ପା କଣ୍ଠେତେକ ।
କହୁ କୃଷ୍ଣକର କୃଷ୍ଣକଥାକୁ ଅନେକ ଯେ । ୩୩ ।

---

୩୧ । ୨—ଲୀଳା କେଳି——ରସ କେଳି ।
୩୨ । ୧—କର ଏମନ୍ତ ବସ୍ତୁର କୈଣଠ-ଅନ୍ତକ ।

# ଦ୍ୱିତୀୟ ଛାନ୍ଦ



ରାଗ—ଆଷାଢ଼ଶୁକ୍ଳ

କର କୋବିଦେ ମନରେ ବିଚାର ।
କଳିକଳୁଷରୁ ହୋଇବ ପାର ।
କମଳନୟନ କଥାରେ ରସ ।
କଳାକର କରେ ଅନ୍ଧାର ନାଶ ।
    କରଇ ଯେମନ୍ତ ।
କୃଷ୍ଣକଥାରେ କଳୁଷ ତେମନ୍ତ । ୧ ।

କଂସପାଦହାରୀ ନ ସହି ମହୀ ।
କମଳସମ୍ଭବ ଆଗରେ ଯାଇ ।
କହିଲେ ମାୟାସୁରଭି ରୂପରେ ।
କର ଧାତା ସମ୍ଭାଳଣ ଚିତ୍ତରେ ।
    କୃତ୍ତିବାସଠାରେ ।
କହି ଦେବେ ଚଳ କ୍ଷୀରସିନ୍ଧୁରେ ୨ ।

କରି ନାଗର ନାଗରେ ଶୟନ ।
କର ତାଙ୍କ ଶ୍ରୀଛାମୁରେ ଜଣାଣ ।
କମଳକରେ ଧରି ଦର ଅରି ।
କରୁ ଉଶ୍ୱାସ ପୁଣ୍ୟଜନ ମାରି ।
    କର ସ୍ତୁତି ଯାଇ ।
କରିଅ ଜାତ କଂସନାଶ ପାଇଁ । ୩ ।

କାଶ୍ୟପୀବଚନେ କମଳାସନ ।
କୃତ୍ତିବାସ ଘେଇ ଅମରଗଣ ।
କଲେ ଗୁହାରି କ୍ଷୀରାବ୍ଧିତଟରେ ।
କୃପାନିଧି କୃପା କର ମହୀରେ ।
କଲେ ଅବହେଳା ।
କରୁଣାନିଧାନ ହସିଲା ବେଳା । ୪ ।

କାକୁସ୍ଥ ହୋଇ କରନ୍ତ ଜଣାଣ ।
କୃପାସରିତପତି ରଖ ପ୍ରାଣ ।
କୈବର୍ତ୍ତିତାରଣ କମଳାକାନ୍ତ ।
କରରେ ପତିତପାବନ-ବ୍ରତ ।
କେଉଁ ଶୋଭାବନ ।
କେତନ ଉଡ଼େ ପତିତପାବନ । ୫ ।

କଲେ ଅନେକ ପ୍ରକାରେ ଜଣାଣ ।
କର୍ଣ୍ଣରେ ଶୁଣିଲେ କୃପାନିଧାନ ।
କହିଲେ ଦେବଙ୍କ ଆଗେ ନିଦରେ ।
କରି ଦର ତେଜ୍ୟା ଥାଅ ନିଦରେ ।
କିଛି ନ ବିଗୁର ।
କରିବାକୁ ଘିସ ହେଲା ବିଗୁର । ୬ ।

କର୍ଣ୍ଣେ ଭଦ୍ରବାଣୀ ଶୁଣି ହୃଦରେ ।
କୃତ୍ତିବାସାଦି ଗଲେ ଯେଝାପୁରେ ।
କଲେ ବୈକୁଣ୍ଠେ ବିଜେ ଭଗବାନ ।
କର୍ଣ୍ଣପଥେ ଶୁଣ ସୁଜନଜନ ।

କଷ୍ଟ ଘେନେ ହର ।
କୋଟିଏ ସାରଙ୍ଗ ରୂପକୁ ଧର । ୭
କଲେ ବିଜୟେ ଦେବକୀ ଉଦର ।
କହିବାକୁ କିସ ଭଜନ ମୋର ।
କରେ କଉମୁଦୀ ସାରଙ୍ଗ ଧର ।
କଂସ ଉପରେ କ୍ରୋଧ ମନ କର ।
କଲେକ ବିଜୟେ ।
କରୁଣାସାଗର ଦେବାଧିରାୟେ । ୮ ।

କୃତ୍ତିବାସ ଶୁଣି ହେଲେ ହରଷ ।
କହିଲେ, ଯାଇ ସୁରଶ୍ରେଷ୍ଠ ପାଶ ।
କହ ଧାତା ସହସ୍ରାକ୍ଷ ଆଗରେ ।
କରୁ ବିଜେ ସୁରଗଣ ସଙ୍ଗରେ ।
କରରେ ଅଶନ ।
କିନ୍ନରଗଣ ସଙ୍ଗତରେ ଘେନ । ୯ ।

କଂସ ଅଟଇ ଜନ୍ମକୁଳ-ଫାସ ।
କରଇ ନ ପୁଣ ଗର୍ବ ବିନାଶ ।
କୁବଳୟ ଯେବେ କରେ ଅସୁର ।
କରୁ ଅଶନ ଘେନଣ ପ୍ରହାର ।
କଂସ ମସ୍ତକରେ ।
କଷ୍ଟ ସଂଶୟ ନ ରଖି ମନରେ । ୧୦ ।

---

୯ । ୪ । ୭ । ପଦରେ ବଜ୍ରବେଢ଼ । ଦନୁଜଗଣ ସଙ୍ଗେ ଯିବ ମୁଣ୍ଡ । ୧୦ । ୪ ପଦରେ ମତ ଘେନ କରୁ ପ୍ରହାର ।

କର୍ଣ୍ଣେ ଶୁଣି କୃତ୍ତିବାସବାଣୀକ ।
କହିଲେ ଧାତା ଶାର୍ଙ୍ଗପାଣିକ ।
କଲେ ବିଜୟେ ନିର୍ଜରବୃନ୍ଦଗଣ ।
କେ କହିବ ତାଙ୍କ ଆନନ୍ଦ ମନ ।
କରେ ଶସ୍ତ୍ର ଘେନି ।
କାରାଗୃହକୁ ଜଗିଲେ ସଇନି । ୧୧ ।

କୃଷ୍ଣଜନନୀଙ୍କ ପଦ୍ମଚରଣେ ।
କଲେ ପ୍ରଣାମ ଦେବେ ଜଣେ ଜଣେ ।
କରନ୍ତି ସ୍ତୁତି ହର ବେଦବର ।
କମଳନୟନ କମଳାବର ।
କରୁଣାସାଗର ।
କର କଷ୍ଟସରିତରୁ ଉଦ୍ଧାର । ୧୨ ।

କଲ ସତ୍ୟବାକ୍ୟେ ବଜେ ମଞ୍ଚକୁ ।
କଷ୍ଟରୁ ତାରିଲ ରତ୍ନଗର୍ଭାକୁ ।
କଂସକୁ ନାଶି କ୍ଷିତି ରକ୍ଷାକର ।
କରେ ଅଜ୍ଞାନଅନ୍ଧକାର ହର ।
କହି ବେଦବର ।
କରି ସ୍ତୁତି ଗଲେ ଯେ ଯାହା ପୁର । ୧୩ ।

ଗର୍ଭରେ ସମ୍ପୂର୍ଣ୍ଣ ଦଶମାସରେ ।
କୃଷ୍ଣ ଅଷ୍ଟମୀ ଭାଦ୍ରବ ଗନ୍ଧରେ ।
କଳାକର ଉଦେ ବୃଷରାଶିରେ ।
କରନ୍ତି ମଙ୍ଗଳ ସକଳ ସୁରେ ।

୧୪ । ୩—ଉଦ—ଓଢେ ।

କୃଷ୍ଣ ଜନ୍ମ ଗୃହଁ ।
କେଡ଼େ ଆନନ୍ଦ ହଉଅଛି ମହୀ । ୧୪ ।

କରନ୍ତି ଅମରେ ଦୁନ୍ଦୁଭି ବାଦ୍ୟ ।
କନ୍ନରଗଣେ ନୃତ୍ୟରେ ଆନନ୍ଦ
କୁସୁମ ବରଷନ୍ତି ସୁର ଆଳୀ ।
କର୍ପୂରାମୋଦେ ଗନ୍ଧବାହ ଚଳି ।
କହୁ ଶକ୍ୟ କାର ।
କୃଷ୍ଣ ହୋଇଲେ ଉଦରୁ ବାହାର । ୧୫ ।

କମ୍ବୁ ଶୋଭିବନ କମଳକରେ ।
କ୍ରୋଧ କରି ଯାତୁଧାନ ଉପରେ ।
କଣ୍ଠରେ ଶୋହେ କଉସ୍ତୁଭ ମଣି ।
କୋଟି ଶଶଧର ଶୋଭାକୁ ଜିଣି ।
କଟି ପୀତବାସ ।
କରେ ଷଣକାନ୍ତ—କାନ୍ତ ବନାଂଶ । ୧୬ ।

କର୍ଣ୍ଣେ କୁଣ୍ଡଳ କରେ କଙ୍କଣ ।
କମଳହୃଦରେ ଶ୍ରୀବତ୍ସଚିହ୍ନ ।
କୋଟି ମକରଧ୍ୱଜ କାନ୍ତି ଜିଣି ।
କରୁଣାସାଗର ମୁରଲୀପାଣି ।
କରି ବିଲୋକନ ।
କଲେ ବସୁଦେବ ସୁତବନ୍ଦନ । ୧୭ ।

---

୧୫ । ୨—କିନ୍ନରଗଣେ—କିନ୍ନରବୃନ୍ଦ

କର ଧ୍ୟାନେ ବସୁଦେବ ଗ୍ଳାନ ।
କୋଟିଏ ଧେନୁ କଲେ ଉତ୍ସର୍ଗଣ
କୃତ୍ତିବାସେ ପଞ୍ଚାମୃତ ଅର୍ଚ୍ଚନ ।
କୋଟିଏ ବିପ୍ରଙ୍କୁ ଦେବ ଭୋଜନ
କାଳୀ ରଖ ବାଳ ।
କଣ୍ଠେ ଲମ୍ବାଇବ ମନ୍ଦାରମାଳ । ୧୮ ।

କୃଷ୍ଣଙ୍କୁ ଗୃହିଁ ବୋଲେ ଯଦୁବୀର ।
କର୍ମ୍ମା ମୋ କୋଳେ ଜନମ ତୋହର ।
କରେ ପୁଣ୍ୟଜନ ନିବାର କର ।
କର ଯଶ ଉଦେ ଉର୍ବୀ ଉପର ।
କହିଲି ନିକର ।
କର ଶରୀରକୁ ରକ୍ଷା ତୋହର । ୧୯ ।

କୃଷ୍ଣ ଜନମ କର୍ଣ୍ଣରେ ଶୁଣିଣ ।
କାତରେ ଦେବେ ସ୍ତୁଇ ଶଙ୍ଖସେନ ।
କରେ ବୈଜୟନ୍ତୀ ମାଳା ଘେନିଣ ।
କର ମଥୁରାକୁ ଶୀଘ୍ରେ ଗମନ ।
କଣ୍ଠେ ମାଳା ଦେଇ
କୃଷ୍ଣଙ୍କୁ ଦଧି ଗୋପକୁ ଚଳାଇ । ୨୦ ।
କର୍ଣ୍ଣେ ସୁରବାଣୀ ଶୁଣି ଗନ୍ଧର୍ବ ।
କଲେ ମଥୁରାକୁ ଗମନ ବେଗ ।

କଂସ ଯାହାଙ୍କ ସମସ୍ତେ ନଚେତ ।
କାଳନିଦ୍ରାରେ ହୋଇଣ ମୋହିତ ।
କିଛି ନ ଜାଣନ୍ତି ।
କଲେ ଶବ୍ଦହୀନ ବଜେ ତତ୍ପତି । ୧୧ ।

କୃଷ୍ଣ କଣ୍ଠରେ ମାଳକୁ ଲମ୍ବାଇ ।
କହିଲେ ବସୁଦେବଙ୍କୁ ଚେତାଇ ।
କୁମାରୀ ଜାତ ହୋଇଛି ନନ୍ଦର ।
କନ୍ୟା ପ୍ରତିଦାନ କର ତହିଁର ।
କୃଷ୍ଣ ତହିଁ ଥୋଇ ।
କାତ୍ୟାୟନୀ ଆଣ ବହନ ହୋଇ । ୧୨ ।

କର୍ଣ୍ଣେ ବିଦଶବଚନ ଶୁଣିଣ ।
କପୋଲରେ କୃଷ୍ଣ ଶିରେ ଧଇଣ ।
କବାଟ ଫିଟିଛି ଛିଣ୍ଡି ଶାଙ୍କୋଳ ।
କଡ଼ାଏ ଗତ ଗତରେ ବଜ୍ରୁଳୀ ।
କେତେହେଁକ ଦୂରେ ।
କୁଳଯଦୁଶ୍ରେଷ୍ଠ ଭେଟେ ମାର୍ଗରେ । ୧୩ ।

କରବାଳ କରେ କରେ ଝମକ ।
କଲା ବସୁଦେବ ହୃଦ ଚମକ ।
କବନ ବନ୍ଧ ପରାଏ ହୋଇଲା ।
କିଛି ଧଇର୍ଯ୍ୟବନ୍ଧ ନ ରହିଲା ।
କୃଷ୍ଣଙ୍କୁ ଧାଇଣ ।
କଲା ଶଙ୍କା ରଖ ଆରତ ଦାଣ । ୧୪ ।

କର୍ଣ୍ଣେ ଶୁଣି ବସୁଦେବ ଗୁହାରି ।
କରୁଣାସାଗର ମୁରଲୀଧାରୀ ।
କରେ ଦର-ଅରି ଶଙ୍ଖ ଦେଖାଇ ।
କହନ୍ତ ଉଗ୍ରସେନଙ୍କୁ ଚେତାଇ ।
କପାଇଁ ଜଞ୍ଜାଳ ।
କରୁ ବାଟ ଛାଡ଼ି ବହନେ ଚଳ । ୨୫ ।

କରେ ମାଳ ଧରି କମଳାବର ।
କଣ୍ଠେ ଲମ୍ବାଇଲେ ଉଗ୍ରସେନର ।
କହିଲେ, ପିତାଙ୍କୁ ନର୍ଭଏ କର ।
କଲି ମଥୁରାରେ ନୃପତିବର ।
କର ବେଦ ଯୋଡ଼ି ।
କରେ ସ୍ତୁତି କୃଷ୍ଣଚରଣେ ପଡ଼ି । ୨୬ ।

କୃଷ୍ଣ ଉଗ୍ରସେନ କଥା ହେବାର ।
କଣ୍ଟୁ ନ ଜାଣେ ବସୁଦେବ ସାର ।
କହେ ଉଗ୍ରସେନ ବସୁଦେବଙ୍କୁ ।
କୃଷ୍ଣ ଘେନି ଚଳ ଗୋପପୁରକୁ ।
କହନ୍ତେ ମଧୁର ।
କୃଷ୍ଣଙ୍କୁ ଘେନି ଚଳିଲେ ସତ୍ୱର । ୨୭ ।

କାଳନ୍ଦୀ ନିକଟେ ମିଳିଲେ ଯାଇ ।
କୁଳଟାପ୍ରାୟେ କୂଳକୁ ବୁଡ଼ାଇ ।
କେତନ ମକରେ ଭୟ ଦେଖାଇ ।
କାହାକୁ ପାଶରେ ନ ଦଏ ଯାଇ ।

କରି ଘୋର ନାଦ ।
କଣ୍ଠେ ଶୁଣି ବସୁଦେବ ଭବନ୍ଦ । ୨୮ ।

କରି ସାହସ ଜାମ୍ବୁଙ୍କାବ ପରି ।
କୃଷ୍ଣ ଶିରେ ଘେନ ପଶିଲା ବାରି ।
କରୁଣାକର ଜାଣି ପିତାମନ ।
କାଳନ୍ଦୀକି ଆଜ୍ଞା ଦେଲେ ମୋହନ ।
କଣ୍ଠେ ଶୁଣି କରି ।
କଲା ବାଲବନ୍ଧ ବାଟରେ ବାରି । ୨୯ ।

କାଳନ୍ଦୀ ଜଣି ପ୍ରବେଶ ଗୋପରେ ।
କନ୍ୟା ପ୍ରତିଦାନ କଲେ ସତ୍ୱରେ ।
କୋଳେ ଯଶୋଦାଙ୍କ ଦେଲେ କୃଷ୍ଣଙ୍କୁ ।
କନ୍ୟାଘେନ ଚଳେ ମଧୁପୁରକୁ ।
କାରାଗୃହେ ମିଳ ।
କୁହା କୁହା ରାବ କଲେ ବଢୁଳ । ୩୦ ।

କର୍ଣ୍ଣପଥେ ଶୁଣି ରକ୍ଷକଶ୍ରେଣୀ ।
କହିଲେ କଂସକୁ ବାରତା ଆଣି ।
କଂସମାନସ ହେଲା ଅନ୍ତରାଳ ।
କରବାଳ କରେ ଧରି ତତ୍କାଳ ।
କରନ୍ତେ ଗମନ ।
କଟରେ ଆଖୁ-ଅରି ଊର୍ଦ୍ଧ୍ୱରେ ସ୍ୱନ । ୩୧ ।

---

୨୯।୨—ବଢଙ୍କେବେ ଚୋଟ ଦେଲ ବାରି ।

କଂସ କହଇ କ୍ରୋଧଭର ହୋଇ ।
କହେ ଦେବକୀମୁଖକୁ ଅନାଇ ।
କୋଳରୁ ବାଳକ ଦଅ ବଢ଼ାଇ ।
କହିବ ନାଶ ଆଉ ଭୟ ନାହିଁ ।
କହନ୍ତ ଭଗିନୀ ।
କୁମର ନୋହେ ଏ କୁମାରୀ ପୁଣି । ୩୨ ।

କଂସ କହଇ ଶୁଣ ମୋ ଉତ୍ତର ।
କୃଷ୍ଣର ମାୟା ଅଟେ ଅଗୋଚର ।
କେତେ ରୂପରେ ଜନମ ହୋଇଣ ।
କରିଛି ଅସୁରକୁଳ ନିଧନ ।
କହିଛନ୍ତି ମୁନି ।
କଲେ ହେଲା ବଞ୍ଚି ନୋହିବ ପୁଣି । ୩୩ ।

କହି କୁମାରୀକି କୋଳରୁ ଧରି ।
କଚାଡ଼େ ଶିଳାପଟରେ ଶୀଘ୍ର କରି ।
କାଳୀରୂପେ ଯେ ଜଗତ ସଂହାରି ।
କଂସ ବେଳେ ତାକୁ ହୋଏ କି ମାରି ।
କରି ଘୋର ନାଦ ।
କଉଣସି ହୃଦେ ପ୍ରହାରି ପାଦ । ୩୪ ।

କଲେ ଅନଙ୍ଗ ଭଜେ ହରପରେ ।
କଶୋଧି ହରିଛପୁ ମିଏକରେ ।
କରେ ଧରି ଅରି ପଙ୍କଜ ଶୋଭି ।
କରଟେ ଗଦା ଧରି ହେଲେ ଉଭି ।

କରି କୋପମନ ।
କହନ୍ତି ତୋ ଅରି ଗୋପେ ଜନମ । ୩୫ ।

କହି ଅନ୍ତର୍ଦ୍ଧାନ ହେଲେ ଭବାନୀ ।
କଂସ ବସୁର କଉଣପମଣି ।
କଢ଼ାଇ ଭଗ୍ନୀ ଭଉଣୀଙ୍କ ବନ୍ଦୀରୁ ।
କଂଠାଇ ଶାଙ୍କୋଳ ବେନପଦ୍ମରୁ ।
କରି ପଉରୁଷ ।
କରେ କୁବସ୍ତୁର ବାଲକନାଶ । ୩୬ ।

କଂସ ବିଜେ କଲା ମନ୍ଦିରେ ଯାଇ ।
କହେ ନିଶାଚରଗଣେ ବସାଇ ।
କହିଲେ ଶୂନ୍ୟରେ ଯାହା ଭବାନୀ ।
କାହା ବେଳେ ଆନ ନୁହଇ ପୁଣି ।
କହୁଣ ଆରତ ।
କୁସ୍ଥଳଚନ୍ଦ ପ୍ରାଏ ତ୍ରମେ ଶତ୍ରୁ । ୩୭ ।

କହେ ଅଷ୍ଟମନ୍ତ୍ର ବସାଇ ପାଶ ।
କରି ଗମନ ବାଲକ ବିନାଶ ।
କଂସ ଆଜ୍ଞା ଶିରେ ଧେନି ଦଇତେ ।
କଲେ ବାଳନାଶ-ଉପାୟ ଚିତ୍ତେ ।
କହିବଇଁ କେତେ ।
କହିବାକୁ ସେ ଅଗୋଚର ମୋତେ । ୩୮ ।

କମଳନୟନ କୃଷ୍ଣବହାଣୀ ।
କଲେ ନନ୍ଦପୁରେ ବିଜେ ଶ୍ରୀହରି ।

କରାଇଲେ ଜାତକର୍ମ ବିଧାନ ।
କଲେ ନନ୍ଦ ନାନା ଉତ୍ସବମାନ ।
କେତେ ଠାବେ ଗୀତ ।
କେତେ ଠାବରେ ହେଉଅଛି ନୃତ୍ୟ । ୩୯ ।

କଲେ ଗୃହକୃତ କର୍ମ ବିଧାନ ।
କେ କହୁ ନନ୍ଦ ଦେଲେ ଯେତେ ଦାନ ।
କଲେ ଅପୂଜାଦେବଙ୍କୁ ପୂଜନ ।
କୃତ୍ତିବାସେ ପଞ୍ଚାମୃତ ଅର୍ଚ୍ଚନ ।
କରାଇ ସ୍ନାନ ।
କାରାଗୃହ କରିଦେଲେ ମୁଞ୍ଚନ । ୪୦ ।

କରନ୍ତି ଗୃହକର୍ମ ଗୋପବାଳୀ ।
କନକଦୀପ ଚଉପାଖେ ଜାଳି ।
କରନ୍ତି ମଙ୍ଗଳରେ ହୁଳହୁଳି ।
କୁସୁମ ବରଷନ୍ତି ସୁରଆଳୀ ।
କରନ୍ତି ପିଞ୍ଚନ ।
କର୍ପୂର ସଙ୍ଗତେ ଗୋଳି ଚନ୍ଦନ । ୪୧ ।

କୁବେର ଅଳକାପୁର ବନ୍ଧାଣ ।
କନ୍ୟାସ୍ତମ୍ଭେ ଦୋଳି କଲେ ନିର୍ମାଣ ।
କୁମରଙ୍କୁ ତହିଁ ଶୁଆଇ ବାଳୀ ।
କରେ ମଞ୍ଚାଳି ଦେଉଛନ୍ତି ଦୋଳି ।
କାମପାଳ ତହିଁ ।
କରିଥିଲେ ବିଜେ ଆଗହୁଁ ଯାଇ । ୪୨ ।

କଲ୍କି ଧାତା ବେଦ ଭାଇଙ୍କ ସଙ୍ଗ ।
କରିବେ ଗୋଧେ କେଳି ନାନାରଙ୍ଗ ।
କଳିକଲୁଷ କରିବାକୁ ନାଶ ।
କଲ୍କି ଧାତା ବେଦ ତାଥ ପ୍ରକାଶ ।
   କୈବଲ୍ୟ ପଥରି ।
କରିବେ ଜଗତ କୃତାର୍ଥ ପରି । ୪୩ ।

କମଳଚରଣ ବାଳମୁକୁନ୍ଦ ।
କରଅରବିନ୍ଦ ମୁଖାରବିନ୍ଦ ।
କଳୁଷନାଶନେ କୁଆଁରଚ୍ଛନ୍ଦ ।
କାମୀଜନଙ୍କର ହୃଦକୁମୁଦ ।
   କରଇ ପ୍ରମୋଦ ।
ବନ୍ଦେ କୃଷ୍ଣ କର କଳୁଷ ଛେଦ । ୪୪ ।



# ତୃତୀୟ ଛାନ୍ଦ



## ରାଗ—ଚକ୍ରକେଳି

କୃଷ୍ଣଜନ୍ମ ଶୁଣି ଚନ୍ଦ୍ରବଦନୀ । କରୁଛନ୍ତି ନନ୍ଦ ଦୋଳିଶୁଅଣି । ୧ ।
କହେ ଅଳକ ଅଳି ପ୍ରିୟ କରି । କି ଉଚ୍ଛବ ବ୍ରଜରାଜ ନଗରୀ । ୨ ।
କର୍ଣ୍ଣେ ଶୁଣି ଆନନ୍ଦ ହେଲା ମନ । କଲି ତୁମ୍ଭ ସନ୍ନିଧିକୁ ଗମନ । ୩ ।
କଇଳାସରୁ ବିଜେ ତ୍ରିଅମ୍ବକ । କରିଆନନ ସଙ୍ଗତେ କାର୍ତ୍ତିକ । ୪ ।
କରିଅଛନ୍ତି ବିଜେ ସୁରଶ୍ରେଷ୍ଠ । କଳହପ୍ରିୟ ସଙ୍ଗତେ ବଶିଷ୍ଠ । ୫ ।
କେତେ ଉଚ୍ଛବେ ବିଜେ ବଜ୍ରଧାରୀ । କରନ୍ତି ନୃତ୍ୟ ଅଷ୍ଟ ଅପସରୀ ।୬।
କହୁ କଲ୍ୟାଣ ବଚନ ବହଳ । କର୍ଣ୍ଣେ ଶୁଣି ବାହାର ଗୋପୀକୁଳ ।୭।
କରୁଥିଲେ ଯେ କର୍ମ ନିକେତନେ । କର୍ମ ତେଜି ବାହାରିଲେ ବହନେ ।୮।
କାନ୍ତକୋଳ ବିଷ ହେଲା କାହାକୁ । କରିବାରୁ ଆଶ୍ରୟ ଉଚ୍ଛାହକୁ ।୯।
କେହୁ ଅନ୍ନ ଭୁଞ୍ଜେ ଦଧି ସଙ୍ଗର । କରେ କମଳ ନ ଦେଇ ବାହାର ।୧୦।
କେହୁ ବାଳକ ଅଙ୍କରୁ ବାହାର । କରି ଦେଇ ଗୋପୀ ହେଲା ବାହାର ॥
କଉଁ ବରଲକ୍ଷ୍ମୀଅଙ୍ଗୀ ଶରୀରେ । କରେ ବରବର୍ଣ୍ଣିନୀ ଲେପନରେ ।୧୨।
କର୍ଣ୍ଣେ ଶୁଣି ଦୋଳ ଯାତ୍ରା ହେବାର । କଲା ବରବର୍ଣ୍ଣିନୀକି ଅନ୍ତର ।୧୩।
କେହୁ ବିପରୀତରେ ଅଳଙ୍କାର । କଳେବରେ ଖଞ୍ଜି ହେଲା ବାହାର ।୧୪।
କର୍ଣ୍ଣେ ଶୁଣି ଦେବମଣି-ଅରାତି । କାଣ୍ଡ ବାଜଣ ଦୁଲୁକିଲା ଧୃତି । ୧୫ ।
କର୍ମାନ୍ତପାକୁ କରିଦେଲା ଦୂର । କଲା ନାଗରାଜ-ଗତି ବିସ୍ତାର । ୧୬ ।
କେତେ ରୁଚେ କାମିନୀଏ ବାହାର । କହିବାକୁ ଶକ୍ତ ଅଛି କାହାର ।୧୭।
କଳାଶମ୍ବର ଅଙ୍ଗେ କ୍ଷଣକାନ୍ତ । କରେ ଝଟକ ଚଉଦଗେ କାନ୍ତ ।୧୮।

କାନ୍ତି କନକ-ବଲ୍ଲରୀ ସମାନ । କୃଷ୍ଣନର୍ମାଣ ଲାଗ କମ୍ପମାନ । ୧୯ ।
କାହା ସାରଗ ସାରଙ୍ଗ ବାହାର । କବ କରଇ ମନରେ ବିଗ୍ଭର ।୨୦।
କବା ସାରଙ୍ଗ ଏ ଦେବତା ଉରୁ । କମେ ଗଳ ପଡ଼ିଲେ କ କଲରୁ ।୨୧।
କାନ୍ତାକଦମ୍ବ ଏକମେଳ ହୋଇ । କର ଦର୍ଶନ ରାଧା ଆଗେ କହ ।୨୨।
କୁନ୍ଦଲତା ମନ୍ଦ ମନ୍ଦ ହସିଣ । କର ଯୋଡ଼ କରୁଛନ୍ତି ଜଣାଣ ।୨୩।
କର୍ଣ୍ଣେ ଶୁଣିଲ ଅପୂର୍ବ ଶିବକୁ । କଲ ଗମନ ତୁମ୍ଭ ସନ୍ନିଧିକୁ । ୨୪ ।
କୃଷ୍ଣ ଜନ୍ମ ହେଲେ ନନ୍ଦମନ୍ଦିର । କରୁଅଛନ୍ତି ଶୁଆଣି ଦୋଳର ।୨୫।
କର୍ଣ୍ଣେ ଶୁଣି ଠାକୁରାଣୀ ଆନନ୍ଦ । କଣ୍ଠକୁଣ୍ଠିତେ ହେଲେ ଗଦଗଦ ।୨୬।
କଳେବର କଦମ୍ବ କୋରକିତ । କଲ ବାମଅଙ୍ଗ ନୃତ୍ୟ ତୁରିତ ।୨୭।
କହ ପ୍ରେମା ଆଗରେ ପ୍ରେମଗିର । କର ଅନକୂଳ ବାଧି ସମ୍ଭାର ।୨୮।
କର୍ଣ୍ଣେ ଶୁଣି ସଖୀଗଣ ସତ୍ୱର । କର ଆଣିଦେଲେ ରାଧା ଗ୍ରୁମୁର ।୨୯।
କଲ୍ୟାଣ ଥାଳ ଘେରେ ସୁଧାଚୂନ । କରେ ଘେନ ବାହାରିଲେ ବହନ ।୩୦।
କନ୍ୟା ଗୃହ ସମୂହ ଘେନ ସଙ୍ଗେ ।କଲେ ବଜେ-ମଙ୍ଗଳ ହେଲେ ଆଗେ ।।
କରେ ଦଧି ଘେନ ଆସେ ଆଭୀରୀ । କହେ ମଚ୍ଛଦାସୀ ମଚ୍ଛ ବିସ୍ତାରି ।୩୨।
କମ୍ବୁ ଶମ୍ଭୁଆଳେ ଶୁଭେ ସୁସ୍ୱର । କରେ ମନ୍ଦ ଗନ୍ଧବହ ପ୍ରଗ୍ଭର ।୩୩।
କୁମ୍ଭୀ-କୁମ୍ଭସ୍ତନା କୁମ୍ଭେ ଜୀବନ । କର ପୂର୍ଣ୍ଣ ବାମେ ଆସେ ବହନ ।୩୪।
କାଖେ ସାମବେଦ ଘେନ ବ୍ରାହ୍ମଣ । କରେ ଦକ୍ଷିଣ ଦିଗକୁ ଗମନ ।୩୫।
କୁଳନକୁଳକୁ ଗୃହିଁ ରାଧିକା । କହୁଛନ୍ତି ଏ ମଙ୍ଗଳ ଦୂତକା । ୩୬ ।
କାନ୍ତାକଦମ୍ବ ଏକମେଳ ହୋଇ । କଲେ ଦର୍ଶନ ପାଦତଳେ ଯାଇ ।୩୭।
କାହା ଅଙ୍ଗ ପୁଲକିତ ହୋଇଲା । କେହୁ ଅନାଇ ଚକିତେ ରହିଲା ।୩୮।
କର ମଙ୍ଗଳ ଜୟ ହୁଳହୁଳ । କରେ ଅର୍ଘ୍ୟ ଦେଲେ ଭାନୁଦୁଲାଳୀ ।୩୯।
କନ୍ୟା ଦୋଳଗୃହପାଶେ ରହିଲେ । କରେ ମଙ୍ଗଳ ଯେଝାବଧି କଲେ ।।

---

୩୩ । ୨—ପ୍ରଗ୍ଭର—ସଞ୍ଚାର । ୩୯ । ୧—ମଙ୍ଗଳ ଜୟ—ଜୟ ମଙ୍ଗଳ ।

କଲେ ପୂର୍ବେ ବିଜୟେ ବ୍ରଜାଙ୍ଗନା । କୁନ୍ଦଦନ୍ତୀ ପଶ୍ଚିମେ ମୁନିକନ୍ୟା ।୪୧।
କରୀଗମନୀ ଦେବଙ୍କ ନନ୍ଦିନୀ । କଲେ ଉତ୍ତରେ ବିଜୟେ କାମିନୀ ।୪୨।
କଳାକରବଦନୀ ବେଦକନ୍ୟା । କଲେ ଦକ୍ଷିଣେ ବିଜେ ବରାଙ୍ଗନା ॥
କୃଷ୍ଣପାରୁଶେ ବିଜୟେ ଲଳିତା । କରେ ନାଗବଲ୍ଲୀ ଘେନ ଶୋଭିତା ॥
କରେ ଆଦରଶକୁ ଚନ୍ଦ୍ର ଆଭା । କୃଷ୍ଣ ଐଶାନ୍ୟ ପାଶେ ଘେନ ଉଭା ।୪୫।
କୁସୁମମାଳ ବିଶାଖା କରରେ । କରେ ପୁଷ୍ପବୃଷ୍ଟି ଅଗ୍ନି କୋଣରେ ।୪୬।
କଲ୍ୟାଣ କୁଟୁମ୍ବ କମଳ ପୂରାଇ । କୃଷ୍ଣସେବାରେ ରଙ୍ଗଦେବୀ ରହି ।୪୭।
କଳାକରବଦନୀ ରବାବ ଧରି । କରେ କିନ୍ନରୀ ଗାୟନ ଚତୁରୀ । ୪୮ ।
କରେ ବୀଣା ଘେନ ବୀଣାବଚନୀ । କର ସପ୍ତସ୍ୱରେ ଗୀତେ ସଜନୀ ।୪୯।
କରେ ଅନଙ୍ଗମଞ୍ଜରୀ ମଞ୍ଜିରୀ । କାଳିନ୍ଦୀ ବାଦନ କରେ ଖଞ୍ଜରୀ ।୫୦।
କରେ ମୃଦୁଅଙ୍ଗୀ ଧରି ମୃଦଙ୍ଗ । କର ଅଙ୍ଗୁଷ୍ଠି ଗୀତେ ରଙ୍ଗ ରଙ୍ଗ ।୫୧।
କରେ ଘନକେଶୀ ଘନ ବାଦନ । କଳକଣ୍ଠ-କଣ୍ଠୀ କରେ ଗାୟନ ।୫୨।
କରୁଛନ୍ତି ନୃତ୍ୟ ମେଧା ସୁମେଧା । କରେ ଘନଚନ୍ଦନ ସିଞ୍ଚେ ବୃନ୍ଦା ।୫୩।
କାମକଳା ପଦ୍ମଲଙ୍କା ଧରଣ । କରେ ଜୟଦେବକୃତ୍ୟ ଗାୟନ ।୫୪।
କରେ ପ୍ରକୀର୍ଣ୍ଣକ ଧରି ଶ୍ରୀମତୀ । କୃଷ୍ଣ ଅଙ୍ଗେ ପ୍ରେମରଙ୍ଗେ ଢାଳନ୍ତି ।୫୫।
କରି ଜୟ ମଙ୍ଗଳ ହୁଳହୁଳି । କରେ ଦୋଳି ମଞ୍ଚାଳନ୍ତି ଗୁଆଳି ।୫୬।
କର ଚରଣ ହଲାଇ ରୋଦନ । କଲେ ବାଳମୁକୁନ୍ଦ ଭଗବାନ ।୫୭।
କୁହୁଁ କୁହୁଁ ବାଣୀ ଶୁଭେ ଶବଦ । କଳାକରମୁଖୀ ଶୁଣି ପ୍ରମୋଦ ।୫୮।
କହ ସେ ଭାବ କେ କରିବ ଶେଷ । କରି ନାହାନ୍ତି ଶେଷ କରି ଶେଷ ॥
କୃଷ୍ଣଶୋଭା ନୟନରେ ରଖିଣ । କଳାକରମୁଖୀ କଲେ ଗମନ ।୬୦।
କୃତ୍ତିବାସାଦି ଗଲେ ଯେଝା ସ୍ଥାନ । କଲା ସ୍ତୁତିକ କବି ନିବେଦନ ।୬୧।

---

୪୮ । ୨—ସ୍ୱତୁରୀ—ଚତୁରୀ ।
୫୯ । ୨—କରି ନାହାନ୍ତି—କହି ନାହାଁନ୍ତି ।

## ଦ୍ଵିବର୍ଣ୍ଣ ପ୍ରାନ୍ତାନୁପ୍ରାସ

କଲେ ଅଜନଜ କଷ୍ଟ ବାରଣ । କଲେ ବାରଣ କଷ୍ଟ ନିବାରଣ ।୭୨।
କାନନରେ ଯେ ଗିଳଲେ ଦହନ । କରାଇଲେ ଭସ୍ମାସୁର ଦହନ ।୭୩।
କଲେ ତ୍ରପା ନାଶ ଦେଇ ବସନ । କରାଇଲେ ବ୍ରୀଡ଼ା ନେଇ ବସନ ।୭୪।
କଲେ ବଳିକି ଯେ ଅଧୋଭୁବନ । କଲେ ରତ୍ନାକର ମଧ୍ୟେ ଭୁବନ ।୭୫।
କରାଇଲେ ଯେ ଶିବେ ବିଷପାନ । କଲେ ପୂତନାସ୍ତନୁ ବିଷ ପାନ ।୭୬।
କରେ ଟେକିଲେ ଗୋବର୍ଦ୍ଧନ ଗିରି । କଲେ ଅବଧ୍ୟ ବନ୍ଧନକୁ ଗିରି ।୭୭।
କରେ ଭାଙ୍ଗିଲେ ଯାମଳାର୍ଜ୍ଜୁନ । କଷ୍ଟେ ସାରଥି ରଥରେ ଅର୍ଜ୍ଜୁନ ।୭୮।
କଲେ ଭକ୍ତ ଲାଗି ନାଶ ହିରଣ୍ୟ । କରାଉଛରେ ଯେହୁ ଦେଲେ ହିରଣ୍ୟ ॥
କାଳଫଣାରେ ଯେ କଲେ ତାଣ୍ଡବ । କଲେ ଦଧିଜକୁ ପାଇଁ ତାଣ୍ଡବ ॥
କାମୀଲୋକଙ୍କର ହରିଚନ୍ଦନ । କଲେ କୁବ୍ଜ ଉଜ ଯେବେ ଚନ୍ଦନ ।୭୯।
କଲେ ତାରଣ ଯେ ନୃପକଦମ୍ବ । କଲେ ରାସ ଯେବେ ସଖୀକଦମ୍ବ ।୮୨।
କରେ କରି ଦ୍ଵିଜ କର୍ପୂରପାଳରେ । କଲେ ବିନାଶ ମାରି କପାଳରେ ।୮୩।
କୃଷ୍ଣକଥାକୁ ଯେ କଥା ପ୍ରସଙ୍ଗ । କଲେ କାଳ ନ ଛୁଏଁ ତାର ଅଙ୍ଗ ।୮୪।
କରେ ଶୋଭିତ ଯାର ଦର-ଅରି । କୃଷ୍ଣକରକୁ ସେ ନେବେ ଉଦ୍ଧରି ।୮୫।



---

୭୫ । ୨—ବଳଙ୍କୁ ସେ କରି ଅଧୋଭୁବନ । ୭୮।୨—ଦଧିଚକ୍ର ପାଇଁ—ଦଧି-ମଥ ପାଇଁ

# ଚତୁର୍ଥ ଛାନ୍ଦ



ରାଗ—ରସକେଦାର

କର୍ଣ୍ଣେ ଶୁଣ ହେ ଧୀବନ୍ତମାନେ ।
କୃଷ୍ଣ ଦୋଳ ଯାତ୍ରା କେତେଦିନେ ।
ନ୍ଦ ରୁକ୍ମିଣୀ ପଢନ୍ତି ଅନୁକୂଳ ।
କଲା ଗୋପେ କଂସବୋଲେ ଧନେ ସେ । କରମେଳ ।
କେତେ ଅମଙ୍ଗଳ ଆସି ହେଲେ ମେଳ । ୧ ।

କୃଷ୍ଣ ବୃଷଦଂଶ ତା ଆଗରେ ।
କରେ ମୁଖଧୂନି ଅନଙ୍ଗରେ ।
କାକୋଦର ଗତି କରେ ଶୀଘ୍ର ଗତି ।
କମ୍ପି ଦକ୍ଷ ଅଙ୍ଗ ନୃତ୍ୟ କରେ ସେ । କି ବିଗ୍ରହ ।
କବ ବିଗ୍ରହରେ ରାକ୍ଷସୀ ପିବ ମାର । ୨ ।

କୂଟେ କାଳକୂଟ କି ଯତନେ ।
କ୍ରୋଧେ ଦେଉଅଛନ୍ତି ବେନି ଥନେ ।
କରେ କନ୍ଥା-ଗତି କି ରଙ୍ଗରେ ଗତି ।
କଟାକ୍ଷେ ମୋହି ହୁଅନ୍ତି ଜନେ ସେ । କପଟରେ ।
କରେ ଗୋପଦାଣ୍ଡେ ବଜେ ଧୀରେ ଧୀରେ । ୩ ।

---

୨ । ୪—୨ ଚରଣ—୨ ଅକ୍ଷର ।

କରରେ ଅମୃତ ଲଡ଼ୁ ଥାଳ ।
କହେ ଅମୃତ ବାଣୀକ ତାଳ ।
କାମଧନୁଜତା ଦଶଇ ଭୂଲତା ।
କହେ ନଗ୍ନଇ ଶମ୍ବର-ବାଳୀ ସେ । କ ଭଙ୍ଗୀରେ ।
ନରେ ଯୋଗୀ-ଯୋଗଭଙ୍ଗ ଗୃହାଣୀରେ । ୪ ।

କଳା କୁଞ୍ଚିତ କୁନ୍ତଳ ଶୋଭା ।
କରନ୍ତି ସୁମନେ କେଡ଼େ ଆଭା ।
କ ରଙ୍ଗେ ଗର୍ବକ ବେଢ଼ ଦେଇଅଛି ।
କରେ ରଜତ ଭର୍ତ୍ସନ ପ୍ରଭା ସେ । କୁନ୍ଦମାଳ ।
କବରୀରେ ପ୍ରକୋଷ୍ଠ କରନ୍ତି ବାଳୀ । ୫ ।

କର ନାଗବଲ୍ଲୀ-ରଙ୍ଗେ ରଙ୍ଗ ।
କରନ୍ତି ଅଧର କ ସୁରଙ୍ଗ ।
କପୋଳଭ୍ରମରୀ ମନ ନିଏ ହରି ।
କର ସିନ୍ଦୂରବନ୍ଦୁକୁ ସଙ୍ଗ ସେ । କ ମଧୁର ।
କହେ ବଚନ ଗେଲକ୍ଷ ମନୋହର । ୬ ।

କୁନ୍ଦନେ ଗୋପୀବଲ୍ଲଭ ଖଞ୍ଜି ।
କରିଅଛି ମାଳ ମନ-ରଞ୍ଜୀ ।
କଟାକ୍ଷ କଜ୍ଜଳ ଦଶେ କ ମଞ୍ଜୁଳ ।
କଟକ ଯାଏ ଲଗିଛି ଲାଞ୍ଜି ସେ । କଣ୍ଠମଣି ।
କର ନାସାବସଣୀ ରମଣୀ-ମଣି । ୭ ।

କର୍ଣ୍ଣେ ତାଟଙ୍କ ଭ୍ରମରୀ ଦେଖି ।
କହନ୍ତ ଅଶ୍ୱିନୀ ଅଶ୍ୱିନୀକ ।
କଏ ବାରନାରୀ ଅମର ନଗରୀ ।

କରନ୍ତ ଗମନ ହରି ଦେଖି ସେ । କାନ୍ତାମଣି ।
କିବା ରମ୍ଭା ମେନକା ହେବେ ଏ ପୁଣି । ୮ ।

କେ ବୋଲଇ ଏହୁ ତିଲୋତ୍ତମା ।
କଉଁ ନାରୀ ହେବ ଏ ଉପମା ।
କେ ବୋଲେ ଏମନ୍ତ ନୁହଇ ସଙ୍ଗାତ ।
କପିଳାସରୁ ଆସନ୍ତ ଉମା ସେ । କହ କହ ।
କାନ୍ତାକଦମ୍ବ ଗୃଳନ୍ତ ରହ ରହ । ୯ ।

ଏକେ ବୋଲେ ସଜନି ଶୁଣ ବାରେ ।
କୃଷ୍ଣ ଜନ୍ମ ହେଲେ ନନ୍ଦ ଘରେ ।
କର୍ଣ୍ଣପୁଟେ ଶୁଣି କ୍ଷୀରୋଦ-ନନ୍ଦିନୀ ।
କରନ୍ତ ଗମନ ଦେଖିବାକୁ ସେ । କିବା ରତି ।
କିବା କୃଷ୍ଣଙ୍କ ଭାବିନୀ ସତ୍ୟବତୀ । ୧୦ ।

କେ ବୋଲଇ ଏହୁ ରୂପରାଶି ।
କଉଁ ବିଧି ଗଢ଼ିଥିଲା ବସି ।
କଟାକ୍ଷେ ସ୍ତମ୍ଭନ ମୋହନ ରଖିଣ ।
କହେ ମାୟାନାରୀ ମନେ ହସି ଗୋ । କହ କହ ।
କାହା ଗୃହେ ଅଛୁ ସଖୀ ବାଳ ପୁଅ । ୧୧ ।

କହନ୍ତ ସଜନୀ ପ୍ରିୟ କରି ।
କର ବିଜେ ବ୍ରଜରାଜପୁରୀ ।
କୃଷ୍ଣଙ୍କୁ ଦର୍ଶନ କଲେ ଏ ନୟନ ।
କଳିକଲ୍ମଷରୁ ଯିବ ତରି ସେ । କହ କହ ।
କଲେ ସଖୀବୃନ୍ଦ ନନ୍ଦପୁରେ ନେଇ । ୧୨ ।

କୃଷ୍ଣଙ୍କୁ ଅନାଇ ହସ ହସ ।
କରେ ଯଶୋଦାଙ୍କୁ ପରିହାସ ।
କି ଭାଗ୍ୟ ଗୋ ମିତ ଦେଖିଲି ସଙ୍ଗାତ ।
କଲ ବୃଦ୍ଧକାଳେ ପୁତ୍ର ଜାତ ଗୋ । କହ ପୁଣ ।
କରାଇବ ମୁଁ ଏହାଙ୍କୁ କ୍ଷୀରପାନ । ୧୩ ।

କଉତୁକ କଥା ଶୁଣି ଭାରୁ ।
କୋଳେ ଦେଲେ ଆଣି ମହାମେରୁ ।
କାଣୀକି ଅଣୀ ଦଥାଇବା କର୍ମକୁ ।
କରିବେ ଭୋଗ ଶମ୍ଭୁ ଗଠାରୁ ସେ । କି ଉଦାର ।
କୋଟି ବ୍ରହ୍ମାଣ୍ଡ ଯାହାର ଖେଳଘର । ୧୪ ।

କୋଳେ ଧରି ନାରୀ ଭାବଗ୍ରାହୀ ।
କଳା ବଦନେ ସାରଙ୍ଗ ଦେଇ ।
କରୁ କରୁ କ୍ଷୀର ପାନ ଭଗବାନ ।
କଞ୍ଚେ ପରାଣ ଦେଲେ ପିଇ ସେ । କରି ରଡ଼ି ।
କଉଣସୀ ସାରଙ୍ଗେ ପଡ଼ିଲି ଝଡ଼ି । ୧୫ ।

କାୟା ନିଜ ରୂପ ପ୍ରକାଶିଲା ।
କୃଷ୍ଣ ଅଙ୍ଗରୁ ମୁକ୍ତ ହେଲା ।
କୋପ କୃପା ଯାର ଏକଇ ସମାନ ।
କୈବଲ୍ୟରେ ଯାଇ ବିଶ୍ରାମିଲା ସେ । କରି ଅଗ ।
କଲେ ନନ୍ଦ ଯଶୋବନ୍ତୀ ଯାହା ଭୋଗ । ୧୬ ।

କୁଚଯରୁ ଆଣି ବନମାଳୀ ।
କଲେ ବୃଦ୍ଧ ଗୋପୀ ନିଉଛାଳି ।
କପିଳାଙ୍କ ଖିରେ, କୃତ୍ତିବାସଶରେ ।

କରାଇଲେ ଅଭିଷେକ ବାଳୀ ସେ । କର ଦାନ ।
କୋଟି ବିପ୍ରଙ୍କୁ ଭୁଞ୍ଜାଇ ମିଷ୍ଟ ଅନ୍ନ । ୧୭ ।

କଉତୁକରେ ଗୋପାଳେ ରୁଣ୍ଡ ।
କଲେ ଅସୁରଙ୍କ ଖଣ୍ଡ ଖଣ୍ଡ ।
କରନ୍ତେ ଦହନ ଅମୋଦର ଘନ ।
କରେ ଘନଲୋକ ସନ୍ନିଧାନ ସେ । କେତେ ଦନେ ।
କଲେ ଶକଟା ବିନାଶ ଦୋଳ ସ୍ଥାନେ । ୧୮ ।

କୋପେ ତୃଣାବର୍ତ୍ତ ମାୟାରୂପେ ।
କଂସବୋଲେ ଗୋପେ ମିଳେ ଗୋପେ ।
କପଟକୁ କୃଷ୍ଣ କଲେ ନନ୍ଦଗୃହ ।
କଣ୍ଠ ଚପି ପ୍ରାଣ ନେଲେ କୋପେ ସେ । କେତେ ଦନେ ।
କଲେ ବନମାଳୀ ଶ୍ରେଷ୍ଠ ବିଜେ ଦନେ । ୧୯ ।

କର୍ଣ୍ଣେ ରାମକୃଷ୍ଣ ନାମ ଦେଲେ ।
କବିଙ୍କି କୃତାର୍ଥ କରାଇଲେ ।
କୃଷ୍ଣ ଶବଦ ଶବ୍ଦଗ୍ରହେ ପଶନ୍ତେ ।
କେତେ ଦୁରନ୍ତ ବିନାଶ ହେଲେ ସେ । କେତେରୂପେ ।
କେତେ ବ୍ରାହ୍ମଣେ ମିଳଲେ ଆସି ଗୋପେ । ୨୦ ।

କେତେ ବନ୍ଦୀ କଏବାର କଲେ ।
କେତେ ବନ୍ଦୀଙ୍କୁ ଉଦ୍ଧାର କଲେ ।
କେତେ ହେ ଅପୂଜା ଦେବତାଙ୍କୁ ପୂଜା ।
କ ସନ୍ତୋଷେ ନନ୍ଦ କରାଇଲେ ସେ । କେତେ ଧନ ।
କେତେ ଦରିଦ୍ର ଲୋକଙ୍କୁ କଲେ ଦାନ । ୨୧ ।

କୃଷ୍ଣ ଦର୍ଶନେ ଲାଳସୀ ହୋଇ ।
କଲେ ପୂର୍ଣ୍ଣମାସୀ ବିଜେ ତହିଁ ।
କଣ୍ଠିକରେ କଣ୍ଠି ଲଙ୍କା ସହିତରେ ।
କଲେ ବ୍ରଜଦାଣ୍ଡେ ବିଜେ ଯାଇ ସେ । କୁମରଙ୍କୁ ।
କରୁଛନ୍ତି ଆଶୀର୍ବାଦ ଦେଖି ତାଙ୍କୁ । ୧୨ ।

କର୍ଣ୍ଣେ ତାଙ୍କ ଆଗମନ ଶୁଣି ।
କରେ ଯଶୋଦା କମଳ ଘେନି ।
କରି ମାନ୍ୟ ଧର୍ମି ଯେ ବିଧି ବିଧାନ ।
କର ଧରି ଗୃହେ ନେଲେ ପୁଣି ସେ । କହେ ହସି
କଲେ ସୁକଲ୍ୟାଣ ଦେବୀ କ୍ଷେମ ଭାଷି । ୧୩ ।

କୃଷ୍ଣଶୟନବାସରେ ନେଇ ।
କାର୍ପୁଣ୍ୟ ହୋଇ ସକଳ କହି ।
କଲା ଆଗମନ ସୁହାଣି ବିଧାନ ।
କହିଲେ ତାଙ୍କ କର୍ଣ୍ଣରେ ଯାଇ ସେ । କାକୁସ୍ୱରେ ।
କରେ ବାଳମୁକୁନ୍ଦଙ୍କୁ ଦେଲେ ଧୀରେ । ୧୪ ।

କଲେ ସୁକଲ୍ୟାଣ ପୂର୍ଣ୍ଣମାସୀ ।
କରିବେ ଶିଷ୍ଟ ଖଣ୍ଡଣ କାଶୀ ।
କଷ୍ଟ ମନେ ଚିନ୍ତା ନ କର ଗୋ ମାତା !
କୋଳେ ଯଶୋଦାଙ୍କ ଦେଲେ ହସି ସେ । କହ୍ନୁ ନନ୍ଦ ।
କଲେ ପୂର୍ଣ୍ଣମାସୀଙ୍କି କେତେ ଆନନ୍ଦ । ୧୫ ।

କୃଷ୍ଣନାମ ଶ୍ରୁତିଯୁଗେ ପଶି ।
କେ କଉଁ ଭକତିମାର୍ଗେ ରସି ।
କଲେ ନିବେଦନ କେ ସ୍ତୁତି ବନ୍ଦନ ।

କେ ପୂଜାମାର୍ଗରେ ମନ ରସି ସେ । କଲେ ଧ୍ୟାନ ।
କେହୁ ନାମକୀର୍ତ୍ତନରେ ଦେଲେ ମନ । ୨୬ ।

କେତେ କାଳରୁ ଦୁରିତ ତହିଁ ।
କରି ନିକେତନ ଥିଲେ ରହି ।
କରଅରବିନ୍ଦ ହଲାଇ ମୁକୁନ୍ଦ ।
କାନ୍ଦନ୍ତେ ରହିଲେ କାହିଁ କାହିଁ ହେ । କୋବିଦେ ହେ ।
କରି ବାଳମୁକୁନ୍ଦଙ୍କୁ ବିଦେଭ ଲଏ । ୨୭ ।

କଲେ ହରି ଶଲ୍ୟା ହରିମଣି ।
କଲେ ହରି ହରିକୁଳମଣି ।
କଲେ ହରିମଣି କଣ୍ଠଦେଶେ ଆଣି ।
କି କରି ପାରିବ ଜନ୍ତୁମଣି ସେ । କାଳ ଜାଣି ।
କଇବଲ୍ୟ ଇଷିତେ ଲଭିବ ପୁଣି । ୨୮ ।

କରେ ଧରି ଧର ଧରାଧର ।
କଲେ ପବିଧର ଗର୍ବ ଚୂର ।
କମଳ ପତ୍ରର ପାଷାଣ ଉପର ।
କଲେ ଦେଇ ନରକଳେବର ସେ । କମ୍ବୁଧର ।
କମ୍ବୁ କଣ୍ଠକରେ ଅଟେ ସାର ଘର । ୨୯ ।

କହେ ଧ୍ୟାଇ ଦାସ କୃଷ୍ଣକର ।
କର ମୁଖ ଅରବିନ୍ଦ ସାର ।
କରରେ ସେହିତ କପଟ ସେହିତ ।
କଲେ ହିତ ଯେହୁ ସେହିତର ସେ । କାନ୍ତାବୋଲେ ।
କୃଷ୍ଣ ଶରଣ ସେ କଞ୍ଜପାଦତଳେ । ୩୦ ।

# ପଞ୍ଚମ ଛାନ୍ଦ



ରାଗ—କଳହଂସକେଦାର

କୋଳବେ, ଆହେ ବାଳମୁକୁନ୍ଦ ପାଦ ଧ୍ୟାଇ । ଘୋଷା ।
କଞ୍ଜସମ୍ଭବ ଭବ୍ୟ ଯହିଁ ଚରଣଭାବ । କରୁଅଛନ୍ତି ଚିତ୍ତେ ଧ୍ୟାଇ ।
କଳିକଲ୍ମଷ ଯିବ କୈବଲ୍ୟଭୋଗ ହେବ । କାଳଦଣ୍ଡକୁ ଭୟ ନାହିଁ ।୧।
କୃତାର୍ଥ ହେବ ଜନ୍ମ ମୁକ୍ତିରେ ନିକେତନ । କଣ୍ଠରେ କୃଷ୍ଣକଥା ଗାଇ ।
କପର୍ଦ୍ଦୀଧାରୀ ହରି ଯାନ୍ତୁ ଯିବାଏ ହରି । କି ରଙ୍ଗେ ବଢ଼ନ୍ତି କହ୍ନାଇ ।୨।
କଞ୍ଜପାଦେ ମଞ୍ଜୀର, ଭକ୍ତଜନପଞ୍ଜର । କି ଶୋଭାବନ୍ତି ବିରାଜଇ ।
କରି ମନକୁ ଫଳାଶନ ସୁଜନ ଜନ । କମଳପାଦେ ଥୁଅ ନେଇ ।୩।
କଟିକିଙ୍କିଣୀ କିଣି ମନ ନିଅଇ କିଣି । କେତେ ମାଧୁର୍ଯ୍ୟରେ ବାଜଇ ।
କୋଟିଏ ପଞ୍ଚହରଗର୍ବକୁ ଖର୍ବ କରି । କି ଶୋଭା ଶ୍ରୀମୁଖ ଦିଶଇ ।୪।
କଳାକରରେ ଚିହ୍ନ ଶ୍ରୀମୁଖେ ଚିହ୍ନ, ହୀନ । କାନ୍ତିକି ସମାନ ନୁହଇ ।
କରି ତାଙ୍କର କ୍ଷୟ ଏ ଅଟନ୍ତି ଅକ୍ଷୟ । କଳାକର ଯେ ପୂର୍ଣ୍ଣ ଏହି ।୫।
କେତେ ଅମଳ କଳାକମଳ ମାଳମାଳ । କଳେବରକୁ ସମ ନାହିଁ ।
କନ୍ଦର୍ପ ମନ ମୋହନ ନୁହଇ ବିସର୍ଜନ । କାମମାଦକ ସ୍ଥଳ ଏହି । ୬ ।
କୁଙ୍କୁମରେ ଶରୀର ଦିଶଇ ମନୋହର । କଜ୍ଜ୍ୱଳେ ନେତ୍ର ଶୋଭା ପାଇ ।
କଙ୍କଣ ବେନିକର, ଦିଶେ କି ଶୋଭାକର । କଞ୍ଚନଛବି ବିନାଶଇ ।୭।
କି ଶୋଭା କଳା କଳେବର ଧୂଳିଧୂସର । କୋଳେ ଧରନ୍ତି ମାଏ ନେଇ ।
କର୍ଦ୍ଦମପଙ୍କେ ହରି ଖେଳନ୍ତି ଲୀଳା କରି । କରି ହୃଦେ ମାରନ୍ତି ଧାଇଁ ।୮।
କଉତୁକରେ ଗୋପୀ ହସନ୍ତି ଚନ୍ଦ୍ରମୁଖୀ । କୋଳରେ ଯଶୋଦାଙ୍କ ଦେଇ
କରାଇ କ୍ଷୀରପାନ, ମାତା ଆନନ୍ଦ ମନ । କେ କାହା କୋଳୁ ଘେନିଯାଇ ॥

କରନ୍ତି ନାନାକେଳି ବ୍ରଜପୌଗଣ୍ଡ ମିଳି । କେ ଅଳି ବୋଲେ ବାପ ଭାଇ ।
କଞ୍ଜବଦନ ଗୃହଁ ନୁଛୁ ମୁଁ ଯାଉଥାଇ । କପାଁ ଖେଳରେ ଶ୍ରମଦେହୀ ।୧୦।
କରିଣ ପରିରମ୍ଭ ଆନନେ ଦେଇ ଚୁମ୍ବ । କୃଷ୍ଣଙ୍କୁ ସାରଙ୍ଗେ ବସାଇ ।
କରେ ମୀହାରକୁଳ ନନ୍ଦା ଚନ୍ଦ୍ରଶୀତଳ । କୋମଳ ଦଧିଜରୁ ଏହି ।୧୧।
କୋଟିମୁଖରେ କବି କେ ବର୍ଣ୍ଣିପାରେ ସ୍ତବ । କରନ୍ତି ଲୀଳା ଭାବଗ୍ରାହୀ ।
କଲେ ଭକ୍ତ ତାରଣ ଉପାୟେ ଭଗବାନ । କପଟେ ଅଳି ମାତା ତହିଁ ॥
କ୍ରୋଧ କରି ଜନନୀ ବୋଲେ ଖଟାଇନ୍ତି ଆଣି । କରୁଣାନିଧି କୃପା ବହି ।
କଳହପ୍ରିୟ ଶାପେ, କୁବେରପୋଏ ଗୋଟେ । କକୁଭରୂପ ଥିଲେ
ହୋଇ ।୧୩।

କଲେ ଶାପରୁ ପାରି, ଲୀଳାରେ ଦଇତାରି । କରେ ଭାଙ୍ଗିଣ ବୃକ୍ଷ ଦୁଇ ।
କଲେକ ହାହାକାର ଗୋପେ ସକଳନର । କରେ ବନ୍ଦନ ଦେଲେ ଫେଇ
କୃଷ୍ଣ ପୌଗଣ୍ଡ ଅନ୍ତେ, ନବବୟ ସଙ୍ଗତେ । କୋଡ଼େ ଶୋଭାବେଷ୍ଟିତ ହୋଇ
କଳାକରବଦନ ସଙ୍ଗେ ଗୋପନନ୍ଦନ । କି ରଙ୍ଗେ ଦାଣ୍ଡେରେ ଖେଳଇ ।୧୪।
କି ଶୋଭା ଚନ୍ଦ୍ରାନନ ସ୍ମିତ ଦ୍ୱିଜ ଶୋଭନ । କରକକାନ୍ତିକି ନିନ୍ଦଇ ।
କରି ସଖାଙ୍କୁ ସଙ୍ଗ କଉତୁକେ ଶ୍ରୀରଙ୍ଗ । କେଉଁ ଗୋପୀପୁରକୁ ଯାଇ ।୧୬।
କା ଘରୁ ପୟ ଆଣି କାହା ଘରୁ ଲବଣୀ । କରନ୍ତି ଏକତ୍ର କହାଇ ।
କେ ସ୍ନେହରେ ହସଇ, କେ ରୋଷଭର ହୋଇ । କହନ୍ତି ଯଶୋଦାଙ୍କୁ
ଯାଇ ।୧୭।

କେ କହେ ଗରୁତାପ, କେ କରଇ ସନ୍ତାପ । କେ କ୍ରୋଧେ ଗଦଗଦ ହୋଇ
କେ ବୋଲେ ଆଗୋ ସହି, ଗୋପେ ନୁହଇ ରହି । କଂସକୁ ଯାର
ଭୟ ନାହିଁ ।୧୮।
କେ ବୋଲଇ ସଙ୍ଗାତ ଶୁଣ ଗୋ ପ୍ରାଣମିତ । କଅଁଳା ପୁଅ ସଙ୍ଗେ ଥାଇ ।
କି କରି ନିକେତନେ ପଶେ ଯାଇ ଯତନେ । କଉତୁକେ ଲବଣୀ ଖାଇ ॥

କେ ବୋଲେ ଲୁଣ ଦନେ ପଶିଲେ ମୋ ଭୁବନେ । କହେ ବାଣୀ
ଅଦୃଶ୍ୟ ହୋଇ ।
କପଟା ଭୋଗ ନ ଦଅ ମୁଁ ତୁମ୍ଭ ଇଷ୍ଟ ଦଅ । କଲେ ପଡ଼ଅ ନାଶ ଯାଇ ।୨୦।
କର୍ଣ୍ଣେ ଶୁଣି ଉତ୍ତର ଭୀତ ହେଲ ଅମ୍ବର । କଲୁ ସମ୍ଭାର ଗୃହେ ନେଇ ।
କରକୁ ବତାଇଲ ସମସ୍ତ ଭୋଗ କଲା । କଉଁ ଛଳେକେ କେଣେ ଯାଇ ॥
କେ ବୋଲଇ ମୋ ପୁରେ ପଶିଲା ଯାଇ ଧୀରେ । କଅଁଳା ପୁଅକୁ ଉଠାଇ ।
କରି ଲବଣୀ ଚୋରି, ସବୁ ଖାଇଲା ହରି । କଗୃଡ଼ିଲା ଭାଣ୍ଡକୁ ନେଇ ॥
କେ ବୋଲେ ମାର୍ଗେ ସହି, ଭେଟିଲ ଦନେ ମୁହିଁ । କାଖେ ଧଇଲ
ତାକୁ ଯାଇ ।
କପଟା ମୋପୁରେ ବଜେ ନ କର ଦେବରାଜେ । କେତେ ଭୁଞ୍ଜିବ ଦୁର୍ଦ୍ଧାଦେହ ॥
କେଶବ ମନେ ହସି, ପୀୟୂଷବାଣୀ ଭାଷି । କହନ୍ତି ସାରଙ୍ଗ ଅନାଇ ।
କେତେ ପାଣି ମଧ୍ୟରେ, ଲଗିଛୁ କହ ମୋରେ । କଉତୁକେ ହସନ୍ତି ଗୃହୀଁ ॥
କଥା ଛଳରେ କହି, ମନ୍ମଥେ ମନ ମୋହି । କ କଲେ ନାଗର କନ୍ଦାଇ ।୨୫।
କବନ୍ଧବନ୍ଧେ ବାରି, ଯେତେହେଁ ନୁହଇ ବାରି । କେ ଧଉର୍ଯ୍ୟ ଧରିବ ସହି ॥
କଲ ମନେ ଭାବନା, ଶୁଣ ପ୍ରିୟ ଅଙ୍ଗନା । କିଶୋର ହେବେ ଯେବେ ଏହି ।
କୁଳଟା କୁଳବତୀ, କେହି ନୋହିବେ ସତୀ । କଟାକ୍ଷେ କାନ୍ତ
ହେବେ ମୋହି । ୨୬ ।
ଏତୁଧ୍ୱଂସନଅରି, ନୂତନ ରୂପ ଧରି । କପଟେ ଗୋପେ ଗୋପେ ରହି ।
କରୁ ଛଡ଼କାଶର ପାଇ ନାଗରୀବର । କରେ ସାରଙ୍ଗଦେବ ନେଇ ।୨୭।
କେ ବୋଲେ ଶୁଣ ମିତ, କେଶବକାର୍ଯ୍ୟ ବିତ, କଲେ ସୁକୃତ ଲଗେ ସହି
କାମୀଙ୍କ ପୁରତରୁ, କଛୁ ନ ବୋଲ ଭାରୁ, କୃତାର୍ଥ ବାଟ ଅଟେ ଏହି ।୨୮।
କର୍ଣ୍ଣେ ଗୋପୀବଚ୍ଚର ଶୁଣିଣ ମାୟାଧର, କରୁଣା କଲେ ଭାବଗ୍ରାହୀ ।
କରେ ଦଧିଜ ଧରି, କାଳକେୟ ଅରି, କଲେ ଦଜଧ୍ୱେ ସେହିଠାଇଁ ॥
କପୋଳରେ କୁଣ୍ଡଳ, ଦଶଇକ ମଞ୍ଜୁଳ, କମଳେ ହରି ବେଡ଼ ହୋଇ ।
କଲ୍ଲୋଳ ବଢାବସୁ, ଯା ଏରାଏ ପ୍ରକାଶୁ, କୁଞ୍ଚିତ କବରୀ ଚଳଇ ।୩୦।

କୃଷ୍ଣଙ୍କୁ ଧାଇ ନାରୀ,ଧଇଲେ କୋଳକରି, କେ ବୋଲେ ଆହା ବାପଧାଇ ।
କଳା କମଳମୁଖ ଦେଖିଲେ ଗୁଡେ଼ ଦୁଃଖ, କମ୍ପ ଧୂଳିଧୂସର ଦେହ ।୩୧।
କର ତାଣ୍ଡବ, ସର ଦେବୁ ନାଗରବର, କାହ୍ନୁ ଓହ୍ଲାଇ ତାଳ ଦେଇ ।
କରନ୍ତ ତାତା ଥେଇ ଥେଇ କଳାକହ୍ନାଇ,କୃଷ୍ଣ,ନାଚନ୍ତି ତାଳ ଗୁହିଁ ।୩୨।
କରଣ ଅଙ୍ଗଭଙ୍ଗ, ନାଚନ୍ତି ଶିଖିରଙ୍ଗ, କରଚରଣ ତା ନଗୃଇ ।
କଉତୁକେ ଲବଣୀ,ଲାଞ୍ଚ ଦେଉନ୍ତି ଗୋପେଶୀ,କରେ ମନୋହ ଭାବଗ୍ରାହୀ ।।
କହି ବସିଲେ ପଦ,ବହୁତ ହେବ ବୁଧ, କବିକ ଗୋଚର ନୁହଇ ।
କାତ୍ୟାୟନୀଙ୍କ କାନ୍ତ କର ନାହାନ୍ତି ଅନ୍ତ,କେ ଜନ୍ତୁ ନରଦେହ ବହି ।।
କାମିନୀକାଳକେୟୂ ସାନ ମଇନ କରେ, ଯେଣ ଉତ୍ତମାଙ୍ଗରେ ଥୋଇ ।
କହି ଗୃହକାରତ ଅସନ୍ତି କୁଳବଧୂ, କେବେହେଁ ଢଳ ନ ପଡ଼ଇ ।୩୫।
କରି ସେ ପ୍ରାୟେ ମତ, କର ଗୃହକାରତ, କୃଷ୍ଣଚରଣେ ଦାସ ହୋଇ ।
କଲେ ମନ ଉଦାସ, ନ ଲାଗେ କାଳଫାସ, କହିଅଛନ୍ତି ଭାବଗ୍ରାହୀ ।୩୬।
କୃଷ୍ଣନାମେ ଦୁରିତ,ଯେତେତ ହୁଏ ମୁକତ,କେ ଜନ୍ତୁ ନରଦେହ ବୋହି ।
କୁହୁର ସାନୁମାନ, ପ୍ରାୟେ ହୋଇଲେ ଜାଣ, କୃଶାନୁସ୍ଫୁଲିଙ୍ଗ ନାଶଇ ।
କରି ମାତୃଗର୍ଭର ହେତୁ ଶତବେ ଧର, କୃଷ୍ଣକଥାରେ ଶତ୍ରୁ ଦେଇ ।
କଲେ ଜଠରୁ ପାରି ଧରଣ ଦରଅରି,କର୍ଣ୍ଣ ପାପେସାର ହେଲ ହୋଇ ।।
କର୍ଣ୍ଣେ ଗୁରୁ କହିଲେ,ଚେତାଇ ପୁଣ ଦେଲେ,କାମେ ପଡ଼ଯେ ପାସୋରଇ
କୃତଘ୍ନ ଅଟଇ ସେହି ସବୁ ଶାସ୍ତ୍ର କହଇ, କାଳଦଣ୍ଡରେ ସେ ପଡ଼ଇ ।।
କଣ୍ଠ ଯାର ଗଦ୍‌ଗଦ,ଉଚ୍ଚାରି କୃଷ୍ଣପଦ,କୁଣ୍ଠିତେ ବାକ୍ୟ ନ ସ୍ଫୁରଇ ।
କମ୍ପଇ କଳେବର,ନେତ୍ରୁ କମଳଧାର, କ୍ରୋଧରେ ପ୍ରବାହେ ବହଇ ।୪୦
କାଳନ୍ଦୀପାପହାରୀ,ଅଟେ ସେ ବେଦ ବାରି, କାମ୍ୟା ସଗରସୁତ ହୋଇ ।
କାମକପିଳନେତ୍ର,ପ୍ରାଏ ଦହେ ଏ ଗାତ୍ର,କୃତାର୍ଥ ସେ ବାରି କରଇ ।।
କାମପାଳଙ୍କ ପ୍ରିୟ,ପୂତ ପ୍ରାୟେ ବିଗ୍ରହ, ଯାହାର ରୋମାଞ୍ଚିତ ହୋଇ
କହଇ କୃଷ୍ଣକର, କମଳପଦନୀର, ପରାଏ ବୃଜନ ଖସଇ । ୪୨ ।

# ଷଷ୍ଠ ଛାନ୍ଦ



ରାଗ—ଲଳିତକେଦାର [ ଇଚ୍ଛାବତୀ ବାଣୀ ]

କର୍ଣ୍ଣେ ଶୁଣ ଧୀରେ ହୋଇ ତୋଷ । କୃଷ୍ଣପ୍ରେମଭକ୍ତିରସ ରସ ।
କଳାକର-କରେ ଅନ୍ଧାର ପସରେ । କଲୁଷ ହୋଇବ ନାଶ । ୧ ।
କର ହୃଦଚନ୍ଦ୍ରପଦ୍ମ ମୋଦ । କୃଷ୍ଣନାମମନ୍ଦିରେ ଆନନ୍ଦ ।
କରେ ଅରବିନ୍ଦବୃନ୍ଦକୁ ପ୍ରମୋଦ । କୁମୁଦକୁ ଯେହ୍ନେ ଚାନ୍ଦ । ୨ ।
କୁନ୍ଦନକୁ ମିଶାଇ ତାସରେ । କରିଛନ୍ତି ବପୁଣି ନାଯାରେ ।
କୃତ୍ତିବାସଧାରୀ ହର ଅଙ୍ଗ ନାରୀ । ଥିବା କାନ୍ତି ନନ୍ଦା କରେ । ୩ ।
କନ୍ଧ କରଇ ମନେ ବଗ୍ଗର । କଣ୍ଠା ନେମଲିଛି କାମଧୀବର ।
କାମିନୀଙ୍କ ମନମୀନକୁ ବଡ଼ଶୀ । କରେ ଭେଦ ସାଜିବର । ୪ ।
କଞ୍ଜପାଦେ କୁନ୍ଦନ ମଞ୍ଜୀର । କାନ୍ତି ଦଶଇ କ ମନୋହର ।
କରେ ସୁରପୁର ନାଦେ ଚମ୍ପକ ର । କେ ନୋହିବ ରସପୂର । ୫ ।
କଶୀରଘ୍-କଟିରେ ଶୃଙ୍ଖଳା । କରେ ଭ୍ରମ ନବତନୁ ବାଲା ।
କରିବାକୁ ପରସଙ୍ଗ ଇଚ୍ଛା ଦେଖି । ବଳାନ୍ତ କୁଳଅବଳା । ୬ ।
କଂଯାଗତ ବ୍ରଜସଙ୍ଗ ହୋଇ । କଉତୁକେ ଖେଳନ୍ତି କହ୍ନାଇ ।
କ ରଙ୍ଗରେ ସୁରଲତା ବେନ ବେନ । ବେଦ ଉପବେ ଖେଳଇ । ୭ ।
କୃଷ୍ଣ ଅନ୍ତ୍ତ ନାଗରମଣି । କ ଣ କ ଶୋଭା ନାଗର ମଣି ।
କର ବଲ୍ଲେକନ ନାଗ ନାକ ଣୀ । କାମିନୀ ସୁରତରୁଣୀ । ୮ ।

---

୨ । ୧—ହର ହୃଦପଦ୍ମ ନ ।

କେଡ଼େ ଭଙ୍ଗିଆ ସେ ନଟବର । କାମପାଳଙ୍କୁ ଘେନ ସଙ୍ଗର ।
କରି ନାନା କେଳି ବଜପୁତ ମେଳି । କା ଘଟୁ ଅଣନ୍ତ ସର । ୯ ।
କୋଳି ପାଇଁ ଧନେ ଥିଲ କରି । କୃପାସାଗର ସେ ନରହରି ।
କରେ କୋଳି ଦ୍ୟନ୍ତେ କଲେ କବଚକୁ । ଦାରିଦ୍ର୍ୟ ବାଧାରୁ ପାରି ।୧୦।
କୃଷ୍ଣ ଥିଲ କଲେ ଧନେ ଭାତ । କରେ ଅଣି ଦଅ ନଣାନାଥ ।
ଜନ୍ହେ ଗୋପନାଥ ମାମୁଙ୍କ ସଙ୍ଗାତ । କର ପୂର୍ଣ୍ଣ ମନୋରଥ । ୧୧ ।
କାମୀଲୋକଙ୍କର କଳ୍ପତରୁ । କୃଷ୍ଣ କାନନେ ନଥନ୍ତ ଗୋରୁ ।
ଛଳାକରମୁଖୀ ଗୋପୀମାନେ ଦେଖି । କେଡ଼େ ଆନନ୍ଦେ ଝୁରୁ ।୧୨।
କହେ ସ୍ନେହରେ କଉଁ ପାଙ୍କଣି । କେ କଳିବ ନନ୍ଦର ସମ୍ପତ୍ତି ।
କୋମଳ ହୃଦସ୍ଥ ନୁହନ୍ତ ନିର୍ଦ୍ଦୟ । କୃଷ୍ଣ ବାଛୁରି ଚରାନ୍ତ । ୧୩ ।
କେଡ଼େ କୋମଳ ପଦ୍ମ ଚରଣ । କାହିଁ ବୁଲିବେ ଏ ବନେ ବନ ।
କି କହିବା ସନ୍ଧ ଅବିବେକ ବୃଦ୍ଧ । କାହାକୁ କି କରେ ପୁଣ । ୧୪ ।
କୃତ୍ତିବାସ ସ୍ଥାନ ଶମଶାନ । କସ୍ୱଇଲ ଅବଧି ବଚନ ।
କମ୍ବୁଧରକୁ କୁଣ୍ଡଳୀ ଶଯ୍ୟା କଲା । କୃଷ୍ଣ ରଖନ୍ତ ଗୋଧନ । ୧୫ ।
କେଡ଼େ ବିପୁଳ ଏ ବକ୍ଷସ୍ଥଳ । କଥମୀୟ ନୁହଇ ମଞ୍ଜୁଳ ।
କବି କଳିବାରେ ଭୁଲେ ଭୁଲିବାରେ । ନାହିଁ ଆଉ ସମତୁଲ । ୧୬ ।
କଞ୍ଜସମ୍ଭବ ସଂସାରସାର । କରି ଠୁଳ ବାଟି ଅମୃତର ।
କେତେ କାଳ ବନ୍ଧ କଉତୁକ ବନ୍ଧ । କଲା ଏରୂପ ନିବାର । ୧୭ ।

---

୧୩—କହେ ସ୍ନେହରେ କେଉଁ ଅଙ୍ଗନା,
ଏ ସମ୍ପତ୍ତି ନୁହିଁ ନନ୍ଦପୁଣ୍ୟ,
କୋମଳ ହୃଦୟ ନୁହନ୍ତ ନିର୍ଦ୍ଦୟ
କୃଷ୍ଣ ଚରନ୍ତ ବାଛୁରି ।

୧୭ । କାନ୍ତସଂସାରୁ ସାର ଅଣିଲ୍ଲ, କରି ଅମୃତ ଚାହିଁ ଗ୍ଳାଣିଲ୍ଲ, କେତେ କାଳ
ବନ୍ଧ କଉତୁକ ବନ୍ଧ, କଞ୍ଜସମ୍ଭବ ଗଢ଼ିଲା ।

କାନ୍ତ ଅନାଇ ପଞ୍ଚବରଣ । କାମଦେବଙ୍କୁ ବନ୍ଧବେ ରତ ।
କାନନକୁ ଯିବା ଦେଖି ଏ କୁମର । କରନ୍ତି ସ୍ତୁଏ ମୋ ସ୍ତୁତ । ୧୮ ।
କାମସାରଙ୍ଗ ଜିଣି ଭ୍ରୂଲତା । କେତେ ମନୋହରେ କହେ କଥା ।
କପାଁ ଏ କୁମର ନୋହିଲା ଅମ୍ବର । କରନ୍ତି ଇଷ୍ଟ ଦେବତା । ୧୯ ।
କୋଟି ବ୍ରହ୍ମାଣ୍ଡ ଯା ପଦଗ୍ଣର । କରେ ବନେ ଗୋରୁ ରଖିବାର ।
କହେ ପଶୁରଙ୍କୁ ଦେଖି କୁନ୍ଦଦନ୍ତୀ । କମ୍ପଇ ମୋ କଳେବର । ୨୦ ।
କେ ବୋଲଇ ଅମ୍ବୁଜାକ୍ଷୀ ଶୁଣ । କଲା ବନ୍ଧ୍ୟ ଗୋପାଳ ଜନମ ।
କୁଳଅଗୁରବେଷର କରିବାର । କଣ୍ଠ ନୂହଇ ଦୂଷଣ । ୨୧ ।
କୁଞ୍ଜବିହାରୀ ରାମ ସଙ୍ଗେଣ । କୁଞ୍ଜେ ଖେଳନ୍ତି ନାନା ରଙ୍ଗେଣ ।
କଉତୁକେ ବସ୍ତ୍ରରଖାଠାବେ ବସ୍ତ୍ର-[ସ୍ତ୍ରୀ] ପୁରକୁ କଲେ ବନ୍ଧନ । ୨୨ ।
କେତେ ଦିନେ ବକ ପାଞ୍ଚି ଶରି । କୈବଲ୍ୟକୁ ଦେଲେ କମ୍ବୁଧାରୀ ।
କରି ଅଘାଶିରେ ଅବଧ୍ୟଦୁଆରେ । କଲେ ଗୋପସୁତ ପାରି । ୨୩ ।
କାମପାଳ ତାଳବନ-ପାଳ । କଲେ ବିନାଶ ଧେନୁକପାଳ ।
କୁଞ୍ଜକାନନରେ ବରଜ ସଙ୍ଗରେ । କରନ୍ତି ଲୀଳା ଗୋପାଳ । ୨୪ ।
କଉତୁକେ ଖେଳେ ହୋନ୍ତି ଖେଳା । କାମଦେଙ୍କୁ ପ୍ରଲମ୍ବ ନେଲା ।
କଲେ ମୁଥଘାତ ଦଇତ ନିପାତ । କାଦମ୍ବିନୀପାନେ ଖେଳା । ୨୫ ।
କୃଷ୍ଣ କାନନ କରନ୍ତେ ନାଶ । କର୍ଣ୍ଣେ ଶୁଣି ଡାହା ପୀତବାସ ।
କୃଷ୍ଣକୁ କୃଷ୍ଣ ଜଠରେ ସହାରଣ । କଲେ ଗୋପୀମନ ତୋଷ । ୨୬ ।
କଞ୍ଜ-ନେତ୍ର କଞ୍ଜ-ସମ୍ଭବରେ । କଲେ ଭ୍ରମ ବନ ଭୋଜନରେ ।
କରେ ଗୋବର୍ଦ୍ଧନ ଧରି ଗୋବର୍ଦ୍ଧନ । କଲେ ଆନନ୍ଦ ମନରେ । ୨୭ ।

---

୨୫ । ୨—କାମପାଳଙ୍କୁ—କାମଦେବଙ୍କୁ । ୨୬ । ୧—କାନନ—ଇନ୍ଦ୍ରଙ୍କୁ । ୨୭ । ୪—ଆନନ୍ଦମନରେ—ଉନ୍ମତ୍ତବାଦରେ ।

କାକୋଦର-ଶିର-ଧର-ଧର । କରି ଆଗପଛରେ ଶ୍ରୀଧର ।
କରନ୍ତି ଗମନ ଗୋବିନ୍ଦ ଗୋବିନ୍ଦ । ଗୋବିନ୍ଦ ଶୋଭା ଅଙ୍ଗର । ୨୮ ।
କୁନ୍ଦ ମନ୍ଦାର ପାପନାଶିନୀ । କୁଶେଶୟ ପାରିଜାତ ଘେନି ।
କରି ବନମାଳୀ କଣ୍ଠଦେଶେ ମାଳ । କ ରଙ୍ଗେ ନାଚନ୍ତି ଢଳ । ୨୯ ।
କଳା ସମ୍ଭୂର ବିଳ ଶ୍ରୀଅଙ୍ଗ । କେକୀକଳାପ ଶଙ୍ଖ-ସାରଙ୍ଗ ।
କଞ୍ଜନେତ୍ରୀ ସ୍ୱର୍ଣ୍ଣ କଳା ଅଣାୟତ୍ତ । କାମକଲ୍ଲୋଳରେ ଅଙ୍ଗ । ୩୦ ।
କଳା ଅପଘନେ ଗୋରୁ ଧୂଳି । କଣଳୟ୍ୟ ଚୂଳେ ବନମାଳୀ ।
କରେ କେ ଗରଡ଼ନାଚ କେ ଗଡ଼ଡ଼ି । କରେ ଦେଇ କରତାଳି । ୩୧ ।
କୁଞ୍ଜବନ-ଚନ୍ଦ୍ର ବଂଶୀଧାରୀ । କଳାନିଧାନୀ ଗୋପୀଚକୋରୀ ।
କରନ୍ତି ନୟନ-ଚଞ୍ଚୁଦ୍ୱାରେ ପାନ । କୃଷ୍ଣଚନ୍ଦ୍ର-ମନୋହାରୀ । ୩୨ ।
କବି ବର୍ଣ୍ଣି କ ପାରିବ ଶୋଭା । କାମଦେବ ରତି ଦେଖି ଲୋଭା ।
କେବଣ ଆଖିରି ବ୍ରୀଡ଼ା ଦୂର କରି । କୃଷ୍ଣଚନ୍ଦ୍ର ଆଗେ ଉଭା । ୩୩ ।
କେଉଁ ଗୋପୀ ବେଶ କରି ଦୂର । କୃଷ୍ଣ ଦର୍ଶନକୁ ଆଗଭର ।
କରି ଚନ୍ଦ୍ରକାନ୍ତ ପରାୟେ ସୁମତି । କଞ୍ଜନେତ୍ର ଚାହେଁ ନୀର । ୩୪ ।
କଉଁ ଗୋପୀ କୁନ୍ଦମାଳା କରେ । କଣ୍ଠେ ଲମ୍ବାଏ ମାନସିକରେ ।
କେ ମନ ବଚନ କର୍ତ୍ତିବ୍ୟକୁ ଲୀନ । କଲା କୃଷ୍ଣଚରଣରେ । ୩୫ ।
କେ କହିବ ଗୋପୀ ଜଣେ ଜଣେ । କଲେ ଭାବ ଶ୍ରୀକୃଷ୍ଣ ଚରଣେ ।
କୁମୁଦ ସାରଙ୍ଗ ସ୍ନେହ ହୃଦେ ରଖି । କଲେ ବ୍ରଜସ୍ୟେ ସଦନେ । ୩୬ ।
କଞ୍ଜ ମୁଦ୍ରିତରେ ବସ୍ତ୍ର ଘେନି । କାନନରୁ ବ୍ରଜେ ଭାଇ ବେନି ।
କର୍ମମାନ ସାରି ମାର୍ଜନା ମଣୋହି । କଲେ ଷଡ଼ରସ ଘେନି । ୩୭ ।
କଣ୍ଟିରଦନ ପଲଙ୍କ ଶେଯେ । କାମପାଳ ସଙ୍ଗେ ଦେବରାଜେ ।
କ ସୁଖେ ରଜନୀ ବଞ୍ଚି ଭାଇ ବେନି । କଲେ ପ୍ରାତୁଁ ବନେ ବଜେ ।୩୮।
କହେ ଦୀନ ଦାସ କୃଷ୍ଣ କର । କୃଷ୍ଣ କବିଙ୍କ ନକାଠ ଭଣ୍ଡାର ।
କଲୁଷ ଅନ୍ଧାର ନମେଷକେ ଦୂର । କରେ ଯା ନାମ ମିହିର । ୩୯ ।

# ସପ୍ତମ ଛାନ୍ଦ



ରାଗ—ଅବକାଶକାମୋଦୀ

କମଳ-ନୟନ କୁଞ୍ଜବିହାରୀ । କଦମ୍ବତଳେ ବଜାୟେ ଶ୍ରୀହରି ଯେ ।
କୋନ୍ଥିଏ ହରି କରି ବଦନ । କାନ୍ତ ନନ୍ଦଇ ଅଭିନବ ଘନ ଯେ । ୧ ।
କାଳନ୍ଦୀ ଜଳ କଲ୍ଲୋଳ ରଙ୍ଗିଆ । କଦମ୍ବ ତରୁତଳ ନିଉଙ୍ଗିଆ ଯେ ।
କଟିରେ ଶୋଭା ହରିତ ବାସ । କାମ କେଳି କରିବାକୁ ଉଲ୍ଲାସ ଯେ ॥
କେଡ଼େ ମନୋହର ଶୃଙ୍ଗଳା ସ୍ୱନ । କାମୀଜନଙ୍କର ହୃଦିଚନ୍ଦନ ଯେ ।
କଦମ୍ବତଳେ ବଜାୟେ କରି । କଲେକ ଦୂତୀ ଡାକ ବରନାରୀ ଯେ । ୩ ।
କହନ୍ତ ରଙ୍ଗାଙ୍ଗୀବନାରୀ ଡାକ । କହ ଯାଇ ଅଷ୍ଟାପଦଅଙ୍ଗୀକ ଗୋ ।
କ ଶୋଭା ଦଶେ ଗୃହିଣୀ ରତି । କହ ଚନ୍ଦ୍ରାବଳୀ ଆଗେ ଜରତି ଗୋ ॥
କପଟରେ ନାନା ମୂରତି ଧରେ । କୁଞ୍ଜ ଅୟନେ ଗୋପୀଙ୍କ ଆଗରେ ଯେ ।
କନ୍ଧରେ ସଜମୁଣୀ ପକାଇ । କହନ୍ତ ଗୃହ୍ୟ ବଚନ ରସାଇ ଯେ । ୫ ।
କପଟେ ଘଟ୍ଟ ଆଲ ରୂପ ହୋଇ । କମନ୍ତ କମଳ ଆଣନ୍ତେ ଗୋଇ ଯେ ।
କହନ୍ତ ଡାକ ହଟକେଶ୍ୱର । କାମିନୀ ଗୃହଧାନ ଦାନ କର ଯେ । ୬ ।
କାହିଁ କାଚସି କାହିଁ ରେ ଶଙ୍ଖାରି । କେତେବେଳେ ଶୁକବିକା ଶବରୀ ଯେ ।
କହନ୍ତ ବାଣୀ କୋମଳ କରି । କାମିନୀଙ୍କ ମନ ନଅନ୍ତ ହରି ଯେ । ୭ ।
କେତେବେଳେ ବଂଶୀ ବଜାଇ ହରି । କୁଞ୍ଜକୁ ନଅନ୍ତ ଉଚ୍ଚାଟ କରି ଯେ ।
କେଳିତ ଚଉଷଠୀ ବିଧାନ । କାମ କଉତୁକେ ହରନ୍ତ ଧନ ଯେ । ୮ ।

---

୧ । ୪—କାମୀଜନଙ୍କର ହୃଦିଚନ୍ଦନ ଯେ ।

କଳା ଅପଘନ କି ନବଘନ । କଳାପଚୂଳ ଇନ୍ଦ୍ରଶରାସନ ସେ ।
କି ନେଣାକ୍ଷି ତାର ବଳାକଶ୍ରେଣୀ । କନକବସନ ସଉଦାମିନୀ ସେ ।୯।
କଟି କିଙ୍କିଣୀ ନୀରଦ ଗର୍ଜନ । କହୁବା ଗୃହୁଷ୍ଟି ବରଷେ ବନ ସେ ।
କାହାର ମନ ଚାତକ ପରି । କେ ମତ୍ତ କୃକବାକ ପ୍ରାୟେ ନାଚି ସେ ।୧୦।
କନକ ରସାଣ ଝଳ ଦର୍ପଣ । କରିବ ଯେବେ ଯୋଷ ପଣପଣ ସେ ।
କାନ୍ତକି କେବେ ନୋହେ ସମାନ । କୁଞ୍ଜନାଥ ଆଗେ ଜ୍ୟୋତିରିଙ୍ଗଣ ସେ
କମନୀୟ ଚୂଡ଼ା କେତକୀବେଢ଼ା । କାନ୍ତାକଦମ୍ବର ଧଇର୍ଯ୍ୟବୁଡ଼ା ସେ ।।
କଦମ୍ବତଳେ ବଜାଇ ବେଣୁ । କୁଞ୍ଜକୁ ଡାକନ୍ତି ନାଗର କାହ୍ନୁ ସେ ।୧୨।
କର୍ଣ୍ଣେ ଶୁଣି ସଖୀ ମୁରଲୀନାଦ । କାମିନୀକୁଳ ହୋଇଣ ଆନନ୍ଦ ସେ ।
କାଳନ୍ଦୀକିଳେ ଚଳନ୍ତି ଗୋଇ । କଉତୁକରେ କହନ୍ତି କହ୍ନାଇ ସେ ।୧୩।
କ୍ରମେ ବଢ଼ିଲା ସୁଷମା ତରଙ୍ଗ । କଲେ ଆଶ୍ରୟ ଆସି ନାନାରଙ୍ଗ ସେ ।।
କାମିନୀ ଜାଲ ଜଳ ହୋଇଲା । କୃଷ୍ଣ ମନମୀନ ଚହଟାଇଲା ସେ । ୧୪।
କରନ୍ତେ ଗୋପୀ ଗମନ ମାର୍ଗରେ । କଣ୍ଠୁର ବୋଲନ୍ତି କାହା ଅମ୍ବରେ ସେ
କାହାର ମନ ହରି ନୃତ୍ୟରେ । କୁଟେ ଘଟୁ ଥିଲ ଜଳଘାଟରେ ସେ ।୧୫।
କୃଷ୍ଣ ଅଟନ୍ତି ଭଙ୍ଗିଆଙ୍କ ଗୁରୁ । କାହା କଟିକୁମ୍ଭ ଅନାଇ ଦୂରୁ ସେ ।
କହନ୍ତି କୁମ୍ଭଧରିକୁ ଚାହିଁ । କୁମ୍ଭରେ ପାଣି ମୁଁ ଦେବଇ ନେଇ ସେ ।୧୬।
କୁମ୍ଭସ୍ତନୀ ବୋଲେ ଦର ଧରିଛ । କୁମ୍ଭ ଧରିବା ଦର ନାହିଁ ଇଚ୍ଛ ସେ ।
କୁମ୍ଭରେ ଯେଣ ଯାନ୍ତ ବସାଇ । କେତେ ଚତୁରାଇ କହ କହ୍ନାଇ ସେ ।।
କର ଧରି କହେ କୁଟକେଶ୍ୱର । କାମିନୀ ମୁଁ ତୋର ହେଲି କୋଃୟୁର ।
କହଇ ହସି ନାଗରୀବର । କୃପାନିଧି କୃପା ନୋହିବ ଦୂର ସେ ।୧୮।

---

୧୦ ।୧—ଗର୍ଜନ—ମଧୁର । ୧୦ । ୨—ବନ—ମାଳ ।
୧୫ । ୧—ମାର୍ଗରେ—ବାଟରେ । ୧୫ । ୨—ଅମ୍ବରେ—ଲାଟରେ ।
୧୫ । ୩—ନୃତ୍ୟରେ—ନାଟରେ ।

କାହାକୁ ବୋଲନ୍ତି ସାରଙ୍ଗମୁଖୀ । ସାରଙ୍ଗ ଉପରେ ସାରଙ୍ଗ ଥୋଇ ଯେ ।
କରୁଛୁ ବିପରୀତ ଗମନ । କଟାକ୍ଷେ ସାରଙ୍ଗ ଥୋଇଛୁ ଧନ ଯେ । ୧୯ ।
କଞ୍ଚୁକେ ଯାହାକୁ ଦେବୁ ଅନାଇ । କେ ଯିବ ଉବୁର ଚନ୍ଦ୍ରମାମୁଖୀ ଗୋ ।
କହଇ ଗୋପୀ ମନ୍ଦେ ହସିଣ । କାମ କି କରିବ ମନମୋହନ ହେ ।୨୦।
କୃଷ୍ଣ ବୋଲନ୍ତି ମୋ କାମନା ପୂର୍ଣ୍ଣ । କରିବାରୁ ତୁ ମୋ
କାମ-ଗୋଧନ ଗୋ ।
କହିବା ଆଉ ଅଧିକ କେତେ । କରିଥିବୁ ଦୟା ସୁଦୟାଶତେ ଗୋ । ୨୧ ।
କହେ ଗୋପୀ ଶୁଣ ସାରଙ୍ଗଧର । କାମିନୀ କଟାକ୍ଷ ସାରଙ୍ଗ ଶର ଯେ ।
କରିଣ ଅନା ଛିନ୍ତ ରଚିଲ । କରିଣ ଅନଙ୍ଗ ଅନା ତରିଲେ ।୨୨।
କାହାକୁ ବୋଲନ୍ତି କଲ୍ୟାଣଗୋପୀ । କୁଚ ଚୋଡ଼ୋ କାମରୂପୀ ସୁନ୍ଦରୀ ଚେ
କହିବ କେତେ ତାର ସ୍ୱରୂପ । କହିଲେ ଘୋଟଇ କଞ୍ଚନତାପ ଯେ ।୨୩।
କ୍ରମେ ଚଳଦଳ ଫଳ ପ୍ରକାର । କୃଷ୍ଣ ମୁଖ ଯେସନ ହେଲା ବାହାର ଯେ ॥
କି ଶୋଭିବନ୍ତ କମଳକଳି । କାମରତ୍ନାକରେ ଆସଇ ବଢ଼ି ଯେ । ୨୪ ।
କାଞ୍ଚନଧାତ୍ରୀ ଫଳ ପ୍ରାପ୍ତେ ହେଲ । କାମ ସାରଙ୍ଗ ଶିଳୀମୁଖ କଲ ଯେ ।
କାମୀଙ୍କ ହୃଦ କରିଣ ଲକ୍ଷ । କପର୍ଦ୍ଦୀ ଅରିତ ବନ୍ଧେ ସାୟକ ଯେ । ୨୫ ।
କନକ ବେଲ ସମ୍ପୁଟକ ପରି । କାନ୍ତି ବିକାଶିଲ ନବ ନାଗରୀ ଗୋ ।
କି ଶୋଭା ପଯ୍ୟଃପେଟୀ ପରିବ । କେତେରୂପେ ତାକୁ ଆଦର ହୋଏ ଯେ ॥
କୃପାସକ ଉତ୍ତମାଙ୍ଗେ ଦେଇଣ । କରାଇଲେ ତାକୁ କେତେ ଯତନ ଯେ ।
କମଳଭବ ଉଦରେ ନେଇ । କମଳ ରଖିଲ କମଳମୁଖୀ ଯେ । ୨୭ ।
କୁରଙ୍ଗୀନୟନୀ ମନମୋହିନୀ । କର ପରିରମ୍ଭ କୁନ୍ଦଦଶନୀ ଗୋ ।
କହଇ ଅଧରଶବଦନୀ । କାମନା ପୂର୍ଣ୍ଣ ହେବ କମ୍ବୁପାଣି ଯେ । ୨୮ ।
କୁସୁମେ ପଙ୍କିଲ ମତ ନ ଧର । କହ ଯାହା ଇଚ୍ଛା ଦେବା ଶ୍ରୀଧର ଯେ ।
କହଇ ହସି ପଙ୍କିଲ କର । କରାନ୍ତି ପଙ୍କିଲ ଶମ୍ଭୁରେ ମାର ଯେ । ୨୯ ।
କରେ ସାରଙ୍ଗ ଗୋଳ ସାରଙ୍ଗରେ । କରନ୍ତି ପଦାବଳ ସାରଙ୍ଗରେ ଯେ।

କହଇ ହସି ସାରଙ୍ଗଗତି । କର ସାରଙ୍ଗ ପୂର୍ଣ୍ଣ ବ୍ରଜପତି ହେ । ୩୦ ।
କହେ ଗୋପୀ ହସି ପୁଷ୍ପେନ୍ଦ୍ର ଗିର । କୋଟିବ୍ରହ୍ମାଣ୍ଡରେ ନାଗରବର ଯେ ।
କାମିନୀକୁଳ କଳପତରୁ । କଟାକ୍ଷେ ଦ୍ରୁବ କଣ୍ଠପାର ଦାରୁ ଯେ । ୩୧ ।
କୃଷ୍ଣ ଗୋପୀଙ୍କର ବାତ୍ସଲ୍ୟଗିର । କୋବିଦେ ଶ୍ରୁତିପଥେ ପାନକର ଯେ ।
କୁଟିଳ ବୁଦ୍ଧି ହୃଦରୁ ନାଶ । କୃପାନିଧି ପାଦେ ଶରଣ ପଶ ଯେ । ୩୨ ।
କୃଷ୍ଣ କୀରତି ସାରଙ୍ଗ କରଣ । କରେ କ ଥକର୍ମଶିଳାରୁ ବନ ଯେ ।
କୋବିଦେ ହୃଦ-ସାରଙ୍ଗ-ମଣି । କରଣରୁ ବହେ ଅମୃତ ପାଣି ଯେ । ୩୩ ।
କାହାକୁ ବୋଲନ୍ତି ସାରଙ୍ଗଧର । କି ଭାଗ୍ୟ ସାରଙ୍ଗଧର ତୋହର ଯେ
କନ୍ଦର୍ପେଶ୍ୱରେ ହୃଦରେ ଭଜେ । କାବ୍ୟ ମୋତିମାଳ ଜାହ୍ନବୀ ସାଜେ ଯେ ।
କନକ କୁସୁମ କମଳ ନୀର । କରନ୍ତି ଲାଗି କୃପାହେଲେ ତୋର ଯେ ।
କରଅ ମୋତେ ନବ କେୟୂର । କହନ୍ତି ଗୋପୀ ତୁମ୍ଭେ ବ୍ରଜଈଶ୍ୱର ଯେ
କୃଷ୍ଣ ଗୋପୀଙ୍କର କୁଞ୍ଜବିହାର । କର୍ଣ୍ଣେ ଶୁଣି ଭବୁ ହୁଅ ଉଦ୍ଧାର ଯେ ।
କରୁଣ ଧୀରେ ମନ ଉଦାସ । କୃଷ୍ଣପଦ୍ମପାଦେ ବୋଲଇ ଦାସ ଯେ । ୩୬ ।
କଦମ୍ବମୂଳଅ ଚରଣ ଧ୍ୟାୟି । କବି କୃଷ୍ଣଙ୍କର ଭାବେ ଭଣଇ ଯେ ।
କହିବେ ହରି ସଂସାରୁ ପାରି । କରୁଣାସାଗର କୁଞ୍ଜବିହାରୀ ଯେ । ୩୭ ।



---

୩୨ । ୪—କୃଷ୍ଣପାଦେ ଦୃଢ଼ ମନକୁ ଦାଅ ଯେ ।
୩୪ । ୧—କନ୍ଦର୍ପେଶ୍ୱର—କପର୍ଦ୍ଦୀଶ୍ୱର ।

# ଅଷ୍ଟମ ଛାନ୍ଦ



ରାଗ—କାମୋଦୀ

କଣ୍ଠେ ଶୁଣିମା ଧୀର ଜନେ ହୋଇଣ ଧୀର କାମେ ଅରତ ବନମାଳୀ । କଦମ୍ବତଳେ ବଜନ ଏକାନ୍ତେ ଦେବରାଜେ ଗୋପୀଙ୍କ ଯିବା ମାର୍ଗେ ମିଳ ସେ । କଳାକାହ୍ନୁ । କଣ୍ଣ-ଗତ-ଗତକ ଗୃହଂ । କହନ୍ତ ଅଟଗ ଉଷ୍ଣ ହୋଇ । କାଞ୍ଚିସ୍ୱର ମଞ୍ଜୀର ଧ୍ୱନ କର୍ଣ୍ଣକୁ ମୋର ଝିଲ୍ଲୀ ଘଣ୍ଟି ପ୍ରାୟେ ବାଜଇ ସେ । ୧ ।

କହନ୍ତ ବଂଶୀଧାରୀ କୃପାଦୃଷ୍ଟି ତୋହର ସୁଧାବୃଷ୍ଟି ପରାୟେ ବାଳା । କର ଉଣ୍ଣାସ ଚୀର ସାରଙ୍ଗୁ ନାରୀବର ଦେଖାଉଥାଉ ପ୍ରେମଶୀଳା ରେ । କଞ୍ଜଆଖି । କୋମଳବାଣୀ ମନୋହର । କହୁ ଯା ସିତାରୁ ମଧୁର । କର୍ଣ୍ଣଯୁଗଳେ ପଶି ମାନକୁ ଦଏ ଭାଣି କଞ୍ଜନ ସୁର-ତରୁବର ରେ । ୨ ।

କାମକେଳିଲାଳସୀ କନ୍ଦର୍ପମଦାଳସୀ ଇଙ୍ଗିତ କର ଗୃହଂବାର । କାମୀହୃଦକୁ ସେହ ଅନଙ୍ଗଭୂତ ବାଇ ଲଗଇ ମୋହମାମନ୍ତ୍ରର ରେ । କଞ୍ଜଆଖି । କରୁଣା କଟାକ୍ଷ ତୋହର । କାମୀହୃଦରେ ପଡ଼ିବାର । କୈରବ ହୃଦୟକୁ ସାରଙ୍ଗଘରୁ ପ୍ରାଏ ଦ୍ରବଣ ବୋଧ ପଡ଼େ ମାଉ ରେ । ୩ ।

---

୧ । ୧—ଧାମେ—ତମ୍ରେ

କଉଁ ରମଣୀମଣି ନାଗରାଜଗମନା ସୁବେଣୀ ସୃଜିଁ ବଂଶୀଧର । କହୁଛନ୍ତି ସୁବାଣୀ ଚର୍ମଦେଶରେ ବେଣୀ କି ଏ ଗୁପତି କଞ୍ଚନର ରେ । କଞ୍ଚୁଆଖି । କରବାଲକୁ ଏଥେଁ ଥୋଇ । କହ୍ନୁତ ସ୍ନେହ ଶାଣ ଦେଇ । କାମୀହୃଦକୁ ମାରି ମାରଇ ଗୁପତିର ବିବେକ ଦିଅଇ ଛଡ଼ାଇ ରେ । ୪ ।

କଉଁ କମଳମୁଖୀ କମଳ ନେବାପାଇଁ ଶାତକୁମ୍ଭ କୁମ୍ଭକୁ ବୋହି । କରନ୍ତି ଧୀରଗତି ଅନାଇ ସଦୁପତି କୃଷ୍ଣ କହନ୍ତି ତାକୁ ଚାହିଁ ରେ । କଞ୍ଚୁଆଖି । କରୁଣା ତୋର ନୋହିବାରେ । କପର୍ଦ୍ଦୀଅରି ଘେନି କରେ । କରେ ସାରଙ୍ଗ ଧରି ସାରଙ୍ଗ କୋପ କରି ଦମ୍ଭତରୁ ଛେଦନ କରେ ରେ । ୫ ।

କୃପାନିଧାନ ନାମ କଲୁ ଏଠାରେ ବାମ କଣ୍ଠରେ ନ ଚାହିଁ ଚତୁରୀ । କରେ କଲମ୍ବ ଧରି ମୃତ୍ୟୁଞ୍ଜୟ ଅରି ହୃଦୟ ପକାଏ କଚୁରି ରେ । କଞ୍ଚୁଆଖି । କରଇ ଘନାଘନ ମନ । କା ଆଗେ କରିବି ଜଣାଣ । କଲେ ଶତ୍ରୁନାଶନ ଅଟେ ଶତ୍ରୁବାଚକ ଭୂଦେବ କାର୍ଯ୍ୟ ଅକାରଣ ରେ । ୬ ।

କର୍ଣ୍ଣେ କଲ୍ୟାଣଅଙ୍ଗୀ ଶୁଣି କରିଣ ଭଙ୍ଗୀ ଅପାଙ୍ଗେ ଚାହିଁଲା ଚତୁରୀ । କୃଷ୍ଣ ହୃଦସାରଙ୍ଗ ଉପରକୁ ପାରଙ୍ଗ ଘେନି ପଡ଼ିଲା ପ୍ରାଏ ହରି ସେ । କଞ୍ଚନେଇ । କହନ୍ତି ଶୁଣ ହେମଗୋରୀ । କଟାକ୍ଷ ଭଙ୍ଗିମା ତୋହୋର । କଇରବ ହୃଦେଣ ହେମଧାମ କରିଣ ପଶିଏ ହୃଦୟ ମୋହୋର ସେ । ୭ ।

କା ଅପଘନ ଚାହିଁ କହେ କଳାକହ୍ନାଇ ବରଲବ୍ଧ-ଅଙ୍ଗୀ ଶୁଣ । କୃଷ୍ଣଗନ୍ଧମାଦନ ବେଗ ନ ହୁଲେ ଜାଣ ଏ ଶୋଭି ଅଟେ

ଅକାରଣ ସେ । କୁନ୍ଦଦନ୍ତୀ । କହଇ ଶୁଣ ବଂଶୀଧାରୀ । କ କହିବା ଶିତ ତୁମ୍ଭର । କଲା ଚନ୍ଦ୍ରମା ପ୍ରାଏ ଚହଟି ବାସ ନଏ ଯେଗ ଆମୋଦରୁ ନ ଫେଉ ସେ । ୮ ।

କାମିନୀ ବୋଲେ ଅପତ୍ୟାଣୀ ନନ୍ଦନ ହୋଇ କର୍ପା ଅବେଭର ବଚନ । କହୁ କଳାକହ୍ନାଇ କେ ତୋ ଜେଠାଇ ମାଇଁ ଆଉ କ ବୋଲ ଏ ବଚନରେ । କଲାଜାହ୍ନୁ । କର ଏ ବସ୍ତ୍ରର ଅନ୍ତର । କଂସ ଜାଣିଲେ ଯିବୁ ମାର । କହୁଅଛୁଁ ତୋ ଭଲ ଶୁଣ ନନ୍ଦ ଦୁଲାଳ ସମ୍ପତ୍ତି ବୁଡ଼ିବ ନନ୍ଦର ରେ । ୯ ।

କହୁଛନ୍ତି ଶ୍ରୀପତି ଦ୍ୱିଜରାଜ-ଅଗ୍ରତ-ମସ୍ତକ-ଧାରଣ-ଅଗ୍ରତ । କ କହିବ ତା ଶିଳୀମୁଖ ଅଗ୍ରତ ମୋତେ ତୋକାନ୍ତ ଗୃହେଁ କୁନ୍ଦଦନ୍ତୀ ରେ । କଞ୍ଜଆଖି । କ ଶୋଭା ଜୁଡ଼ାର ଘଟନ । କରନ୍ତୁ ଗର୍ଭକ ଦେଇଣ । କାମ କୁବେଣୀ କଏ ମକତେ ନର୍ଗ ହୋଏ ବନ୍ଦୀ ହୋଇବେ ନମୀନ ରେ । ୧୦ ।

କଉଁ ସାରଙ୍ଗମୁଖୀ ସାରଙ୍ଗଧର ଗୃହେଁ ଉତ୍ତମାଙ୍ଗ ଚାଟେର ଯୋଡ଼ାଇ । କରେ ଗମନ ଖଟର ଅମ୍ବରର ଅନ୍ତରେ ତା ପାଖେ ସଇ ସାବଗ୍ରାହୀ ରେ । କଞ୍ଜଆଖି । କଲେ ଅନ୍ତର ଝୀନ ଚୀର । କ ଶୋଭା ବାହାରେ ରୁଚିର । କାଚପଟ୍ଟରେ ବନ ପ୍ରଭଚକ୍ଷୁର ବର୍ଣ୍ଣ ପ୍ରାଏ ନର୍ମିଳ ମନୋହର ରେ । ୧୧ ।

କାହା ଜାନୁ ଅନାଇ କହେ କଳାକହ୍ନାଇ ଦେଖିଲ ବିପରୀତ ରଙ୍ଗ । କଦକରମ୍ଭାତରୁବରେ ନେଇ ରମ୍ଭୋରୁ ବାନ୍ଧନ୍ତୁ କୁ ମତ୍ତ-ସାରଙ୍ଗ ରେ । କଞ୍ଜଆଖି । କରଣ ଲାଗି ସାରଙ୍ଗର । କରେ ସାରଙ୍ଗ-ତମ ଦୂର । କଲେ ତୋହ ଆନନ-ସାରଙ୍ଗ ଦରଶନ ଯୋଗଇ ସାରଙ୍ଗ-ଅନ୍ଧାର ରେ । ୧୨ ।

କୁନ୍ଦନ ମଣ୍ଡୁରୁହ ପ୍ରାଏ ତୋହ ବିଗ୍ରହ ଶିଖରେ ଫୁଟିଛି କମଳ । କମଳ ମଧ୍ୟେ ଇନ୍ଦୀବର ଯୁଗଳ ବେନି ବିକଶି ଦିଶଇ ମଞ୍ଜୁଳ ରେ । କଞ୍ଜଅଖି । କରକ ସଙ୍ଗରେ ବିଧୂନ୍ତୀ କି ଶୋଭା ତିଳପୁଷ୍ପ ମିଳି । କଞ୍ଜ-ସମ୍ଭବ ଖଞ୍ଜି ରଖିଛି ମନ ରଞ୍ଜି ତୋ ଅପଘନ ଗୋପବାଳୀରେ ।୧୩।

କଞ୍ଜନର ଶତାଙ୍ଗ ପ୍ରାଏ ସଖି ତୋ ଅଙ୍ଗ ଦିଶଇ କେଡ଼େ ମନୋହର । କରେ ସାୟକ ଧରି ବାମଦେବ-ଅରି ଏଥେ ବସିଣ ମାରେ ମାରି ରେ । କଞ୍ଜଅଖି । କୃପା କୁହକେ ମନୋଦରୀ । କରୁଣା ଗୁଣାରୁ ଚତୁରୀ । କରେ ଧରି ସାୟକ ମନୋଦରୀ-ନାୟକ-ଅରିତ ଦେଉଅଛି ସାରି ରେ । ୧୪ ।

କରୁଥାଇଁ ମୁ ମନ ଏ ଶତାଙ୍ଗେ ଗମନ କରିବା ପାଇଁ ରସେଶ୍ୱରୀ । କଇରବ-ଅନନୀ ସ୍ତ୍ରୀ ଡ଼ା ମାନସ ଯେଣ କର୍ପା ନ ଗୃହ୍ଣ ବିମ୍ବାଧରୀ ରେ । କଞ୍ଜଅଖି । କାନ୍ତ ରସାଣିଲି ରତନ । କି ଶୋଭା ଦିଶେ ପ୍ରାଣଧନ । କୃପାଳୁ ପଣ ବିହି କୃପା ଗୁଣା କପାଇଁ କରୁଛୁ ଯୁବତୀ-ରତନ ରେ । ୧୫ ।

କରିଣ କେତେ ଭଙ୍ଗୀ ସେ ନବନୀତଅଙ୍ଗୀ କହଇ ଇଙ୍ଗିତ ବଚନ । କଳା ଡୋଳାରେ ଗୃହିଁ ଅପାଙ୍ଗରେ ଅନାଇ ବୋଲଇ ଶୁଣିମା ମୋହନ ହେ । କଞ୍ଜନେତ୍ର । କି କହିବା ପୁଂସରୀତକ । କୁସୁମେ ପଙ୍କିଲ ମତକ । କରେ ଅନ ଭାବନା ଦେଖି ନବ ସୁମନା ଲେଉଟି ନ ଆସେ କତକ ହେ । ୧୬ ।

କା ଅପଘନ ଗୃହିଁ ବୋଲେ କଳାଜହ୍ନାଇ ତୋ ଅଙ୍ଗ କାମ-ଘନାଘନ । କାନ୍ତ ନିର୍ମଳ ବନ ବନ ମୁଟଞ୍ଜ ବଦନ ଭୂଷିତ ଗୃତକ ମୋ:ମନ ରେ । କଞ୍ଜଅଖି । କମଳ ବଦନ ଅନାଇ । କାମିନୀ ଘୋଟେ

୧୪ । ୬—ମାର—ଶର । ୧୬ । ୧—ଇଙ୍ଗିତ—ଠାରୁଷ ।

କାମବାଇ । କଟାକ୍ଷଭଙ୍ଗୀ ତୋର କଞ୍ଜହୃଦକୁ ମୋର ମାହାର
କରଣ ବାଜଇ ରେ । ୧୭ ।

କଉଁ ବରବର୍ଣ୍ଣିନୀ ବରନୀ ପିକବାଣୀ ଗଣ୍ଡକ ଥନାଇ ମୋହନ ।
କର ନିଗୂଢ଼ ପ୍ରେମରସରେ ବନ୍ଧୀ ମୋତେ ବାହୁପାଶରେ ପ୍ରାଣଧନ
ରେ । କଞ୍ଜଆଖି । କାମକେଳି ପ୍ରୀତିବଲ୍ଲୀ । କର ଜାନୁଯୁଗଳ ଭେଳା
କରି ଅନୁରାଗ ସାଗଲତାକୁ ଦେଇ କାମସାଗରୁ ତାର ବାଳା
ରେ । ୧୮ ।

କଉଁ ରସିକ ବାଳୀ ଅନାଇଁ ବନମାଳୀ ଦ୍ରୁତ ଗମନ କରିବା ରେ ।
କୃଷ୍ଣ ତା ପାଖେ ଯାଇ ବୋଲନ୍ତ ଚନ୍ଦ୍ରମୁଖୀ କିପାଇଁ ଗମନ ସତ୍ୱରେ
ରେ । କଞ୍ଜଆଖି । କରି ମୋଠାରେ ମାନ ମନ । କି ପାଇଁ କରୁଛୁ ଗମନ ।
କରଇ କି ମଧୁର ସିତାଠାରୁ ତୋ ଗିର କର୍ଣ୍ଣକୁ ଲାଗେ ସୁଧାଚୂନ
ରେ । ୧୯ ।

କାହାକୁ ଗୃହଁ ହରି ବୋଲନ୍ତ ବ୍ରଜେଶ୍ୱରୀ ସାରଙ୍ଗଭୟୁ କରି ମନା ।
କିପାଇଁ ହରିକାଳ ହରି ବଚନ ପ୍ରାଏ କିଶୁ ନ ଫିଟଇ ନୟନା ରେ ।
କଞ୍ଜଆଖି । କର୍ଣ୍ଣେ ନ ଶୁଣିଲି ପୁଗିର । କର୍ମକୁ ବୋଲିବ ମୋହର ।
କଳକଣ୍ଠବଚନୀ କଳକଣ୍ଠଗମନୀ ନାଗରୀହୀରା ନାରୀବର ରେ । ୨୦ ।

କାହା କାନ୍ତ ଅନାଇ କହେ କଳାକହ୍ନାଇ ତୋ ମୁଖ ଦର୍ଶ
ଝଟଝଟ । କର ଜୀବ କୃତାର୍ଥ ଦେଇ ଅଧରାମୃତ ଉଦପର ସାୟକ
କ'ଟ ରେ । କଞ୍ଜଆଖି । କଞ୍ଜବାହୁରେ ଆଲିଙ୍ଗନ । କର ମୋତେ
ପରାଣଧନ । କରୁ କରୁ ବିଶ୍ୱର ଛଟେଉ ନାଗରୀବର ଶର ମାରେ
ମୀନକେତନ ରେ । ୨୧ ।

---

୧୭ । ୪—ମଦାର—ସାରଙ୍ଗ ।

କାମ ହେମପକ୍ଷୁଲା ପ୍ରାଏ ତୋ ତନୁ ବାଲା ସୁଷମା ଗୃହ୍ନି ବେନେ ମୋର । କରୁଥାଉ ବିଗ୍ରହ ନାହିଁ ସଂସାରେ ସାର ଉପମା ମାନେ ହେବେ ଦୂର ରେ କଞ୍ଜ ଅଖି । କାନ୍ତକ ନୋହିବେ ସମାନ । କମଳନେତ୍ରୀ ଅପଘନ । କୁନ୍ଦନ ସଙ୍ଗେ ମଣି ଆଦରଣକୁ ଅଣ ଯୋଖିବ ଯେବେ ପଣ ପଣ ରେ । ୨୨ ।

କୃଷ୍ଣ ଗୋପୀ ଉତ୍ତର ଜଳଦ ଜଳଧାର ପସ୍ଏ ନୁହଇ ଗୋଚର । କର ନାହାନ୍ତ ଶେଷ ବଦନେ କର ଶେଷ ସର୍ବାନମୁଖ ବେଦବର ହେ । କୋବିଦେ ହେ । କୃଷ୍ଣକଥାରେ ଦେଇ ମନ । କର ଶ୍ରୁତିଯୁଗଳେ ପାନ । କଞ୍ଜପଲ୍ଲବେ ବନ ପ୍ରାଏ କଲୁଷମାନ ଖପିଣ ହୋଇବେ ଦହନ । ୨୩ ।

କୃଷ୍ଣ କୁଞ୍ଜବିହାର ଗୀତ ଏ ମନୋହର କର୍ଣ୍ଣକୁ ଅଟେ ସୁଖକର । କଲୁଷ କ୍ଷୟ୍ୟ ଯିବ କଇବଲ୍ୟ ଲଭିବ । ଭବ ସଂସାରୁ ହେବ ପାର ହେ । କୋବିଦେ ହେ । କରୁଣା ଜୀବରେ ଯାହାର । କ କରିପାରେ ନାଶକର । କୃଷ୍ଣଚରଣେ ଧ୍ୟାନ କର ଯେ ବଟେ ଧନ । ମୁଁ ତାଙ୍କ ଅଟଇ କୋୟର ହେ । ୨୪ ।

କାମଧେନୁ ଅଶେଷ କଳ୍ପତରୁ ବିଶେଷ ଯେଉଁ ପାଦକୁ ସମ ନାହିଁ । କର ସେ ପାଦ ଧ୍ୟାନ ଯାଉ ରଜନୀ ଦିନ ଦାସ କୃଷ୍ଣକର ମାଗଇ ହେ । କୋବିଦେ ହେ । କର ଏ ଆଜ୍ଞା ସାଧୁଜନ । କୃଷ୍ଣ ଚରଣେ ରହୁ ମନ । କରି ଦନ୍ତରେ ତୃଣ ଧାରଣ ମାଗୁଅଛୁ ତୁମ୍ଭ ସଙ୍ଗରେ ଯାଉ ଦିନ ହେ । ୨୫ ।



---

୨୩ । ୨—ଦ୍ଧଷାନ୍ ହବପାଟନ ଚୋଓନୂଟହ ଚଯସଟନ, ଚଠମନ୍ତ ଚଉ ସାଧୂଙ୍କର ଚହ

# ନବମ ଛାନ୍ଦ



ରାଗ—ନାଟକେଦାର

କୃଷ୍ଣ ଭକ୍ତିଙ୍କର ହୃଦ-କୁମୁଦ । କଳୁଷ ନାଶନେ କୁଆଁର ଚାନ୍ଦ ଯେ ।
କୋବିଦେ ଏହି ଛାନ୍ଦକୁ ଚାଲ । କୁମୁଦ ହୃଦୟ ହେଉ ପ୍ରଫୁଲ୍ଲ ଯେ ।୧।
କରିଥାନ୍ତି ପ୍ରେମଯୋଗିଏ ଥାଳ । କର୍ଣ୍ଣେ ଶୁଣି ନେତ୍ରୁ ବହଇ ଜଳ ଯେ ।
କୋବିଦେ ତନୁ ହୋଏ ନିର୍ମଳ । କଳୁଷକୁଳ ନାଶନ୍ତି ସକଳ ଯେ ।୨।
କର୍ଣ୍ଣରେ ଉତ୍ତମ ରସିକେ ଶୁଣ । କୃଷ୍ଣ ରସାର୍ଣ୍ଣବ ଲହରୀ ଗୁଣ ଯେ ।
କରନ୍ତେ ଶ୍ରୁତିଯୁଗଳେ ପାନ । କୃତାର୍ଥ ଜୀବ ଅଘ ବିମୋଚନ ଯେ ।୩।
କୁଞ୍ଜବିହାରୀ କୁଞ୍ଜରେ ବିହାରି । କରି ମାରିଲେ ଅନେକ ଅସୁର ଯେ ।
କଳାକ କଂସ ମନେ ବିଚାରି । କରେ ପତ୍ର ଲେଖି ପେଷିଲା ଚାର ଯେ ।୪।
କାଳିନ୍ଦୀରେ ଶତଦଳ କମଳ । କୃତ୍ତିବାସଙ୍କୁ ଦେବେ ମହୀପାଳ ଯେ ।
କହଇ ନନ୍ଦଅଗେ ଉଗର । କଲେ ହେଲା ହେବୁ ନଗ୍ର ବାହାର ଯେ ॥
କର୍ଣ୍ଣେ ଶୁଣି ନନ୍ଦ ମନରେ ଚାଲ । କାଳିନ୍ଦୀହ୍ରଦରେ ଅଛଇ କାଳୀ ଯେ ।
କମଳ ଅଛି ବିଷଅନଳରେ । କେହି ଉଦ୍ୟେ ନ ପଶନ୍ତି ଜଳରେ ଯେ ।୬।
କାରଣ୍ଡବ ଆଦି ହଂସ ସାରସ । କେହି ଜଳ ଜନ୍ତୁ ନ କରି ବାସ ଯେ ।
କେମନ୍ତେ ଯାଇ ଆଣିବି ଫୁଲ । କରେ ବିପତ୍ତିତ ଆଜ୍ଞା ଭୂପାଳ ଯେ ।୭।
କର୍ଣ୍ଣେ ଶୁଣିଲେ ଦେବକୀନନ୍ଦନ । କାଳିନ୍ଦୀ-ଜଳ-କଲ୍ଲୋଳ-ରଙ୍ଗିଆ ଯେ
କହନ୍ତି ତାତ କପାଇଁ ଚାଲ । କର ଆଜ୍ଞା ମୁଁ ଆଣିଦେବି ଫୁଲ ଯେ ।୮।

---

୪ । ୧—କୃଷ୍ଣଙ୍କ—ଗୋପରେ
୭।୨—ହ୍ରଦରେ ଜଳରେ

କହୁଣ କାଳନ୍ଦୀକୂଳକୁ ଯାଇ । କଦମ୍ବକାଣ୍ଡପରେ ଉଠି ହୋଇ ଯେ ।
କାଳନ୍ଦୀଜଳେ ପଡ଼ିଲେ ଡେଇଁ । କଲ୍ଲୋଳ ଉଠିଲା କଳ ବୁଡ଼ାଇ ଯେ ॥
କର୍ଣ୍ଣେ ଶୁଣି କାଳୀ ହେଲା ବାହାର । କୋପେ ଗର୍ଜ୍ଜଇ କରି
ଫୁଫୁକାର ଯେ ।
କମଳ ପାଦେ ଦଂଶିଲା ଯାଇ । କୋପଭରେ ଅଙ୍ଗେ ଅଙ୍ଗ ଛନ୍ଦଇ ଯେ ।
କବି ବର୍ଣ୍ଣିବ କଳ୍କ ମନରେ । କଳା କମଳ ମର୍କତଶମ୍ଭୁରେ ଯେ ।
କଵଣ ମାଳ ବିରଞ୍ଚି ରଚି । କିବା ଇନ୍ଦୀବରେ ବେଢ଼ ଦେଇଛି ଯେ ।୧୧।
କଳାଘନାଘନ କଜ୍ଜ୍ୱଳ ଗିରି । କି ରଙ୍ଗେ ବେଢ଼ିଛୁ ହରିକ ହରି ଯେ ।
କହିଲେ ନେଏଁ ଗଳଇ ଜଳ । କର୍ଣ୍ଣେ ଶୁଣି ସାଧୁଜନେ ବିକଳ ଯେ ॥
କାୟା ବିସ୍ତାର କଲେ ବେଣୁଧର । କାଳବନ୍ଧନ ଫିଟିଲା ପନ୍ନର ଯେ ।
କାଳିନ୍ଦୀ କାନ୍ତ ବିଜେ ଫଣାରେ । କରୁଛନ୍ତି ନୃତ୍ୟ ନାନାରଙ୍ଗରେ ଯେ
କଳା ଘନାଘନ କାଳେ ତାଣ୍ଡବ । କରଇ ଯେମନ୍ତ ମଧ୍ୟପାଣ୍ଡବ ଯେ ।
କରନ୍ତି ହରି ସେପରି ନୃତ୍ୟ । କାଳୀୟ ପ୍ରାଣ ହେଲା କଣ୍ଠାଗତ ଯେ ।
କାଳୀ ସ୍ତୁତିକଲା ଶୁଣ ଶ୍ରୀହରି । କପାଁ ଜନ୍ମ କଲୁ ଉରଗ କରି ଯେ ।
କେମନ୍ତେ ଯିବ ସ୍ୱଭାବ ମୋର । କରୁଣାସାଗର ଉଷ୍ଣରଧର ଯେ ।୧୫।
କାକୋଦରକୁ ଆଜ୍ଞା ଦେଲେ ହରି । କାଳୀଉତ୍ତମାଙ୍ଗପରୁଁ ଉତ୍ତୁରି ଯେ
କରି ଯା ବିଜେ ରତ୍ନାକରକୁ । କଷ୍ଟ ଭୟ ନାହିଁ ବିନାୟକକୁ ଯେ ।୧୬।
କର୍ଣ୍ଣେ ଶୁଣି କାଳୀ ବିଜେ ଚଳିଲା । କାଳନ୍ଦୀ ହ୍ରଦେ ପଶିଲେ
ଗୋପାଳ ଯେ ।
କର୍ଦ୍ଦନ କରି ତୋଳିଲେ ଫୁଲ । କର୍ଣ୍ଣେ ଶୁଣି ଗୋପୀ ହେଲେ
ବିକଳ ଯେ ।୧୭।
କହଇ ଥିଲ ଅଳକ ଅନାଇ । କଦର୍ଥନା ହୋଇ କମଳମୁହିଁ ଯେ ।
କାଳନ୍ଦୀହ୍ରଦେ ଶ୍ରୀ ବନମାଳୀ । କମଳ ତୋଳନ୍ତେ ଦଂଶିଲା କାଳୀ ଯେ ॥
କହେ ପ୍ରେମା ଶୁଣ ପ୍ରେମମଞ୍ଜରୀ । କୃଷ୍ଣପ୍ରିୟା ଆଦି ଯେତେକ ନାରୀ ଗୋ

କହିବା ଶୁଭ ଚନ୍ଦ୍ରାବଳୀଙ୍କେ । କରନ୍ତୁ ଶ୍ରଦ୍ଧା ଚନ୍ଦ୍ରମଣ୍ଡଳଙ୍କେ ଯେ । ୧୯ ।
କନକକୁସୁମ ଚମ୍ପା ଗନ୍ଧପ । କୃତ୍ତିବାସ ବିଷ କରନ୍ତୁ ନାଶ ଗୋ ।
କହିବା ପଞ୍ଚାମୃତେ ସ୍ନାହାନ । କରି ଲକ୍ଷେ ବେଲପତ୍ର ମଣ୍ଡନ ଗୋ ।୨୦
କୁନ୍ଦଲତା ପ୍ରେମେ କହେ ବୃନ୍ଦାକୁ । କରେ ଧରିଲେ ଯେ ପାଣିମାନଙ୍କୁ ଗୋ
କାନନେ କଲେ ବେଚଣ୍ଡ ଗ୍ରାମ । କି କରିବ ତାଙ୍କୁ ଦାରୁଣ ବିଷ
ଗୋ । ୨୧ ।
କାଳୀପତି ସେବି କାଳନ୍ଦୀପତି । କରିଥାଇ ପତି କରି ସମ୍ପତ୍ତି ଗୋ ।
କେ ବୋଲେ ପ୍ରତେ ନାହିଁ ମୋହର । କେ ବୋଲେ ଏ ସ୍ତୁତି କଥାକୁ
ଡର ଗୋ । ୨୨ ।
କହି ଶୁଭ କନ୍ୟା ରାଧା ଆଗରେ । କହିଲେ ମଣିମା ଶୁଣିମା ଧୀରେ ଯେ ।
କାଳନ୍ଦୀ ହ୍ରଦେ ଶ୍ରୀବନମାଳୀ । କମଳ ତୋଳନ୍ତେ ଦଂଶିଲା କାଳୀ ଯେ ।
କଲେ ରାଧା ଶ୍ରଦ୍ଧା ମଦନ ଶୂଳଙ୍କେ । କରିବି ମଣ୍ଡଣ ବନମାଳଙ୍କ ଯେ ।
କପର୍ଦ୍ଦିଜୂଟେ ଶିବଗ୍ରନ୍ଥିକ । କରିବି ମଣ୍ଡଣ ବନମାଳୀକ ଯେ । ୨୪ ।
କର୍ଣ୍ଣେ ରାଧାଶ୍ରଦ୍ଧା ଶୁଣି ମୋହନ । କାଳନ୍ଦୀରୁ ବାହେଜ ଗୋପୀଙ୍କ ଧନ ଯେ
କାଳୀୟଅହିନାମକୁ ବନ୍ଧି । କାଳନ୍ଦୀ ଜଳ ମୁକତ କରାଇ ଯେ । ୨୫ ।
କଲେ ନନ୍ଦ ନାନାପ୍ରକାରେ ଦାନ । କେ କହିବ ଗୋପୀ ଆନନ୍ଦ ମନ ॥
କହନ୍ତି ପ୍ରେମା ରାଧା ଆଗେଗଣ । କାଳନ୍ଦୀରେ ଶୁଭ କରିବା ସ୍ନାନ ଗୋ ।
କୁଙ୍କୁମ ଅଙ୍ଗୁଳା ଯେବେ ସଜନୀ । କରନ୍ତୁ ବ୍ରଜସ୍ତ୍ରୀ ଗୋପକାମିନୀ ଯେ ।
କହନ୍ତି ହାସରସରେ ରାଧା । କୃଷ୍ଣବର୍ଣ୍ଣ ଜଳେ ମୋର ଶରଧା ଗୋ ॥
କାଳନ୍ଦୀରେ ଯଉଁ ଦିନ ମୋହନ । କାଳୀ ଘଉଡ଼ିଲେ ଗୋପୀଙ୍କ ଧନ ।
କି ସ୍ନେହ ଥାଇ ସ୍ନାନେ ମୋହର । କୃଷ୍ଣ ଅଙ୍ଗନରେ ଥିବାକୁ ଡର ଯେ ।
କେ ବୋଲେ ଆମ୍ଭ ଡର ତାକୁ ଏକା । କଦମ୍ବମୂଳେ ଥାଇ ଗିରିଟେକା
ଯେ ।
କି ରଙ୍ଗେ ପରିହାସ କରଇ । କୁଚ ହେମସମ୍ପ ଟେକ ଦେଖଇ ଗୋ ।

କହିଲେଖ ମୃଗଇନ୍ଦ୍ର କଟିରେ । କଲକଣ୍ଠଗତ ଲେଖ ଗତରେ ଯେ ।
କୁନ୍ତଳ ଲେଖେ କୃଷ୍ଣ ଭ୍ରମର । କମାଣ ଭ୍ରୂଲତା କଟାକ୍ଷଶର ଯେ ।୩୦।
କେ ବୋଲେ ସଜନୀ କର୍ପାଁ ଉଭିବା । କରମ୍ବିତେ ବାହୁପାଶେ ଧରିବା ଗୋ।
କୁଞ୍ଜକୁ ନେବା ସବୁ ସଜନୀ । କଲେ ଶଙ୍କା ମନେ ରହିବ ପୁଣି ଗୋ ॥
କେ ବୋଲେ ନ କର ଏମନ୍ତ ବୁଦ୍ଧି । କୁଞ୍ଜମଧ୍ୟରେ ଶିଳୀମୁଖ ବନ୍ଦୀ ଯେ
କଲେକି ମନ ହୁଏ ଆନନ୍ଦ । କୁଞ୍ଜବନୋଦ୍ଧଆ ହେବେ ପ୍ରମୋଦ ଯେ ।
କଉତୁକେ ହାସରସ ବଚନ । କହି ରାଧା ଅଟେ ଆନନ୍ଦ ମନ ଯେ ।
କରିବା କାଳିନ୍ଦୀରେ ସ୍ନାହାନ । କର ମଣିମା ଆଜ୍ଞା ଅବଧାନ ଯେ । ୩୩।
କାଳୀମର୍ଦ୍ଦନ ପଦ୍ମପାଦ ଧ୍ୟାନ । କବି କୃଷ୍ଣଜର ଘବେ ଭଣଇ ଯେ ।
କୋବଦେ ଅଘ ହେବ ବିନାଶ । କୃଷ୍ଣ ମଦ୍ଦୀାଦେ ଜାରତେ ରସ ହେ ॥



## ଦଶମ ଛାନ୍ଦ



### ରାଗ—ସାରଙ୍ଗ

କମଳନୟନା ରାଧା କାଳନ୍ଦୀରେ ସ୍ନାନ । କରନ୍ତ ଯେଉଁଏ ସଙ୍ଗେ ଘେନ ସଖୀଗଣ । କେଉଁ ଉତ୍ସାହ ମନରେ । କବ ହୋଇ ବର୍ଣ୍ଣି କେ ପାରିବ ଲପନରେ । ୧ ।

କଳା ଘନାଘନ ପ୍ରାଏ ସୁବାସ ଚକୁର । କ ଶୋଭା ଚୂର୍ଣ୍ଣ କୁନ୍ତଳ ଦଶେ ମନୋହର । କଞ୍ଚିତ ସ୍ନେହ ଲଗାଇ । କସ୍ତୁରୀ କଙ୍କତିକା ଗ୍ରନ୍ଥିଛନ୍ତ ତହିଁ । ୨ ।

କାଳନ୍ଦୀକଲ୍ଲୋଳେ କ ଏ ଚନ୍ଦ୍ରକାନ୍ତ ଘସେ ! କବା ଜାନକୀରେ ଶୁକ୍ଳ ସୁମନ ପ୍ରକାଶେ । କାନ୍ତ ଜୁଡ଼ାର ଯତନ । କାମକାର୍ଯ୍ୟ ନକେତନ ବନ୍ଦୀ ହେବେ ମୀନ । ୩ ।

କନକ କାଠିରେ ଶୋଭା ମାଣିକର ଝରା । କର୍ଣ୍ଣରେ ଖଞ୍ଜିଲେ ଆଲୀ ଦଶେ କେଉଁ ଚୋରା । କାମ ଛ ଲୁଙ୍ଗ ପରାଏ । କାମୀହୃଦେ ପଡ଼ ହୃଦ ଦହନ କରାଏ । ୪ ।

କୁନ୍ଦନ ଗ୍ରୀମୀକ ଗୋପୀବଲ୍ଲଭ ସଙ୍ଗର । କମ୍ବୁକଣ୍ଠେ ଗ୍ରୀପସର ଶୋଭା ମୋତହାର । କୃଷ୍ଣଚନ୍ଦ୍ର ମନୋହାରୀ । କବ ବର୍ଣ୍ଣିବାକୁ ଲକ୍ଷ୍ୟ ନାହିଁ ତନ ପୁରୀ । ୫ ।

କୁଣ୍ଡଳର ହାର ଜଣି କରକରଦମୀ । କୃଷ୍ଣଚନ୍ଦ୍ର-ମନ-ଧନ କୈବଲ୍ୟଦାୟିନୀ । କର୍ଣ୍ଣଗତ ଜବାଧରୀ । କନକକେତକୀ ଜଣି ଦଶନ୍ତ ଗଉରୀ । ୬ ।

କୁଣ୍ଡଳ ହେମନାସାରେ ମୁକୁତା ବସଣି । କାମ କି ବଡ଼ଶୀଥୋଇ ମେଲିଥିଛି ଆଣି । କାମୀମନମୀନଧରି । କଣ୍ଟେ ଆକର୍ଷି ନାଏ ଗତି କରି ତୋଷି । ୭ ।

କଞ୍ଜନ ସାରଙ୍ଗ ଜିଣି ଭ୍ରୂଲତା ଭୂଷର । କୁରଙ୍ଗୀନୟନେ ଶୋଭି କଜ୍ଜ୍ୱଳର ଗାର । କାନ୍ତ ଖଞ୍ଜନ ବନ୍ଧଣ । କଟକେ ଲଗିଛି ଲଞ୍ଜି ମୋହି-ନାଏ ମନ । ୮ ।

କପୋଳସିନ୍ଦୂର ବାଳହର ନିନ୍ଦା କରେ । କି ଶୋଭି ଛନ୍ଦ-ଭ୍ରମର ଯୋଜନଗନ୍ଧାରେ । କରିଅଛନ୍ତି ଲେଖନ । କଞ୍ଚନେନ୍ଦୀ ଗଣ୍ଡସ୍ଥଳ ଦଶେ ଶୋଭିବନ । ୯ ।

କମଳଚରଣେ ଶୋଭି ମଣିର ମଞ୍ଜୀର । କଳ୍ପିଗଜଗତି ଗତି କରିବାରେ ଧୀର । କରେ ଧ୍ୱନି କି ମଧୁର । କାମୀଜନମାନଙ୍କର କର୍ଣ୍ଣ-ରସପୂର । ୧୦ ।

କାମିନୀସମୂହମଧ୍ୟେ ଶୋଭି ଚନ୍ଦ୍ରାବଳୀ । କି ପୂର୍ଣ୍ଣଚନ୍ଦ୍ରକୁ ବେଢ଼ି ନକ୍ଷତ୍ରମଣ୍ଡଳୀ । କରୁଅଛନ୍ତି ଗମନ । କାନ୍ତ ଗୃହିଁ ଅପବର୍ଗ ଲଭନ୍ତି ସୁଜନ । ୧୧ ।

କୋମଳଶିରୀଷଅଙ୍ଗୀ ଯୋଜନଗନ୍ଧାକୁ । କବି କି ବର୍ଣ୍ଣିବ ଅପଦନ୍ତ୍ୟକ୍ଷମାକୁ । କାନ୍ତ ଉପମା ଦେବାରେ । କି ଉପମା ଦେବା ଆଉ ନାହିଁ ତିନି ପୁରେ । ୧୨ ।

କଳକଣ୍ଠବାଣୀ ଜିଣି ବୀଣାରୁ ମଧୁର । କୋମଳ ଲଳିତ ଭାଷା ଶ୍ରୁତି [illegible]ନୋହର । କଉତୁକ କଥା କହି । କାଳନ୍ଦୀକୂଳେ ପ୍ରବେଶ ହେ[illegible]ଗାଇ । ୧୩ ।

କହନ୍ତ ରାଧା କୂଳକୁ ଅନାଇ ଗୁଆଳୀ । କୁଳାଙ୍ଗନାପ୍ରାଏ କୂଳ-ଶୋଭା ଦଶେ ଆଳୀ । କୁନ୍ଦ ମଲ୍ଲିକା ନଆଳୀ । କରନ୍ତ ବିକାଶି ବାସ କର୍ପୂରକୁ ବଳ । ୧୪ ।

କୃଷ୍ଣପ୍ରେମଭକ୍ତ ଜନ ହୃଦୟ ନିର୍ମଳ । କମଳ କମଳ ବେନି ତେମନ୍ତ ଉଜ୍ଜ୍ୱଳ । କାନ୍ତ ତମାଲ ବରଣ । କି ଶୋଭା ଦଶଇ ଦେଖ କାଳନ୍ଦୀର ବନ । ୧୫ ।

କଳାକମଳରେ ବନ କି ବନ ଦଶଇ । କୁମୁଦ ବିକାଶି ଦେଖ କୁମୁଦ କରଇ । କୂଳେ ଘନ ପୁଷ୍ପ ତରୁ । କୁସୁମସୁବାସେ ଅଳି ବେଢ଼ିଛନ୍ତି ଘେରୁ । ୧୬ ।

କହନ୍ତେ ସହଚରୀ ରାଧାଆଗେ ପ୍ରାଣଧନ । କେତେକାନ୍ତ ପ୍ରୋଷିତ-ଭର୍ତ୍ତୃକାପ୍ରାଏ ବନ । କେଡ଼େ ମଳିନ ଜୀବନ । କାଳୀୟ ଭୟରୁ କେହ୍ନ ନ କରନ୍ତ ପାନ । ୧୭ ।

କୃଷ୍ଣ ଅଙ୍ଗ ଲାଗି ଏବେ ନିର୍ମଳ ହୋଇଲା । କାକୋଦର-ଦର ଯାଇ କାନ୍ତ ବିକାଶିଲା । କେଡ଼େ ଅଟଇ ମନୋହର । କରକରଦଣ୍ଡ ଧୀରେ ଅନା ନାଗ୍ରବର । ୧୮ ।

କୁନ୍ଦଲତା କହେ ସଖୀ ଶୁଣ ଗୋ କାଳନ୍ଦୀ । କି ଶୋଭା ଦଶନ୍ତ ତୁମ୍ଭ ସଙ୍ଗାତ କାଳନ୍ଦୀ । କେଡ଼େ ପ୍ରସନ୍ନ ବଦନ । କୃଷ୍ଣ ଆଗମନେ ଆଶା ରଖିଛନ୍ତି ମନ । ୧୯ ।

କେ ବୋଲେ ବାସକଶଯ୍ୟା ପରାଏ ଦଶଇ । କୃଷ୍ଣପଦ୍ମପାଦେ ଚିତ୍ତ ଲଗାଇଛନ୍ତି ସଖୀ । କରି ନିରତରେ ଧ୍ୟାନ । କମଳମାଳରେ ଦେଖ ଦିଶେ ଶୋଭାବନ । ୨୦ ।

କହନ୍ତ ପ୍ରେମରେ ପ୍ରେମା ଦୂତୀକର ଧରି । କଳା ଘନାଘନ ପ୍ରାଏ ଦିଶଇ ଏ ବାରି । କୃଷ୍ଣ ଅଙ୍ଗ ଲାଗି ସଖି । କାନ୍ତିକ ଅନାଥ କେତେ ଭୂଷିର ଦିଶଇ । ୨୧ ।

କର୍ପୂର ଚନ୍ଦ୍ର ଚନ୍ଦନରୁ ଅଟଇ ଶୀତଳ । କଲେ ସ୍ନାନ ଅଙ୍ଗଦାହ ଯିବ ଗୋପୀକୁଳ । କାମ୍ୟା ଶୁଣିବନ୍ତ ହେବ । କଲେ ମିହ ନମସ୍କାର କାମନା ପୂରିବ । ୨୨ ।

କଉତୁକେ ହାସରସ ବଚନକୁ କହି । କଞ୍ଜନେଣୀ କାଳନ୍ଦୀରେ ପଶିଲେକ ଯାଇ । କରୁଅଛନ୍ତି ସ୍ନାହାନ । କୁଙ୍କୁମ ଅଏଲା ଅଙ୍ଗେ କରିଣ ମର୍ଦ୍ଦନ । ୨୩ ।

କରି ଅବଗାହ ଜନ୍ତୁ ବାହାର ଗୋପେଣୀ । କୂଳେ ବସନ ପିନ୍ଧିଲେ ବରଜକାମିଣୀ । କରବେନ ଶିରେ ଦେଇ । କଲେ ମିହପୂଜା ଦିବାକରଙ୍କୁ ଅନାଇ । ୨୪ ।

କୃଷ୍ଣସଙ୍ଗ ରଙ୍ଗ ନୋହୁ କାମନା ଆମ୍ଭର । କରୁଣା କରିଣ ବର ଦିଅ ଦିବାକର । କୃପା କର ବନମାଳୀ । କରୁଣାସାଗର ବର ଦେଉ ବନମାଳୀ । ୨୫ ।

କଲେ ଗୋକୁଳକୁ ବିଜେ ବରଜବନିତା । କନକବଲ୍ଲୀପ୍ରାଏ ଶ୍ରୀଅଙ୍ଗ ଶୋଭିତା । କରୁଅଛନ୍ତି ଗମନ । କଞ୍ଜ ସ୍ଥଳେ ବିକାଶିତ ପଦ୍ମଏ ଚରଣ । ୨୬ ।

---

୨୪ । ୪—ବଲେ ମିତ୍ରପୂଜା—ବରୁ ନ ମଦା ।
୨୫ । ୩—ବନମାଳୀ—ଅଂଶୁମାଳୀ ।

କୃଷ୍ଣକଥା କହୁ କୃଷ୍ଣଗୁଣମାନ ଗାଇ । କୃଷ୍ଣଜଗତରେ ଖେଳ ହୋଇ ବ୍ରଜଗୋଈ । କେତେ ଆନନ୍ଦିତ ହୋଇ । କୃଷ୍ଣପଦ୍ମପାଦେ ପ୍ରେମ-ବଣଷୀ ଲଗାଇ । ୨୭ ।

କେ କହିବ ତାଙ୍କ ଭାଗ୍ୟ ନରଦେହ ବହି । କୋଟି କଳ୍ପାନ୍ତରେ ଯୋଗୀ ଭେଟ ଯାକୁ ନାହିଁ । କୋଳେ ଧରନ୍ତି ଗୋପେଣୀ । କମଳ-ହୃଦରେ ଆଲିଙ୍ଗନ ଦେଉନ୍ତି ଯେଣି । ୨୮ ।

କଣ୍ଠଦେଶେ ବନମାଳୀ ମାଳ ଲମ୍ବାଇଣ । କମଳବଦନେ ନେଇ ଦିଅନ୍ତି ଚୁମ୍ବନ । କରୁଥାନ୍ତି ସୁଧାପାନ । କେତେ କଉତୁକେ ଗୋପୀ ବଞ୍ଚୁଥାନ୍ତି ଦିନ । ୨୯ ।

କହେ ଦାସ କୃଷ୍ଣ କର ଶ୍ରୀମଣିଚରଣ । କରି ଧ୍ୟାନ ନିରନ୍ତରେ ଯାଉ ମୋ ର ଦିନ । କୃପା କର ସାଧୁଜନ । କର ଯୋଡ଼ି ଭୂମ୍ୟପାଦେ କରୁଛି ଜଣାଣ । ୩୦ ।



୩୦ । ୨ ଶ୍ଳୋକ ଦିନ—ମୋ ଜୀବନ ।

## ଏକାଦଶ ଛାନ୍ଦ



### ରାଗ—ବଙ୍ଗଳାଶ୍ରୀ

କର୍ଣ୍ଣେ କୃଷ୍ଣକଥା ଶୁଣ ସାଧୁଜନେ କଲ୍ମଷ ହେଉ ବିନାଶ ।
କୃଷ୍ଣ କୁଞ୍ଜେ କୁଞ୍ଜବିହାର କରନ୍ତେ ହିମଋତୁ ପରବେଶ ।୧।
କନକାଚଳୁଁ ଚଳିଣ ହିମାନିଳ ପ୍ରଚରିଲା ଦଶ ଦିଶ ।
କଲି ଚନ୍ଦ୍ରଭାନୁ ଭାନୁର କିରଣ ଏକାଳେ ବଡ଼ ଉଲ୍ଲାସ ।୨।
କେତେ ଶସ୍ୟଦାୟୀ ହୋଇଛନ୍ତି ଅବନୀ ଦେଖିଣ ଆନନ୍ଦ ମନ ।
କହନ୍ତି ମୁନିମାନେ ମାର୍ଗଶୀରକୁ ସବୁମାସୁଁ ଶ୍ରେଷ୍ଠ ଜାଣ ।୩।

କମଳ ହୋଇଲା ଅନଳ ପରାଏ ଅନଳ ହେଲା କମଳ ।
କେତେ ବିପରୀତ ଅଟଇ ଏ କାଳ ମନରେ କୋବିଦେ ଭାଳ ।୪।
କରମାଳୀ-କର ଶୀତଳ ହୋଇଲା ନୀହାର ପଡ଼ିଲା ଝଡ଼ି ।
କଳେବରମାନ ଶୀତରେ କମ୍ପିଲା କଞ୍ଜବନ ଗଲା ପୋଡ଼ି । ।

କମଳରେ ଥାଇ କମଳ ବିନାଶ ହେବାରୁ କର୍ମ ଲେଖନ ।
କବି ବିଚାରଇ କୁଶକେତୁଗାର କେବେହେଁ ନୋହେ ମେଣ୍ଟଣ ।୬।
କାଳୀ ଆସନ କରିଥାନ୍ତି ଯହିଁରେ କପର୍ଦ୍ଦୀ ଜଟା ମଣ୍ଡନ ।
କର୍ମରେ ଅକର୍ମଦାୟୀ ନୀଳକଣ୍ଠ କର୍ମକୁ ନ କଲେ ଆନ ।୭।

କର୍ମସୁବେଳରେ ସମସ୍ତେ ସପକ୍ଷ ସଂସାରେ ଯେତେକ ଜନ ।
କର୍ମହୀନେ କେହି କାହାର ନୁହନ୍ତି କୋବିଦେ ଶତ୍ରୁର ଘେନ ।୮।
କ ଶୋଷ ସାରଙ୍ଗକରଣ ସାରଙ୍ଗକାଳେ ଅମୃତ ହୋଇଲା ।
କେତେ ଶୀତଳ ଚନ୍ଦ୍ରସଙ୍କ ଅଗର କର୍ମାଣେ ସମ ନୋହିଲା ।୯।

କି କରକୁ ଉଷ୍ମ କରି କେଉଁଜନେ ନୂତନ ଅମ୍ବର କଲେ ।
କିଛି ତୈଳବନ୍ତ ଗ୍ରୀଷ୍ମାଦେଖି କାନ୍ତ ହୋଇ ଦକ୍ଷିଣେ ଉଇଁଲେ । ୧୦ ।

କେ ଶୀତଉଷ୍ମରେ ସଦନଭିତରେ ଶିଖୀ-ଶିଖା ଉଦେ କଲେ ।
କେହୁ କଳେବର କମ୍ପାଇ ଶୀତରେ ଉତ୍ତମାଙ୍ଗେ ପାଣି ଦେଲେ । ୧୧ ।

କେ ବାହୁଯୁଗଳ ଛନ୍ଦ ହୃଦସ୍ଥଳ କାତରେ କମ୍ପିଲ ତନୁ ।
କେତନପତ୍ରଏ ବସ୍ତ୍ର ହୁଅନ୍ତେ ଅଗ୍ରେ କଲ ଶଯ୍ୟାନୁ । ୧୨ ।

କେବଣ କୁନ୍ଦନଅଙ୍ଗୀ ଯାମିନୀରେ ଶୀତେ ଉଷ୍ମ କରି ତନୁ ।
କାନ୍ତକୋଳ ଅଗ୍ରେ କରି ହେମଗୋଷ୍ଠୀ ହିମ ଦୂର କଲି ମନୁ । ୧୩ ।

କେଉଁ ରସିକ ମନୋଦଶା ଭିତରେ ମନେ ମଧୁ ଚିନ୍ତା କରି ।
କୋନ୍ଧି କଲ୍ପ ହିମଶର୍ବରୀ ମଣିଲ ନ ପାଇ ହେମଗଉରୀ । ୧୪ ।

କେ ଉନ୍ମତ୍ତେ ମାତି ଅପଣାର ଗ୍ରୀତି କରି ପଲଙ୍କ ସୁପାତି ।
କାନ୍ତାମଣିଙ୍କ ଚହିଁରେ ପହୁଡ଼ାଇ କଞ୍ଚିତ ମଣିଲ ରାତି । ୧୫ ।

କେଉଁ ପ୍ରେମଶୀଳା ସାରଙ୍ଗରେ ହେଲା ହୋଇ କାନ୍ତାପାଶେ ଯାଇ ।
କରି ଆଲିଙ୍ଗନ ମଧୁରସ ପାନ ଶ୍ରୀମୁଖରେ ଚୁମ୍ବ ଦେଇ । ୧୬ ।

କେବଣ ଆଳୀର ପୂରେ ବନମାଳୀ ବିଜେ କଲେ କ୍ଷଣଦାରେ ।
କଲେ ରତିଲୀଳା ସେ ତ ପଦ୍ମଡୋଳା କଳାବତୀ ସଙ୍ଗତରେ । ୧୭ ।

କେଉଁ ହରିଣୀକ-ଧର ଅନଙ୍ଗକ ପରିହାସ ବାଣୀ କହି ।
କଳେବର ଶୀତେ କମ୍ପଇ ମୋହର କୋଳ କର ପ୍ରାଣସଖୀ । ୧୮ ।

କହେ ଗୋପୀ ବାଣୀ ଶୁଣ କମ୍ବୁପାଣି ଶୀତକୁ କପାଇଁ ଡର ?
କରି ଆଲିଙ୍ଗନ କୋଳେ ବସ ଆସି ମୋ ତନୁ ନବ ମାଣାର । ୧୯ ।

କହି ସ୍ୱନମୁହାଁ କୋଳ କଲ ଯାଇ ହୃଦରେ ହୃଦ ଲଗାଇ ।
କନ୍ଦର୍ପରେ ମାତି ହାସ ପରିହାସେ ହିମରଜନୀ ବଞ୍ଚଇ । ୨୦ ।

କାହା ସାରଙ୍ଗରେ ସାରଙ୍ଗକରକୁ ଦେଇଣ ସାରଙ୍ଗଧର ।
କରୁଅଛୁ ସେବା ବର ଦେବେ ଅବା ରସିକା ନାଗରୀବର । ୨୧ ।
କଉତୁକ କହି ସେଠାରୁ କହ୍ନାଇ ବଜାଏ ବଂଶୀବଦନ ।
କଉଁ ହେମଗୋରୀ କର୍ମଠକୁ ଧରି କର୍ମଠ ଦେଲେ ମୋହନ । ୨୨ ।
କରିଛୁ ଅଦୃଷ୍ଟରଜା ଦନୁ ଆଶା ଅଦୃଷ୍ଟରେ ନାହିଁ ମୋର ।
କୁଜନ୍ନଟିକ ଡର ନୋହିବାରୁ ଚୋର ଜାଣିଲୁ ତୁ ତ ଅନ୍ତର । ୨୩ ।
କୃଷ୍ଣବାଣୀ ଶୁଣି ବୋଲଇ ଗୋପିକା କାକରକୁ ଯେବେ ଡର ।
କରି ଆଲିଙ୍ଗନ ଆନନ୍ଦେ ଚୁମ୍ବନ ଦେଇ ଅଙ୍କେ ବସେ କର । ୨୪ ।
କହନ୍ତି କହ୍ନାଇ ଆରେ ପ୍ରାଣସଖୀ ତୁ ମୋର କଣ୍ଠମଣ୍ଡନ ।
କଉଁ ସୁଖଦାତା ନୋହୁ ହୃଦୟର ବ୍ୟତମମଧ୍ୟ ଲେଖନ । ୨୫ ।
କାହାକୁ ଅନାଇ ବୋଲନ୍ତି କହ୍ନାଇ ତୁ ମୋ କର୍ଣ୍ଣନକାଷର ।
କେତେବେଳେ ଘୃଣା ନ କରିବୁ ଶୁଣ ଘୃଣାନିଧାନୀ ମୋହର । ୨୬ ।
କହି ବ୍ରହ୍ମବାଣୀ କୁଚେ ବେନି ପାଣି ଦେଇ କଲେ ଆଲିଙ୍ଗନ ।
କଞ୍ଜବଦନରେ ହେମ୍ବଚୁମ୍ବ ଦେଇ ମେଲାଣି ମାଗି ବହନ । ୨୭ ।
କରନ୍ତେ ଗମନ ସାରଙ୍ଗବଦନ ସାରଙ୍ଗମୁଖୀ ସାରଙ୍ଗେ ।
କରିଛନ୍ତି ବନ୍ଦୀ ସାରଙ୍ଗଧରକୁ କଉତୁକ ନାନାରଙ୍ଗେ । ୨୮ ।
କବ ବଣୁରଇ ସଂସାରଣ୍ଡତରେ ପ୍ରୀତିଠାରୁ ବଡ଼ ନାହିଁ ।
କଞ୍ଜେ ମଧୁକର ମଧୁରେ ସରଘା ପ୍ରାୟେ ରହିଲେ କହ୍ନାଇ । ୨୯ ।
କଲେ ବ୍ରଜପୁରେ ଯେତେ ଲୀଳାରଙ୍ଗ ଆଶ୍ରିତଙ୍କ ପୁରେ ନର ।
କେ ଅବା ଶତରେ ଶତୋଇ କହିବ ନରକଲେବର ଧରି । ୩୦ ।
କାମ ଶାସ୍ତ୍ରାସ୍ତ୍ରକୁ ଗୋଚର ନୁହଇ କେ ଅବା ଜାଣିବ ତାହା ।
କଳାକରମୁଖୀ ଗୋପୀଙ୍କ ସଙ୍ଗରେ ଯାହା କଲେ ଚଉବାହା । ୩୧ ।

---

୨୧ । ୧—ତାହା ଲୁଚଣ୍ଡ ଶିରେ ପଦ୍ମକର ଦେଇ ରସିକ ନାଗର ।
୩୦ । ୧—ଅଶ୍ରିତଙ୍କ ପୁରେ—ଅଶ୍ରିତଙ୍କ ସଙ୍ଗେ

କର ମଧୁବନେ ସାରଙ୍ଗରସକୁ ସାରଙ୍ଗଶେଷରେ ହର ।
କଉଁ କନକବରଣୀପୂରେ ଯାଇ କହନ୍ତ ତମାଳୀ କର । ୩୨ ।
କରୁଥାନ୍ତ କେଳି ଏହ୍ନ ପରକାରେ ନବରଙ୍ଗ ନଟବର ।
କମ୍ବୁକଣ୍ଠୀପୂରେ କ୍ଷଣଦାକାଳରେ କ୍ଷଣକାନ୍ତର ପ୍ରକାର । ୩୩ ।
କଉଁ ପରଭୃତକଣ୍ଠୀ କଣ୍ଠୀରବମଧ୍ୟାକୁ କୁଞ୍ଜେ ମଥନ୍ତ ।
କାହାକୁ ତୁମୋ ଅତନୁଜପସେଵିଦାତା ବୋଲି କହୁଥାନ୍ତ । ୩୪ ।
କଉଁ ଶ୍ରୀଫଳଉରଜା ଉରପରୁ ଫେଇ ଦଅନ୍ତ ଅମ୍ବର ।
କହୁଥାନ୍ତ ହସି ଉରଜପରେ ତୋ ଦେଉଥିବ ନଭେ୍ୟ କର । ୩୫ ।
କଉଁ ହରିଣ୍ୟଅଙ୍ଗୀପୁରେ ରଜନୀ କେଳତ ସାର ନାଗର ।
କହନ୍ତ ହିରଣ୍ୟଗର୍ଭ ଲେଖିଅଛୁ ମୁଁ ଥିକା ତୋ ସ୍ୱରୂପର । ୩୬ ।
କାହ୍ନା ଅଧରେ ଚୁମ୍ବ ଦେଇ ବୋଲନ୍ତ ଅର୍ତ୍ତିନାଶିନୀ ତୁ ମୋର ।
କଲେ କରୁଣା ତ୍ୱଣା ଯଶ ବନାଶ ହେବ ଚନ୍ଦ୍ର-ଆନନୀର । ୩୭ ।
କାହ୍ନା କଟିବାସ ଫେଇ ପୀତବାସ ବୋଲନ୍ତ ସ୍ମୀଡ଼ା ନବାର ।
କହନ୍ତ ପରବାସୀ ତ ସିତହାସୀ ନୋହିବ ସାକ୍ଷୀ ସାପର । ୩୮ ।
କହୁଅଛୁ ବାରମ୍ବାର ବାରିଜାକ୍ଷୀ କାମତରଣୀ ତୁ ମୋର ।
କଲେ ଦୋଷ ବାରବଧୂସୀ ଜାଣି କ ପୋଷିବାର ପରସ୍ପର । ୩୯ ।
କୁସୁମଲଟ କୁସୁମରେ ଭ୍ରମଣ କଲ ପରାଏ ବ୍ରଜରେ ।
କରୁଥାନ୍ତ ବ୍ରଜବହାର ନାଗର ବ୍ରଜନାଗରୀ ସଙ୍ଗରେ । ୪୦ ।
କହି ସେ ରସକୁ ଶେଷ କେ କରିବ ଶେଷ କରିନାହିଁ ଶେଷ ।
କୃଷ୍ଣଭକତଙ୍କ କୁମୁଦହୃଦକୁ ଏ ରସ ଅଉଷଧୀଶ । ୪୧ ।
କରୁଣାହୃଦୟ ବ୍ରଜ ଉପାସକ ଜନଙ୍କ କଣ୍ଠମଣ୍ଡନ ।
କୁଟିଳ ହୃଦେ କପାଟ ପଡ଼ିଥାଇ କର୍ଣ୍ଣେ କୁହୁର ମୁଦଣ । ୪୨ ।
କଶୋଶ୍ୱରଜନ ଶ୍ରୀ ମଧୁସୂଦନ ସୁଗତ ବଥ ସାନକୁ ।
କୃଷ୍ଣ କର ଦାସ ଶରଣ ମାଗଇ ଶ୍ରୀରାଧା ନନ୍ଦପୂଅକୁ । ୪୩ ।

# ଦ୍ୱାଦଶ ଛାନ୍ଦ



### ରାଗ—ମେଘମଲ୍ଲାର

କହନ୍ତି ଶ୍ରୀମତୀ ଶୁଣ ଅଗୋ ଦୂତି କୁଜ୍ଝଟି ସମୟ ଗଲା ।
କାଳରଚନ ପରବେଶ ହୁଅନ୍ତେ, କାମ ଉଦ୍ଦୀପନ କଲା ।
କଞ୍ଜନୟନୀ ରେ । କୁସୁମ ସମୟ ହେଲା ।
କରି ମନ୍ଦ ମନ୍ଦ ମନ୍ଦମରୁତ ଏ ଦକ୍ଷିଣଦଗୁ ବହିଲା । ୧ ।
କି ଶୋଭା ଏ ଅତି ରସମୟ କାଳ ଚିତ୍ତକୁ ଉଲ୍ଲାସ କଲା ।
କୋକିଳ କୁହୁ କୁହୁ ବାଣୀ ଶବଦେ କାମସାରଙ୍ଗ ଯୋଡ଼ିଲା ।
କୁନ୍ଦରଦନୀ ରେ । କୃତ୍ତିବାସଅରି ଅରି ।
କରିବାରୁ ଖେଦ କାର୍ତ୍ତସ୍ୱରଗୋଷ୍ଠୀ ତନୁ ପକାଉଛି ଘାରି । ୨ ।
କୁସୁମକୋଦଣ୍ଡେ କୁସୁମକୋଦଣ୍ଡ ଚୂତଅଙ୍କୁର ଲଗାଇ ।
କରିଅଛି ଲକ୍ଷ କାନ୍ତହୀନ ନାରୀହୃଦକୁ ପରଣସହୀ ।
କରୀଗମନୀରେ । କେଳିତ ବିଚ୍ଛେଦ ହୋଇ ।
କେଶରୀମଧ୍ୟମା କୁମ୍ଭୀକୁମ୍ଭ-ସ୍ତନା କେ ପ୍ରାଣ ଧରିବ ସହି । ୩ ।
କୁନ୍ଦଲତା କହେ ବୃନ୍ଦାବତୀ ଅଗେ କେଡ଼େ ଶୋଭା ବୃନ୍ଦାବନ ।
କେମନ୍ତ କୁସୁମବନ୍ତ ହୋଇଅଛି ଚାଲ ଦେଖିବା ବହନ ।
କହ ରାଧାଙ୍କୁ ଗୋ । କରିବା କୁଞ୍ଜବିହାର ।
କାଞ୍ଚନଲତା ବିମଳା ପରିମଳା ସୁମେଧା ପ୍ରେମା ସଙ୍ଗରେ । ୪ ।
କୃଷ୍ଣପ୍ରିୟା ରଙ୍ଗଦେବୀ ମଦାଳସୀ ଲୀଳାବତୀ ମଦକଳା ।
କଶୋରୀ ଲଳିତା ବିଶାଖା ଶ୍ୟାମଳା ଶଶୀରେଖା ପରିମଳା ।
କୃଷ୍ଣବଲ୍ଲଭୀ ଗୋ । ଚାଲ ଯିବା ବୃନ୍ଦାବନ ।
କି ଶୋଭା ଦିଶଇ ତରୁରାଜେ କୁଞ୍ଜ ବିକାଶିଛନ୍ତି ସୁମନ । ୫ ।

କହ ସୁରକନ୍ୟା ଶ୍ରୀମତୀ ସଙ୍ଗରେ ସହୃରେ ହେଲେ ବାହାର ।
କେ କେଉଁ ବେଶରେ ଗମନ କରନ୍ତି ତଦ୍ବକ ନୋହେ ଗୋଚର ।
କସ ଉପମା ଯେ । ଦେବା ଶ୍ରୀରାଧାଅଙ୍ଗକୁ ।
କମଳନୟନ ଜଗତମୋହନ ମୋହ ହୁଅନ୍ତି ଯାହାକୁ । ୬ ।
କନକ ଚମ୍ପା ନାଗେଶ୍ୱର ସ୍ୱନାର ସୁନାରୀକ ସମ ନାହିଁ ।
କୋମଳ ଶିରୀଷଅଙ୍ଗୀ ରୂପ ଯହୁଁ ବନମାଳୀ ହେବେ ମୋହ ।
କାନ୍ତି ଦଶଇ ଯେ । ଚନ୍ଦ୍ରଚୂନ ଜଣି ଭୋର ।
କି ବର୍ଣ୍ଣିବା ରାଧା ଚନ୍ଦ୍ରମୁଖୀ ଅଙ୍ଗ ବନମାଳୀ ମନଧର । ୭ ।
କି ସ୍ତର ନରନାରୀମାନେ ନାକ-ନାଗ-ନାଗରୀ ସମ ନାହିଁ ।
କୃଷ୍ଣପ୍ରିୟତମା ତମାଲକେଶୀକ ହିଲ୍ଲବନେ ସମ କାହିଁ ।
କୁଞ୍ଜକାନନେ ଯେ । ଚଳନ୍ତି ବ୍ରଜନାଗରୀ ।
କାମିନୀକୁଳ ମସ୍ତକମଣ୍ଡଳୀ କି ବେଢ଼ି କନକବଲ୍ଲରୀ । ୮ ।
କାମକଳାବତୀ ଅମ୍ବୁଜଆନନୀ କୁଞ୍ଜବନେ ପରବେଶ ।
କରନ୍ତି ଶ୍ରବଣ ନାନା ପକ୍ଷୀଗଣନାଦେ ପୂରେ ଦଶଦଶ ।
କରେ ପଙ୍କିଲ ଯେ । ଘନପୁଷ୍ପରେ ଝଙ୍କାର ।
କୁସୁମଧନୁ ଅତନୁ ଟଙ୍କାରିଲା ପ୍ରତେ ହେଲା ଗୋପୀଙ୍କର । ୯ ।
କଳାକରମୁଖୀ କୁଞ୍ଜମାନ ଦେଖି ଆନନ୍ଦିତ ହେଲେ ସଖୀ ।
କେତକୀ କୁବେଲୀ ମରୁଆ ମାଳତୀ ବାସନ୍ତୀ ବାସନ୍ତୀ ଦେଖି
କୁଞ୍ଜବିହାର ଯେ । କରନ୍ତି ବ୍ରଜକାମିନୀ ।
କପୋତହୁଙ୍କାର କାମ ଅହଙ୍କାର ତର୍ଜନପରାଏ ମଣି । ୧୦ ।
କେଉଁ ସୁନାରୀ ସୁନାଗରକ ଅନାଇଁ ବୋଲଇ ଆଗୋ ସୁନାରୀ ।
କର୍ ଆଦର କରରେ ଧରିଥାଅ ଭେଟିବା ମୁରଲୀଧାରୀ ।

---

୮।୯— କ ସ୍ତର ନରନାରୀମାନେ ନାକ ନାଗନାରୀ ସମ ନାହିଁ ।

କେହୁ ବୋଲଇ ଯେ । ଅନା ଏ ନାଗେଶ୍ୱରକୁ ।
କାନ୍ତିହୀନ ନାଗ୍ନ ନୟନେ ଦେଖିଲେ କର୍ଣ୍ଣାଏ ଅପଘନକୁ । ୧୧ ।
କେ ବୋଲେ ଏ କୁନ୍ଦ କୁନ୍ଦନଗୋତ୍ର ରୁ ଅନା ଆରେ ବରାଙ୍ଗନା ।
କୁନ୍ଦମାଳକ ମୁକୁନ୍ଦକଣ୍ଠେ ଦେଲେ ସମ୍ପୂର୍ଣ୍ଣ ହେବ କାମନା ।
କୁନ୍ଦରଦନା ରେ । କୃଷ୍ଣପଦ ମଞ୍ଜିଷ୍ଠାରେ ।
କର ଅନୁରାଗ ଶତ ରଞ୍ଜାଇବା ରହିବ ତନୁ ଅନ୍ତରେ । ୧୬ ।
କେ ନାଗ୍ନ କେଶରେ ଅନାଇ କେଶରେ ମଣ୍ଡିବା ଆଶେ ପାଶରେ ।
କରନ୍ତେ ଗମନ ଭ୍ରମରେ ଭ୍ରମରେ ଖେଳନ୍ତ ହୋଇ ଭ୍ରମରେ ।
କାନ୍ତାରତନ ଯେ । ଅନାଇ ତନୁ କର୍ମିଲ୍ ।
କର ବ୍ରୀଡାନାଶ ହୋଇଲ୍ ଉଲ୍ଲାସ କାନ୍ତକୋଲ ଇଚ୍ଛାକଲ୍ । ୧୩ ।
କେ ସୁମନା ଗୃହି ସୁମନା ହୋଇଣ ବୋଲେ ସଖୀ ଏ ସୁମନା ।
କରଣ ନିମଣ୍ଡି ଗନ୍ଧ ଚୁଲେ ଦେଲେ ନାଗର ହେବାନ୍ତ ସୁମନା ।
କେହୁ ବୋଲଇ ଯେ । ମାଧବୀକ ଅନା ସହ୍ମୀ ।
କୁସୁମଲଟ ପ୍ରାଣଦଳା ପରାଏ ଏଥିରେ ଅଛନ୍ତ ରହି । ୧୪ ।
କଉଁ ଭ୍ରସଲକେଶୀ ବୋଲେ ସଜନୀ ଭୃଙ୍ଗପରେ ଭୃଙ୍ଗ ଅନା ।
କାନ୍ତିହୀନ ନାଗ୍ନଚଞ୍ଚୁକୁ ଚଞ୍ଚୁରୀ କରଇ ଏ ଛିନ୍ନମନା ।
କୃଷ୍ଣ ନଇଲେ ରେ । ଏକାଳେ କର୍ମା କୁଞ୍ଜକୁ ।
କରନ୍ତା କେଳିବିଧାନ ଅଙ୍କରେ ବସାଇଣ ନାଗରଙ୍କୁ । ୧୫ ।
କେ ବୋଲେ ନଅଲୀ ଅନା ପ୍ରିୟଅଲୀ କୃଷ୍ଣ ସଙ୍ଗେ ପ୍ରେମ ଅଲୀ ।
କୃପାନିଧିସଙ୍ଗବିଚ୍ଛେଦେ ନଅଲୀ ଅଟଇ ଏ ନଅଁ—ଅଲୀ ।
କାନ୍ତାରତନ ରେ । କିଂଶୁକ କୁସୁମ ଅନା ।
କର ପଲ ନାଶ ବୋଲାଏ ପଲାଶ ନ ଶେ ବିରହୀ ଅଙ୍ଗନା । ୧୬ ।
କେ ବୋଲଇ ସହଚରୀ କ ଅନାଇ କାମର ଏ ସହଚରୀ ।
କରେ ଭ୍ରମଣ ଚଞ୍ଚରୀକ ଚଞ୍ଚଳାପରାଏ ଏଥି ନାଗରୀ ।

କେହୁ ବୋଲଇ ସେ । ତମାଳକୁ ଅନା ସଖି ।
କାନ୍ତବରନ୍ତରେ ତରନ୍ତଣୀଠାରେ କଞ୍ଚନମାଳ ଥଟଇ । ୧୭ ।
କୁସୁମ ଉତ୍ତମ ବାସ ମନୋରମ ନାମ ବକୁଳଙ୍କ ଅନା ।
କଉଁ ଅବଗୁଣେ ଅବିବେକୀ ପଣେ ପଙ୍କେଲଠାରେ ବ୍ୟନା ।
କଞ୍ଚନସୁମା ରେ । ଭ୍ରମିଣ ଗନ୍ଧମାଦନ ।
କରଇ ଗନ୍ଧ ଆମୋଦ ଏ ପୁଷ୍ପରୁ ଘ୍ରାଇଣ ଆନନ୍ଦମନ । ୧୮ ।
କେ ବୋଲଇ ମଲ୍ଲୀହ୍ରାସୀ ଅନା ଶିରମଲ୍ଲୀ ଉପରେ ନଆଲୀ ।
କୁଞ୍ଜେ କୁଞ୍ଜେ ଦେଖ କୁଞ୍ଜରଗମନୀ କ ଶୋଭା ଏ ନାଗବଲ୍ଲୀ ।
କୃପାନିଧାନୀ ରେ । କରୁଣାକୁ ସଖି ଅନା ।
କରୁଣାକର କରୁଣା ବାହାରେ ଏ କରଇ ଆନନ୍ଦ ମନା । ୧୯ ।
କୁନ୍ଦରୁକ୍ମ କାନ୍ତ ଅନାଇ କେ ବୋଲେ ଦେଖ ଏ କାମଦୂତକ ।
କରିବ ଦର୍ପ କନ୍ଦର୍ପ ସିଦ୍ଧି ଯେବେ ଅଣାଇଥାଅ କଟକ ।
କେହୁ ବୋଲଇ ସେ । ମାତୁଳୁଙ୍ଗ ଅନା ସଖି ।
କଞ୍ଚନଚାପ ଅରୁଚିକ ସ୍ୱରୂପ କରିଲେ ଚନ୍ଦ୍ରମୁଖୀ । ୨୦ ।
କେ ବୋଲଇ ଅନା ନାଗଗାଙ୍କ ରତ୍ନ ଅଟଇ ଏ ନାଗେଶ୍ୱର ।
କାନ୍ତହୀନ ନାରୀଅଙ୍ଗେ ସଞ୍ଚରଇ ଲାଗଇ ନାଗଫୁଙ୍କାର ।
କେହୁ ବୋଲଇ ସେ । ଦରବିକାଶ ଏ ମଲ୍ଲୀ ।
କରି ମନ୍ଦ ମନ୍ଦ ହାସ ଆରେ ଆଳୀ ମୋହୁଅଛି ମଣ୍ଡିଆଳି । ୨୧ ।
କେ ବୋଲେ ଅଶୋକ ଶୋକନାଶନ ଏ ବିରହୀ ଚିତ୍ତ ସନ୍ଧି ।
କୃଷ୍ଣସଙ୍ଗ ବିନା ବିରହୀ ଅଙ୍ଗନା ଶୋକ ଜାତ କରେ ଏହି ।
କେହୁ ବୋଲଇ ସେ । ସେବତୀକ ଅନା ସହି ।
କାନ୍ତକନକ ପରି ଏ ବିରାଜଇ ମୋହନ ହୃଦ୍ୟ ମୋହି । ୨୨ ।
କଉଁ ସଖୀ ବୋଲେ କରକ ଅନାଇ ଅନାରେ ଧରାମଣ୍ଡନା ।
କପାଁଏ ଆନନ କରିଛି ଧରାକୁ ଧରାଲୋକ ପ୍ରାଏ ସିନା ।

କେହ୍ନୁ ବୋଲଇ ଯେ । କୁଚପଦ୍ମକ ରହିଁ ।
କରନ୍ତି ଆନନ୍ଦ ଚଳକୁ ଏ ଧନ ବ୍ରୀଡ଼ାଭରେ ମନ ବନ୍ଧି । ୧୩ ।
କହୁ ସଜନୀ ହାସରସ ବଚନ କୁଞ୍ଜେ ବୁଲନ୍ତି ଅଙ୍ଗନା ।
କୁସୁମକାଳେ କୃଷ୍ଣଙ୍କୁ ଦେବାପାଇଁ ମାଳ ଗୁନ୍ଥନ୍ତି ସୁମନା ।
କସ୍ତୁଗନ୍ଧୀ ଯେ । କରନ୍ତି କୁଞ୍ଜବିହାର ।
କୃଷ୍ଣଭାବରେ ଭକତିଭୋଳ ମନ କୃଷ୍ଣପାଦେ ମଧୁକର । ୧୪ ।
କୃଷ୍ଣ କର ଧ୍ୟାନ ଜ୍ଞାନ ନିରନ୍ତରେ ଭଜଇ ରାଧାକୃଷ୍ଣଙ୍କୁ ।
କର୍ଣ୍ଣେ ଏ ରସ ରସଜ୍ଞମାନେ ପିଅ ଗଦ ଭଷସ୍ତୁଭଷଙ୍କୁ ।
କଞ୍ଜଚରଣେ ଯେ । କୁସୁମଲୁଣ୍ଠ ପଲ୍ଲବଏ ।
କର ସମର୍ପଣ ମନକୁ ସୁଜନ କି କରିବ ଜଳୁରାଏ । ୧୫ ।



## ତ୍ରୟୋଦଶ ଛାନ୍ଦ



ରାଗ—ଆଷାଢ଼ଶୁକ୍ଳ

କଳାକରଜିତବଦନୀ ସଖୀ । କୁଞ୍ଜେ ବୁଲନ୍ତି କୁସୁମ ନିରେଖି ।
କୃଷ୍ଣଭକତରେ ହୋଇ ଅଚିନ୍ତା । କାହାରି ମନେ ନାହିଁ କଛି ଚିନ୍ତା ।
 କ୍ରୀଡ଼ା କରୁଛନ୍ତି । କୃଷ୍ଣବନୋଦଅ ଚରଣ ଚିନ୍ତି । ୧ ।
କେ ବୋଲେ ସଖି ଅନା ବୃନ୍ଦାବନ । କେତେ ଜାତିରେ ଫୁଟିଛି ସୁମନ ।
କ ଦେଶେ ଚମ୍ପା ପୁନ୍ନାଗ ମଞ୍ଜୁଳ । କରିଛନ୍ତି ଛନ୍ଦ ଡାଳକୁ ଡାଳ ।
 କୃଷ୍ଣପ୍ରିୟା କହୁ । ଜଞ୍ଜନ ମଙ୍ଗଳକୃତ୍ୟ ହୁଅଇ । ୨ ।
କୃତମାଳ ଦେଖ ଧାଡ଼ିକ ଧାଡ଼ି । କ ଏ ପୁନାଗୀଗଣେ ଛନ୍ତି ବେଢ଼ି ।
କୁସୁମଲଟ ଭୃପି ମଲ୍ଲୀପରେ । କମ୍ବୁସ୍ଵରବଦ ମଙ୍ଗଳକୃତ୍ୟରେ ।
 କରଇ କ ମାଳୀ । କରିଛି ଅବନୀ ଚିତ୍ର ନିଥାଳୀ । ୩ ।
କଲ ପ୍ରାୟ ନୃତ୍ୟ ଗଣିକାକୁଳ । କ ଦେଶେ ଗଣିକାପୁଷ୍ପ ମଞ୍ଜୁଳ ।
କାଶ୍ୟପୀ ଦେବ ବନପ୍ରିୟ ଜାଣ । ଜରେ ମଙ୍ଗଳ ବାକ୍ୟ ଉଚ୍ଚାରଣ ।
 କହେ ପ୍ରିୟ ଅଳୀ । କ ଏ ମହୁଶଯ୍ୟା ଶେଯ ଶିଉଳୀ । ୪ ।
କ ଶୋଭେ ତମାଳକେଶୀ ତମାଳ । କେତେ ଅମଳ ଅନା ଖତମାଳ ।
କ ଦେଶେ ଚନ୍ଦ୍ରକାନ୍ତ ଚନ୍ଦ୍ରକାନ୍ତ । କାନ୍ତ ଅନାଇ ଆନନ୍ଦିତ ମତ ।
 କୁନ୍ଦଦନ୍ତି ଅନା । କ ଶୋଭେ ଅବନୀ ଦେଶେ ଅଙ୍ଗନା । ୫ ।
କୁଞ୍ଜେ ଏକାଳେ ମଦନମୋହନ । କରନ୍ତା ମିଳିଲେ କେଳିବିଧାନ ।
କହୁ ଏମନ୍ତ ବନଫୁଲ ଆଣି । କୁସୁମମାଳ ଗୁନ୍ଥିଲେ ଗୋପିନୀ ।
 କେଶେ ମଣ୍ଡି ଶୋଭେ । କନ୍ଦର ପୁର ନର ଦେଖି ଲୋଭେ । ୬ ।

---

୩ । ୫—ଭୃମି—ଚଷି ।

କଲେ ପ୍ରେମା ଶଶୀ ହେ ଶଶୀମଣି । କର କାମନା ପୂର୍ଣ୍ଣ ବେଣୁପାଣି ।
କୁସୁମେ ସୁବେଶ ହୋଇ ସଜଣୀ । କୁଞ୍ଜରୁ ଆସିବା ବେଳେ ଗୋପିନୀ ।
କାମୀ କଳ୍ପତରୁ ! କାମନା ଶୁଣି ବାହାର ବନରୁ । ୭ ।

କରେ ଅଛୁ କୁଳଛଡ଼ା ମୁରଲୀ । କ ନଶୋଭ ଚୂଳ ପରେ ଜାମ୍ବୁଡାଳି ।
କାମଦେବ ପୂଜାପ୍ରତିମା ବଳି । କାନ୍ତ ଗୃହେଁ ହୋଇଛି କଞ୍ଜନ ଦଳି ।
କୁମାରମଣ୍ଡଳୀ । କଣ୍ଠେ ଶୋଭିବନ କାଞ୍ଚମାଳି । ୮ ।

କାମୀଜନଙ୍କୁ କଳ୍ପତରୁବର । କାମିନୀମାନଙ୍କ କୁସୁମଶର ।
କଷ୍ଟ ତିମିରନାଶନେ ଭାସ୍କର । କୁଞ୍ଜବନୋଦଧି ମୁରଲୀଧର ।
କନ୍ଦର୍ପସୁନ୍ଦର । କରୁଣାନିଧି ଅଟେ ପୁରନ୍ଦର । ୯ ।

କମଳନୟନୀ ଗୋପିଙ୍କି ଗୃହେଁ । କଉତୁକରେ କହନ୍ତି କହ୍ନାଇ ।
କ ଟୋ ବାମନେ କହି ଅବଧି କଲ । କଉଁ ଅବଗୁଣରେ ଫୁଲ ତୋଳିଲ ।
କାମ ଏ ବନସ୍ତେ । କର ଆଜ୍ଞା ଜଗାଇଛୁ ମୋତେ । ୧୦ ।

କୁସୁମଶର ସୁଷମା ଭୂମ୍ବର । କ ବୋଲିବ ଗୃହେଁ ନାଗରୀବର ।
କହିଁ ଅପଘନ ସହିବ ତାର । କୁସୁମସାୟକ ବନ୍ଧନ ଧାର ।
କହେ ନାଗରୀବର । କୁଞ୍ଜବିହାରୀ ଥିଲେ ନାହିଁ ଡର । ୧୧ ।

କାଞ୍ଚନଲତା ବୋଲେ ବଂଶୀଧାରୀ । କାଞ୍ଚନଗୋରୀ ଲଜ୍ଜ ଦେବା ହରି ।
କହନ୍ତି ଦୂତୀ ମଦନଗୋପାଳ । କପାଁ ଆମ୍ଭଙ୍କୁ କରୁଛ ଜଞ୍ଜାଳ ।
କହେ କୁନ୍ଦଲତା । କୃଷ୍ଣ ଥିଲେ ନାହିଁ କାହାକୁ ଶଙ୍କା । ୧୨ ।

କହନ୍ତି ମୋହନ ଶୁଣ ଦୂତାଇ । କାମ-ସଜନକୁ ଡରିଲ ନାହିଁ ।
କଞ୍ଜିତ କଟାକ୍ଷେ ମୋତେ ନ ଗୃହଁ । କରୁଣା ନ କର ଯାଉଛ ସହି ।
କୃଷ୍ଣ ବାଣୀ ଶୁଣି । କହନ୍ତି ପ୍ରେମରେ ବରବର୍ଣ୍ଣିନୀ । ୧୩ ।

କଶୋଭୀମଣି ବନମାଳା ଧରି । କୃଷ୍ଣକଣ୍ଠେ ନେଇ ଦେଲେ ଚତୁରୀ ।
କାଞ୍ଚନଲତା ପ୍ରେମା ମଦାଳସୀ । କୃଷ୍ଣପ୍ରିୟା ଆଦ ଯେତେ ସୁକେଶୀ ।
କରୁଛୁ ବରଣ । କୃଷ୍ଣ ଆନ୍ଙ୍କ ଆମ୍ଭ ପରାଣଧନ । ୧୪ ।

---

୮ । ୩—ତକ—ଭକ ।

'କହ୍ନ ଗୋପାଙ୍ଗନା ଆନନ୍ଦ ହେଲେ । କଷ୍ଟକୁମ୍ଭସ୍ତନୀ ଗୋପେ ମିଳିଲେ
କୁମୁଦ ପ୍ରମୋଦକାଳ ହୋଇଲା । କମଳକାନନ ମୁଦ୍ରିତ କଲା ।
କଞ୍ଜନ ଉଦୟ । କଣ୍ଠୁ ତୁଟିଗଲା ବ୍ରୀଡ଼ାରୁ ଭୟ । ୧୫ ।
କୃତ୍ତିବାସଶିରଧୃତ କିରଣ । କଲା ମିଳିକାନ୍ତା ହୃଦ ଦହନ ।
କୁମୁଦକୁ ମୁଦ କଲା ବର୍ଦ୍ଧନ । କଲା ଆନନ୍ଦ କୁଳଟାଙ୍କ ମନ ।
କଳାକର ବୃନ୍ଦ । କରନ୍ତି ଲୀଳା ଗୋପେ ସ୍ୱାନଗ୍ରାହୀ । ୧୬ ।
କୁସୁମ ଭିତରେ ସୁବାସ ଥାଇ । କଲେ ବିକାଶ ଚହଟି ପଡ଼ଇ ।
କୃଷ୍ଣ ସେହମତ ଗୋପଭୁବନ । କରନ୍ତି ଲୀଳା ଗୋମେ ଚହଟିଣ ।
କୁଞ୍ଜବନୋଦଆ । କାମିନୀଙ୍କ ସଙ୍ଗେ ନବରଙ୍ଗିଆ । ୧୭ ।
କାହ୍ନା ବଦନ ଅନାଇ ମୋହନ । କହନ୍ତି କଳାକର ଅନା ଧନ ।
କୁସୁମ ସମୟେ ଗୃହିଣୀ ଗତ । କରତ ହୁଅଇ ବିରହଗ୍ରସ୍ତ ।
କାନ୍ତହୀନା ନାରୀ । କେମନ୍ତେ ଏଥି ରହନ୍ତେ ଦେହ ଧରି । ୧୮ ।
କାହ୍ନାକୁ ବୋଲନ୍ତି ଈଷା ଏ କାଳ । କାନ୍ତ ନ ଥିଲେ କାମିନୀର କୋଳ ।
କଞ୍ଜନ କରେ ଧରି କରବାଳ । କରେ ଖଣ୍ଡ ଖଣ୍ଡ ହୃଦୟ ସ୍ଥଳ ।
କର ବ୍ରୀଡ଼ା ଦୂର । କହି ମୁଖେ ଚୁମ୍ବ ଦେଲେ ନାଗର । ୧୯ ।
କାହ୍ନାକୁ ବୋଲନ୍ତି କାନ୍ତାରତନ । କି ମୋ ଅପଘଟ ଅଟେ ପାଷାଣ ।
କାଳରତନକୁ ଅନା ବନ୍ଧନ । କୁସୁମ ସୁବାସ ନ ଲାଗେ ପ୍ରାଣ ।
କୋକିଳ ସ୍ୱରଣି । କି ଅବା ଶୁଭୁନାହିଁ ତୋର ଶ୍ରୁତି । ୨୦ ।
କହନ୍ତି ହରି ଚନ୍ଦ୍ରହାସ ହୁଅ । କଞ୍ଜନ ଚନ୍ଦ୍ରହାସେ କାଟେ ଦେହ ।
କୁସୁମବନ୍ତ କା ନୁହଇ ତନୁ । କିବା ମାଧବରେ ମାଧବ ଧନୁ ।
କି ଲାଗଇ ନାହିଁ । କହି ଅଙ୍କରେ ବସାଇଲେ ନେଇ । ୨୧ ।

---

୧୭·୪—ନବରଙ୍ଗିଆ—ସ୍ୱଚ୍ଛରଙ୍ଗିଆ ।
୨୦—ଦ୍ୱିତୀୟ ଓ ତୃତୀୟ ଚରଣ ଓଲଟାଇ ପାଠାନ୍ତର ଅଛି ।

କଲେ ନିଧୁବନ କେଳିବିଧାନ । କଉତୁକହାସେ ରସାଳ ମନ ।
କାନ୍ତାମଣିକର ଧରି ମୋହନ । କହନ୍ତି ତୁ ମୋର ପରାଣଧନ ।
କୁଶଳ ବଚନ । କହି ସେଠାବରୁ କଲେ ଗମନ । ୧୨ ।
କଉ ବାଳୀର ବାଳକ ଯାଇଣ । କହନ୍ତି ଜାନୁ ଉରୁପରେ ଧନ ।
କର ଭବପରସାଗରୁ ତ୍ରାଣ । କରୁଣା ନ କଲେ ହରିଲ ପ୍ରାଣ ।
କାମିନୀରଞ୍ଜନ । କର ଅନୁକମ୍ପା ଗୁଢ଼ ବଚନ । ୧୩ ।
କାହାକୁ ବୋଲନ୍ତି ଚନ୍ଦ୍ରମୁଖୀକି ଦେଖି । କପାଇଁ ଚରମ କରୁଛୁ ସଖି ।
କପିଭଣ୍ଡାରେ ପାଣିକି ଲଗାଇ । କହଁ ବସିଛୁ ଦେବତା ଗୁହାଇଁ ।
କଣ୍ଠଗତ ଅନା । କୁସୁମଶର-ସନ୍ତାପ-ଖଣ୍ଡନା । ୧୪ ।
କରକାହୃଦ ମୋ ହୃଦେ ଲଗାଇ । କାମଅନଳକୁ ଦିଅ ଲିଭାଇ ।
କହି ଗୁଡ଼ ବଚନକୁ କହାଇ । କୋଳେ ଧରି ମୁଖେ ନର୍ମଠ ଦେଇ ।
କଞ୍ଜନରେ ମୋହି । କଲେ ସେଠାରୁ ବିଜେ ଶ୍ରୀବଗ୍ରାହୀ । ୧୫ ।
କଉଁ ଗୋପାଳପୁରେ ଗୋପାଳରେ । କହନ୍ତି କଳ୍ପାଣ ଅଙ୍ଗୀ ଆଗରେ ।
କାମଧନଞ୍ଜୟ କର ଶୀତଳ । କଞ୍ଜନେତ୍ରି, କୃପାକମଳ ଡାଳ ।
କାମଦାହ ଯିବ । କୃପାନିଧାନୀ ଶାରଦ ରହିବ । ୧୬ ।
କଞ୍ଜନୟନୀ ପାର୍ବତୀ ସଙ୍ଗରେ । କଲେ ଯେତେ ଲୀଳା ରତୁରାଜରେ ।
କୋଟି କୋଟି ତମେ ନତ ଅଙ୍ଗରେ । କଣ ହୋଇ ନେ କହିବ ମୁଖରେ
କୃଷ୍ଣଲୀଳା ରସ । କର୍ଣ୍ଣେ ଶୁଣି ହୋଏ କର୍ବୁର ନାଶ । ୧୭ ।
କର୍ଣ୍ଣରେ ଉତ୍ତମ ରସିକେ ଶୁଣ । କୃଷ୍ଣରସାର୍ଣ୍ଣବ ଲହରୀ ଗୁଣ ।
କଳାକର ପ୍ରାୟେ ଏ ଗୁଢ଼ଗିର । କୃଷ୍ଣ ପ୍ରେମଭକ୍ତି ନୟନୁ ନୀର ।
କରଇ ବାହାର । କଣ୍ଠରେ ନାଶେ କଳୁଷ ଅନ୍ଧାର । ୧୮ ।
କୃଷ୍ଣ ଭବରେ ଭେଳ କୃଷ୍ଣ କର । କହଇ କାଶୀକରଙ୍କ କୁମର ।
କାଠ ମୃତ୍ତିକା ଭସ୍ମ କଳେବର । କଞ୍ଜସମ୍ଭବ କରିଛୁ ଶରୀର ।
କହିଁ ହେବ ପାର । କୁଞ୍ଜବିହାରୀ କରିବେ ଉଦ୍ଧାର । ୧୯ ।

---

# ଚତୁର୍ଦ୍ଦଶ ଛାନ୍ଦ



## ରାଗ—ଲଳିତ କାମୋଦୀ

କାଳରନ୍ଧ୍ର ହେଲା ନାଳ କୋକିଳବାଣୀ ମଞ୍ଜୁଳେ ।
କାହିଁ ମଦନଗୋପାଳ ଏ କାଳକୁ ନଇଲେ ।
କହ ଦୂତୀ କୃପାନିଧି କାହାସଙ୍ଗେ ରହିଲେ ।
କରୁଣାକୁ ଊଣା କରି କାମାନଳେ ଦହିଲେ । ୧ ।

କେ ଅବା ଜାଣିବ ତାହା ହୃଦୟ ହୋଇଛି ଯାହା ।
ନଲି ପୁତନୁ ଅତନୁ-ଅନଳେ ଅନ୍ତର୍ଦ୍ଦାହା ।
କୁସୁମଶର ବନ୍ଧନ ଅଦୃଶ୍ୟରେ ଅଦେହା ।
କରିଛି ତରସ୍ଥାହୃଦ ଲାଖ ଆରେ ସୁଦେହା । ୨ ।

କଙ୍କଣ ନୂପୁରେ ରଖି କହେ ଚନ୍ଦ୍ରବଦନୀ ।
କମ୍ବୁଧରସୁତ ପରଚନ୍ତୀ ହେଲା ମିତଣୀ ।
କୃଷ୍ଣ ବିନେ କେମନ୍ତେ ବଞ୍ଚିବା ଆରେ ସଜନୀ ।
କି ଶୋଷି ଆନନ୍ଦ କାଳ ଦେଖ ଚନ୍ଦ୍ରରଜନୀ । ୩

କଉଁ ଚନ୍ଦ୍ରଚୂଳ ଦେଖି ଚନ୍ଦ୍ରକିରଣକୁ ଚାହିଁ ।
କୃଷ୍ଣ ଆଗମନ ଧ୍ୟାଇ ଆଶା ଅଛି ଲଗାଇ ।
କରିଛି ବିଗ୍ରହ ସଜ ସୁପାତିକ ଶେଯାଇ ।
କଳା ଘନାଘନେ ଶଶୀ ଗୃତକିପ୍ରାଏ ଦେଇ । ୪ ।

କଉଁ ମାନିନୀ ମାନରେ କୃଷ୍ଣପାଶରୁ ଅନ୍ତରେ ।
କରକୁ ହରିଭକ୍ତାରେ ଦେଇଛି ଯାନଭରେ ।

---

୪।୪—କଳା ଘନାଘନ ଗୃହ ଗୃଢବସ୍ତ୍ରାଦ୍ଧ ହୋଇ

କରକରଦନୀ ମସୀ ଲେଖଇ କରଜରେ ।
କଉଁ ଇନ୍ଦୁମୁଖୀ ବାଣୀ ଭାସଇ ଇଙ୍ଗିତରେ । ୫ ।
କପାଁ ଉତ୍ସବଜେ କଞ୍ଜସମ୍ଭବ ପଲ୍ଲଭବ ।
କରଣ ଥିଲା ଘଟଣ ଅବିବେକ ଦଇବ ।
କର ମାନକୁ ମୁଞ୍ଚନ ତେଜ ସଖି ଅଭାବ ।
କୃଷ୍ଣ ଆସିବେ ସଜନୀ କାମନା ପୂର୍ଣ୍ଣ ହେବ । ୬ ।
କେ ହୋଇଲା ପୀତବାସ-ବିଚ୍ଛେଦରୁ ପୀତବାସ ।
କଳା ଅନ୍ତର ସୁବେଶ କାନନ ହେଲା ବାସ ।
କୃଷ୍ଣ ବିଲମ୍ବରୁ କାହା ହେଲା ମନ ବିରସ ।
କଳା ଭୂତଗ୍ରସ୍ତ ଶଉ ପ୍ରାଏ ନାଗରୀ ଇଶ । ୭ ।
କେ ବୋଲେ କୃଷ୍ଣ ପୀରତି ଛାଡ଼ିଲେ ନ ଛାଡ଼େ ମତି ।
କେ ଧରିପାରିବ ଧୂର୍ତ୍ତ ରସିକ ଗୁଣବତୀ ।
କେ ସାରଙ୍ଗରସେ ମାତି ଆନନ୍ଦ ହୋଏ ମତି ।
କରଇ ସାରଙ୍ଗଗତି ପ୍ରାଏ ଗୋପଯୁବତୀ । ୮ ।
କାହ୍ନା ରୂପ ଧ୍ୟାଇ ସଙ୍ଗୀକ ଗୃହଁ ଶ୍ରୀହରି ।
କହ କାନ୍ତିସ୍ପନ୍ଦଗୋଷ୍ଠୀ ଆଗେ ଅସୁ ଚତୁରୀ ।
କରୁ ଚୁମ୍ବ ଆଲିଙ୍ଗନ ବ୍ରୀଡ଼ା ତେଜି ନାଗରୀ ।
କହିଁ ନମ୍ରତରେ ଚକାଉଛନ୍ତି ଗୋପ-ଆଶ୍ରମ । ୯ ।
କହ କେତକୀଚରଣଠାରେ ଶର ଲଗାଇ ।
କରୁ ଶରକୁ ଆନନ୍ଦ ଅନଙ୍ଗକୁ ଛଡ଼ାଇ ।
କେମନ୍ତେ ଯାମିନୀକାଳେ ରହିଛନ୍ତି ଏକା ହୋଇ ।
କୁସୁମଶର ଢ ତୀର ଶରୀରେ ନ ଭେଦଇ । ୧୦ ।
କୃଷ୍ଣଭାବ ଭାବି କାହା ନୀବୀବନ୍ଧ ଫିଟିଲା ।
କେ ଉତ୍କଳ ରଜନୀରେ ଅନଙ୍ଗରେ ମାତିଲା ।

କେଉଁ କଣ୍ଠଗତ କଞ୍ଜନୟନ ପାଶେ ଗଲା ।
କଳାକର ରଜନୀରେ କେଳିତ ଆରମ୍ଭିଲା । ୧୧ ।
କେଉଁ ଗଣବଣା ଏଣୀ ସମ୍ପୂର୍ଣ୍ଣ ଚନ୍ଦ୍ରକଳା ।
କଳା-ବୟସୀ ଅନାଇଁ ସାରଙ୍ଗେ ହେଲା ଭୋଳା ।
କୃଷ୍ଣମନ ସାରଙ୍ଗରେ ତୋଷ କଲା ଅବଳା ।
କଲା ଅଜେୟ କାମକୁ ଜୟ ସେ ପ୍ରେମଶୀଳା । ୧୨ ।
କହ କେ କରିବ କାଳରନ୍ଧ୍ରରସକୁ ଶେଷ ।
କରି ନାହିଁ ସହସ୍ର-ବଦନ ଯା ଶେଷ ଶେଷ ।
କି ଗ୍ରୁର ନର ମନୁଷ୍ୟ କହିବାକୁ ସେ ରସ ।
କୁଞ୍ଜରଗମନୀ କୃଷ୍ଣକେଳି କଳାବିଳାସ । ୧୩ ।
କାହ୍ନୁକୁ ବନ୍ଧିତ କରି ବ୍ରଜେ ବ୍ରଜମାନ୍ଧନ ।
କରନ୍ତି କେଳିତଳ୍ପୀ ସଙ୍ଗସଖୀ ଘେନିଣ ।
କଳାକର ସ୍ୱହିଁ ଚନ୍ଦ୍ରମଣି ହୋଏ ଯେସନ ।
କଳାକରମୁଖୀ ଗୋପୀ ମନ ହେଲା ତେସନ । ୧୪ ।
କାହ୍ନା କାଞ୍ଚୋଲି ଫେଡଣ ମୁଖେ ଦେଇ ଚୁମ୍ବକୁ ।
କାହ୍ନା ପାଶେ ଯାଇ ବାଣୀ ଭଣନ୍ତି ଇଙ୍ଗିତକୁ ।
କାମ ଅଛି ପଠିଆଇଁ, କହ ରସଲତାକୁ ।
କାଲି ଯାଇଅଛି ଋଷି ସମ୍ପାଦିବୁ ତାହାକୁ । ୧୫ ।
କହନ୍ତି ପ୍ରେମମଞ୍ଜରୀ ଆହେ ନଟନାଗର ।
କୁସୁମଲୁଣ୍ଠ ପଡ଼ିଏ ପୀରତି ପୁରୁଷର ।
କରେ ଷଟ୍‌ପଦ ଶଠ ଯତି ପୁଷ୍ପରସର ।
କମଳ ତେଜିଣ ବସେ ବାନ୍ଧିଦନ୍ତ ଉପର । ୧୬ ।

---

୧୬।୪—ବନ୍ଧନରୁ ଛାଡ଼ିକ ପ୍ରୀତି ବଂଶର ପାଦ ଧୂସର ।

କବନ୍ତେ ବ୍ରଜବିହାର ହେମେ ହଣି ପାହିଲା ।
କମ୍ବୁଘୋଷ ଶମ୍ଭୂଅଲେ ତାମ୍ରଚୂଡ଼ ଡାକିଲା ।
କରଣ୍ଠବାଣୀ କର୍ଣ୍ଣକୁ କଳକଳ ଶୁଭିଲା ।
କୋକମିଥନଙ୍କ ମନ ଆନନ୍ଦ କରାଇଲା । ୧୭ ।
କଲେ ବ୍ରଜାଙ୍ଗନାମାନେ ଦଧି ଘେନ ମନ୍ଥନ ।
କୁମୁଦେ ମୁଦ୍ରିତ ହେଲ ପ୍ରଫୁଲ୍ଲିତ ନଳିନ ।
କଲେକ ଗୋପାଳେ ଗୋପାଳରେ ଗୋରୁ ଦୋହନ ।
କ ଶୋଭା ହିଦ୍ରୁମକାନ୍ତ ଘେନ ଉଦେ ଅରୁଣ । ୧୮ ।
କାନ୍ତ ନେତ୍ର ଅନନ୍ତରୁ ରିଷ ହେଲେ ମଳିନ ।
କଲେ ଏନକୁ ଉଦ୍‌ବେଗ ସ୍ନାନ ପାଇଁ ବାହ୍ମଣ ।
କରଣ୍ଠ ମାର୍ଥିବମାନେ ଶରେ ଦର ନେହଣ ।
କର ଗ୍ରନ୍ଥ ଦବସିତମଧରେ ସେ ରହିଣ । ୧୯ ।
କଲେ ସୁଜ୍ଞଜନେ ରାଧାକୃଷ୍ଣ ନାମ ଗାୟନ ।
କୁଳଟାଏ ଧାମଅଖି ପ୍ରାଏ କଲେ ଗମନ ।
କକୁଭ ନିର୍ମଳ ହେଲ ଉଦେ ହେଲେ ଅରୁଣ ।
କରାଇଲ ରସିକମାନଙ୍କ ପ୍ରଭା ହଞ୍ଜନ । ୨୦ ।
କଉଁ ରସିକ ରସବଚରେ ଶର ଲଗାଇ ।
କରେ ଚିନ୍ତା ରସରସ ଭାବନାକୁ ଛେଡ଼ାଇ ।
କୁନ୍ଦଦନ୍ତୀ ଶୋଭାକୁ ବସି ମନେ ଭାଳଇ ।
କୋଟି ନାଗର ଘାତ ପ୍ରାଏ ନାଗର ମଣଇ । ୨୧ ।
କେ ଅନାଇ କୁଙ୍ଗସଙ୍ଗରଙ୍ଗ ତାମରସର ।
କରାଇଲା ଉନ୍ମତ୍ତ ଉନ୍ମତ ଶଶ ଶରୀର ।
କରଇ ସମାକୁ ଚିନ୍ତା ବସି ନିକେତନର ।
କଣ୍ଟଗଡଗଡକ ଅନାଇ ହଣି ବାସର । ୨୨ ।

କଉଁ ରସିକ ଶଙ୍ଖର କାଶ୍ମୀର ଜରଜର ।
କରନ୍ତି ଗଣ୍ଡକୁ ଛନ୍ଦ ନାଗବଲ୍ଲୀ ରଙ୍ଗର ।
କଉଁ ଆଲୀ ଇଙ୍ଗିତରେ କହ୍ନେ ଭାଷା ମଧୁର ।
କେମନ୍ତ ଶୋଭା ଆନନ ଅନାଅନ ମୁକୁର । ୧୩ ।
କାହା ଲଲାଟସିନ୍ଦୂର ଲଗ କାହା ହୃଦର ।
କହେ ବାଳା ପୁଂସଶ୍ଳିଷ୍ଟ ଶ୍ଳିଷ୍ଟ କାଏ ପୁଂସର ।
କର ନିୟମ ମୋଠାରେ କହୁଥାଅ ଉତ୍ତର
କି ଏ ଶଠଶ୍ଳିଷ୍ଟ ଜଣାଗଲା ଏ ପୁରୁଷର । ୧୪ ।
କେ କାହ୍ନା ଘଟ ଅନାଇ ଘଟଣ କରି କହଇ ।
କାହା ସଙ୍ଗେ ଥିଲ ଘଟ-ସୂଚ ପଗ୍ରଏ ସେହ୍ନ ।
କଲେବରକୁ ଶୁଖାଇ ଦେଲାକ ଚନ୍ଦ୍ରମୁହାଁ ।
କହୁ କହ ମୋ ଆଗରେ ତା' ନାମ ନ ଲୁଚାଇ । ୧୫ ।
କଉଁ ରସବନ୍ତୀ ଉଜ୍ଜ୍ୱଳ ରସକୁ ଭେଜଣ ।
କଣ୍ଠଗତ ଗଣବଣା ଏଣୀ ପ୍ରାୟେ ଗମନ ।
କରନ୍ତେ କଉଁ ସଜଣୀ ଦେଖିଲେ ତା ନୟନ ।
କଞ୍ଜବନ ସାରଙ୍ଗକରରେ ଦୋଏ ଯେସନ । ୧୬ ।
କହାଁ ଫିଟିଣ ଚିକୁର ପଡ଼ନ୍ତି ଚରଣପର ।
କହୁ କାହ୍ନ ଶ୍ୟାମାବର ଥିଲ କାହା ସଙ୍ଗର ।
କହାଁ ଦ୍ୱିଜରାଜମୁଖୀ ମୋହଠାରେ ଅନ୍ତର ।
କରୁଛ ପ୍ରୀୟ ସଙ୍ଗାତ ରସିକ ଶ୍ୟାମାବର । ୧୭ ।
କରନ୍ତ ବ୍ରଜବିହାର ରତ୍ନସଜେ ଶ୍ରୀଧର ।
କଉତୁକେ ପାର୍ବତୀଙ୍କ ସଙ୍ଗେ ନନ୍ଦନାଗର ।
କରନ୍ତେ ଲୀଳା ଯାମିନୀ ଆସି ହେଲା ଶେଷର ।
କମଳନାଥ ଭଜନ୍ତୁ କଲେ ପଥ ଅମ୍ବର । ୧୮ ।

କର ବ୍ରଜଉପାସକ ଜନେ ଜଣ୍ଣମଣ୍ଡନ ।
କଲୁଷ ଭେଜଣ ଆମ୍ଭା ଲଭିବ ନିର୍ବାଣ ।
କର ପ୍ରେମ-ଭକ୍ତି-ରସ ଭଜ ବଂଶୀବଦନ ।
କୃତାର୍ଥ ହୋଇବ କାୟା ନ ଦଣ୍ଡିବ ଶମନ । ୬୯ ।
କହେ ଦାସ କୃଷ୍ଣକର ରାଧାପଦ୍ମ ପୟର ।
କୁସୁମଲିଟ ପଞ୍ଚଏ ଶଉ ରଙ୍କୁ ମୋଦର ।
କଣ୍ଠରୁ ଏ ଭବ ଦବାନଳି ନୋହୁ ଅନ୍ତର ।
କୃଷ୍ଣପ୍ରେମଭକ୍ତ କୋବିଦଙ୍କ ଅଟେ କୋୟର । ୭୦ ।



# ପଞ୍ଚଦଶ ଛାନ୍ଦ



## ରାଗ—କେଦାର କାମୋଦୀ

କାଞ୍ଚନଲତା କହେ ବସନ୍ତ ଗଲା । ଏମନ୍ତେ ଗ୍ରୀଷମ ଆସି ପ୍ରବେଶ ହେଲା ଯେ । କହନ୍ତି ପ୍ରେମା କରମାଳୀକରଣ । କି ତେଜବନ୍ତ ଅନା ପଦ୍ମଣଧନ ଗୋ । ୧ ।

କୁସୁମକାଳଭବ ଗଲା ସଜନ । କନ୍ଦର୍ପଦର୍ପ ପୁଞ୍ଜ ରହିଲା ପୁଣି ଯେ । କୃଶାନୁଭାନୁପ୍ରାଏ ବେତଣ୍ଡ ଭାନୁ । କେତେ ତପତ ମହୀ ହେଲା ସ୍ତନୁ ଯେ । ୨ ।

କମଳ କାନ୍ତ-କର ଲାଗି ଆନନ୍ଦ । କୁଟ୍ଟୁମ୍ବୀ ମୀନଜନେ ହେଲେ ବିଷାଦ ଯେ । କଲା ଉପରୁ ଭରେ ଝଞ୍ଜା ଅନିଳ । କରାଇଲା ପଥିକ ଜନେ ବିକଳ ଯେ । ୩ ।

କାସାରମାନଙ୍କରୁ ତୁଟିଲେ ବନ । କୁଜ୍‌ଝଟୀ ପ୍ରାଏ ମୃଗତୃଷ୍ଣା ଶୋଭନ ଯେ । କାନନେ ଧନଞ୍ଜୟ କରଣ ଶୋଭା । କଲେ ଜ୍ୟୋତିରଙ୍ଗଣପଦ୍ମଏ ପ୍ରଭା ଯେ । ୪ ।

କୁସୁମବନ୍ତ ଆଳୀ ହେଲେ ନିଆଳୀ । କାନନେ ତୃଣବ୍ରଜେ ଅଛନ୍ତି ଫଳ ଯେ । କଲେ ଗଣିକା କୃପାସକ ଅନ୍ତର । କର୍ଦ୍ଦମ ହେଲା ଘର୍ମ ଲାଗି ଶରୀର ଯେ । ୫ ।

କୁଞ୍ଜେ ବନମାଳୀଏ ଲୁଚାଇ କାୟେ । କରନ୍ତି ଧ୍ୟାନ ବନମାଳୀ ପଦାୟେ ଯେ । କୁଞ୍ଜରେ ମହାରଣ୍ୟେ ପଶିଲେ ଯାଇ । କଞ୍ଜନାଥ-କରଣ ତେଜ ନ ସହି ଯେ । ୬ ।

କାକୋଦରେ ଦରକୁ ମୁଞ୍ଚନ କଲେ । କୃଷ୍ଣଆସନପାଶେ ଯାଇ ରହିଲେ ଯେ । କୋକକୁ ପୂଣ୍ଡରୀକ ଭୟ ତେଜଲେ । କାନନେ ଗ୍ରୀଷ୍ମା-ଗଲେ ଏକାନ୍ତ ହେଲେ ଯେ । ୭ ।

କମଳେ କମଳଜନାଥ ଉଷ୍ମରେ । କାଳୀଆସନ ପାଶେ ରହିଲେ ଧୀରେ ଯେ । କାନନରେ ବେତଣ୍ଡ ଶୋଷ ତେଜଲେ । କାଳରନ୍ଧ୍ର ଯିବାରୁ ତରୁଣ ହେଲେ ଯେ । ୮ ।

କାଶ୍ମୀରବର୍ଣ୍ଣ ଘନପୁଷ୍ପ ମଞ୍ଜୁଳ । କଲା ରସକୁ ଊଣା ଗ୍ରୀଷମକାଳ ଯେ । କୁଞ୍ଜେ କୁଞ୍ଜେ ଝଙ୍କାର ଧ୍ୱନି ଶୁଭିଲା । କକୁଭ କୁସୁମରେ ମଣ୍ଡନ ହେଲା ଯେ । ୯ ।

କେତେ ତପତ ସଖି ଗ୍ରୀଷମବାଳୀ । କିବା ମଥୁଳୀ ଅଙ୍ଗେ ବାଜିଲା ବାଳୀ ଯେ । କରାଇଲା ଶରୀର ଲାଗି ଆକୁଳ । କଦମ୍ବତଳେ ବନେ ମଥୁଳୀକୁଳ ଯେ । ୧୦ ।

କଲେ ସରଘାମାନେ ରସ ସଞ୍ଚନ । କଲା ସରଘାପ୍ରାଏ ଦୁଃଖୀ ଜୀବନ ଯେ । କେ ଶିବଣରେ ବସୁଧାରା ଧାରାକୁ । କରାଇଲେ ମଣ୍ଡନ ତପର୍ତ୍ତୁକୁ ଯେ । ୧୧ ।

କଲେ ମୀହାରବାରଠାରେ ପୀରତ । କର୍ପୂର ଚନ୍ଦନରେ ବନ୍ଧିଲା ମତ ଯେ । କେ ଉପାନହ ବସ୍ତ୍ର ଚରଣେ ଦେଲେ । କେ ଗନ୍ଧସାର ଅଙ୍ଗେ ବୋଳି ହୋଇଲେ ଯେ । ୧୨ ।

କେ ସାରଙ୍ଗକାଳରେ ଚନ୍ଦ୍ରଭାନୁରେ । କଲେ ଶୟନ ହନେତନ ବାହାରେ ଯେ । କେ ରାଧାକୃଷ୍ଣ ନଉକାରେ ବସାଇ । କଲେ ଅଗରସାତ ଆନନ୍ଦ ହୋଇ ଯେ । ୧୩ ।

କେ ମାର୍ଗେ ନଳଛନ୍ଦ କଲେ ମଣ୍ଡନ । କେ ବସ୍ତ୍ର କରେ ଛନ୍ଦି ଦେଲେ ସୁଜନ ଯେ । କହ ବସିଲେ ପଦ ହେବ ବହୁତ । କାଳର ଦ୍ରବ୍ୟେ ତୋଷ ସବୁର ଶତ ଯେ । ୧୪ ।

କାଳ ପ୍ରବଳ ଗୁହ୍ମ ଗୋପ ଅଙ୍ଗନା । କଲେ ଯମୁନାସ୍ନାନେ ମନ କଳ୍ପନା ଯେ । କନ୍ୟା ବୃନ୍ଦସଂଘ ରାଧିକା ଆଗେ । କହନ୍ତୁ ବୃନ୍ଦେଶ୍ୱରୀ ଶୁଣିମା ବେଗେ ଗୋ । ୧୫ ।

କରିବା ଜଳକ୍ରୀଡ଼ା ଯାନୁସ୍ନାତରେ । କର ସାନୁକା ବଜେ ଢୋଇ ସତ୍ଵରେ ଗୋ । କମଳମୁଖୀ ବୃନ୍ଦା କଶୋଭା ମଣି । କଲେ ବଜସ୍ନେ ମେଧା ସୁମେଧା ଯେବେ ଯେ । ୧୬ ।

କାଞ୍ଚନଲତା ପ୍ରେମା ପ୍ରେମମଞ୍ଜରୀ । କୃଷ୍ଣପ୍ରିୟା ଲଳିତା ହେମଗଉରୀ ଯେ । କୁନ୍ତଳା ଶକୁନ୍ତଳା ଗୁରୁକୁନ୍ତଳା । କହନ୍ତ ଗତ ଲୀଳାଗତ ବିମଳା ଯେ । ୧୭ ।

କଶୀରସୁମଧ୍ୟମା କେଳିଲାଳସୀ । କଳାକରବଦନୀ କୁନ୍ଦ-ହାସୀ ଯେ । କନ୍ଦର୍ପ ଅହଂକାରକୁ ଶରଦଶଶୀ । କାମ କଣୀ ନଉକା ସୁମଦାଳସୀ । ୧୮ ।

କରୁଛନ୍ତ ଗମନ ଲୀଳାଗତରେ । କରେ ହଂସକ ଧ୍ୱନି କଞ୍ଜ-ମଧ୍ୟରେ ଯେ । କୋକନଦ ରଙ୍ଗକୁ ବଳି ଚରଣ । କରଇ ନିନ୍ଦା ପଦ୍ମ-ବନ୍ଧୁ ଅରୁଣ ଯେ । ୧୯ ।

କାଳିନ୍ଦୀକୂଳେ ହେଜେ ଗୋପବନିତା । କୂଳକୁ ଅନାଇଲେ କଶୋଭା ଲତା ଯେ । କମଳ ଶୋଭନ୍ତ ଯନ ପରାଏ । କରନ୍ତ ତମାଳକୁ ନନ୍ଦତ କାୟେ ଯେ । ୨୦ ।

କାଳକଣ୍ଠ କ୍ରୀଡ଼ନ୍ତ କର୍କ ଭିତରେ । କର୍କକୁ କର୍କପ୍ରାଏ ଭ୍ରାନ୍ତ ମନରେ ଯେ । କରଣ ବନମାଳୀ ପରାଏ ମତ । କାନ୍ତ ନିଉନ କତ ବଳାକପନ୍ତୀ ଯେ । ୨୧ ।

କର୍କ ଯେ ଛନ୍ତ ବନମାଳୀ ଧ୍ୟାନରେ । କ ଶୋଭା ବନମାଳୀ ବନମାଳୀରେ ଯେ । କାନ୍ତାକଦମ୍ବ ଗୁହ୍ମ ଆନନ୍ଦ ହେଲେ । କୂଳେ ପିନ୍ଧା ଅମ୍ବରମାନ ରଖିଲେ ଯେ । ୨୨ ।

କାକୋଦର ପତ୍ରଏ କାଞ୍ଚୋଲି ଫେରି । କାଶ୍ମୀର ବୋଳି ହେଲେ ଶ୍ରୀଅଙ୍ଗେ ନେଇ ଯେ । କବରୀରେ ଶ୍ରୀଫଳ ଲଗାଇ ବାଳୀ । କାଳିନ୍ଦୀରେ ପଶିଲେ ସଙ୍ଗ ଗୁଆଳୀ ଯେ । ୨୩ ।

କରନ୍ତି ଜଳକ୍ରୀଡ଼ା ଆନନ୍ଦ ହୋଇ । କରୁଣାନିଧି ନାମ ଶ୍ରୀମୁଖେ ଗାଇ ଯେ । କେହୁ ପ୍ଲବନ୍ତି କଉତୁକ କରଣ । କହନ୍ତି କଳେବର ଘୂହିଲା ଧନ ରେ । ୨୪ ।

କେ କାହା ଲପନକୁ ନୀଳା ଗତରେ । କରେ ଜଳ ସିଞ୍ଚନ କଉତୁକରେ ଯେ । କେ କାହା ସାରଙ୍ଗରେ କୁଙ୍କୁମ ବୋଳ । କୃତ୍ତିବାସଙ୍କୁ ସେବା କରୁଛି ଆଲୀ ଯେ । ୨୫ ।

କେ କାହା କୁଚେ ଘନରସ ଢ଼ାଳଇ । କରୁଣାକର ଶିବ ଅସ୍ତୁ କହାଇ ଯେ । କୃଷ୍ଣ ସଙ୍ଗରେ ଜଳକ୍ରୀଡ଼ା କରିବୁ । କାମନାପୂର୍ଣ୍ଣେ ବର-ଲବଧ ଦେବୁ ଯେ । ୨୬ ।

କରନ୍ତେ ମନେ ଚିନ୍ତା ନାଗରୀବର । କୃଷ୍ଣ କୁଞ୍ଜବନରୁ ହେଲେ ବାହାର ଯେ । କୃପାସକ ହୃଦରୁ ଅନ୍ତର କରି । କରନ୍ତି ବନକେଳି ବନଗଉରୀ ଯେ । ୨୭ ।

କୁଞ୍ଜବିହାରୀ ମନେ କରି ବିଗ୍ରହ । କରି ହରଣ ଆଜ ସବୁ ଅମ୍ବର ଯେ । କରିବା ଘନପୁଷ୍ପକାଣ୍ଡରେ ଦୋଳି । କଲେ ବାଞ୍ଛିତନ୍ଦନ ଶ୍ରୀବନମାଳୀ ଯେ । ୨୮ ।

କୃଷ୍ଣ ଅଜ୍ଞାରେ ବାଞ୍ଛା ବାଞ୍ଛା ପତ୍ରଏ । କୁରଙ୍ଗୀନେତ୍ରୀ ଚୀର ସହିରେ ବନ୍ଧଏ ଯେ । କଦମ୍ବରେ ଥୋଇଣ ହେଲି ସତ୍ୱର । କଲେ ଦୋଳିରଚନା ନାଗରବର ଯେ । ୨୯ ।

---

୨୫ । ୩—କୁଙ୍କୁମ ବୋଳ—କମଳ ଗୃହ ।

୨୯ । ୩—ସତ୍ୱର—ଅନ୍ତର ।

କୁରଙ୍ଗୀନେତ୍ରୀ ବଢ଼ାଇଣ ସ୍ନାହାନ । କୂଳକୁ ଅନାଇଲେ ନାହିଁ ବସନ ଯେ । କଲେ କାମିନୀଗଣ ମନେ ବିଶ୍ୱାସ । କିବା ଖେଚରଗଣ ନେଲେ ଅମ୍ବର ଯେ । ୩୦ ।

କେ ବୋଲଇ ଗମନ ନାହିଁ କାହାର । କିବା ଖେଚର କିବା ନନ୍ଦକୁମର ଯେ । କହନ୍ତେ ଅନାଇଲା କେଉଁ ଚତୁରୀ । କଦମ୍ବେ ଦୋଳି କରି ଅଛନ୍ତି ହରି ଯେ । ୩୧ ।

କୋଟି ଶରଦହର ଜିଣି ବଦନ । କରେ ମୋହନ ବେଣୁ ମନ ମୋହନ ଯେ । କୁନ୍ଦରଦଣୀ ବ୍ରୀଡ଼ାଭରେ ଅନାଇ । କାଳନ୍ଦୀଜଳେ ସଙ୍ଗେ ପଶିଲେ ଯାଇ ଯେ । ୩୨ ।

କରକୁ ଶିରେ ଦେଇ କଲେ ଜଣାଣ । କଞ୍ଜ-ନୟନ ଦିଅ ଆମ୍ଭ ବସନ ଯେ । କନ୍ଧକୁ କଂସ ଆଗେ ନ ଦେଲେ ଚୀର । କରିବେ ଜନେ ନିନ୍ଦା ବସନଚୋର ଯେ । ୩୩ ।

କହନ୍ତି କଳାକାହ୍ନୁ ଗୋପଅଙ୍ଗନା । କର୍ପୂର ଚୋର ବୋଇଲ ନ ବୁଝି କରି ଯେ । କରିବା ନ୍ୟାୟ କଂସ ରାଜା ଆଗରେ । କହିଲ ଚୋର ବୋଲି କେଉଁ ଗର୍ବରେ ଯେ । ୩୪ ।

କହନ୍ତି ସନ୍ଧଚରୀ ଶୁଣ ନାଗର । କେତେ ହେଁ ନିର୍ମିଳ, ଥିଚ ଲବଣୀ-ଚୋର ଯେ । କ କହିବା ପୀୟୂଷ ପୟୋଧରରେ । କର୍ଥିଲା ଦୁଧ ଦିନୁ ନ ରହେ ଘରେ ଯେ । ୩୫ ।

କଶୋଦାମଣି ବୋଲେ ଶୁଣ ମୋହନ । କରୁଅଛୁ ବିନତି ଦିଅ ବସନ ହେ । କୃଷ୍ଣ କହନ୍ତି ଆଗୋ ନାରୀରତନ । କରିଛୁ ବାତ ଅଣାୟତ୍ତ ବସନ ଯେ । ୩୬ ।

କଞ୍ଜନୟନ ଶନ୍ଧି ନିଅ ଗୋ ଚୀର । କରେ ବଢ଼ାଇଦେଲେ ନାଗରବର ଯେ । କାମଦେବମନ୍ଦିରେ ବାମ କରକୁ । କଲେ ଦକ୍ଷିଣ କର ବେଢ଼ ଉରକୁ ଯେ । ୩୭ ।

କଣ୍ୱାଗମଣି ବ୍ରୀଡ଼ା ପଟେ ପକାଇ । କଦମ୍ବ ତଳେ ବାଲୀ ମିଲିଲେ ଯାଇ ଯେ । କୃଷ୍ଣ କହନ୍ତି ଜଳଉଲଗ୍ନ ଦୋଷ । କରିବେ ଅଂଶୁମାଲୀ ଅପ୍ରାଧ ନାଶ ଯେ । ୩୮ ।

କର ଯୋଡ଼ଣ ନମି ବକରିନକୁ । କୃଷ୍ଣବିନୁ ତେବେ ନ ଜାଣୁ ଥାନକୁ ଯେ । କରୁଛୁ ନମସ୍କାର କୁଞ୍ଜବିହାରୀ । କର ଶିରେ ଯୋଡ଼ିଲେ ସବ୍ଁ ନାଗରୀ ଯେ । ୩୯ ।

କଣଳଯୁବୁଲଥା ହସେ ଅସ୍ଥିର । କହନ୍ତି ସଖୀ ବର ଦେଲେ ଶଙ୍କର ଯେ । କରରେ ହରି ଗୋପୀବସନ ଦେଲେ । କମଳନେତ୍ରୀ ପିନ୍ଧି ଗୋପକୁ ଗଲେ ଯେ । ୪୦ ।

କାଲୀଶିରମର୍ଦ୍ଦନ ବାଙ୍କଚୂଳଥା । କେକୀକଳାପଖୋଷା ଗୁଞ୍ଜମାଳଥା ଯେ । କୁଞ୍ଜବନବିହାରୀ ଗୋଧନରଖା । କାଳନ୍ଦୀକୂଳେ ଯେହ୍ନ ମାଇଲେ ବକା ଯେ । ୪୧ ।

କେଳିକଦମ୍ବତଳ ପାଦନଗୁଥା । କାମିନୀ-ଶତ-ଗ୍ରେବ ନବ-ରଙ୍ଗିଆ ଯେ । କଦମ୍ବରୁ ଓହ୍ଲାଇ ବନ୍ଦେ ବ୍ରଜକୁ । କୃଷ୍ଣକର ଧାଇଛନ୍ତି ସେ ଚରଣକୁ ଯେ । ୪୨ ।



# ଷୋଡ଼ଶ ଛାନ୍ଦ



## ରାଗ ରସକୋଇଲି

କହନ୍ତି ରାଧିକା ଗ୍ରୀଷମ ଗଲା । କାଳ ମିଥୁନ କାଳ ଆସ ହେଲା ।
କି ଶୋଭା ଦଶନ୍ତି ନଭମାଳିକା । କରଣ ନବଢ଼ ଗିରିମାଳିକା ସେ ।
କେତେ ଅନ୍ଧାର ଦଶଇ ଯେ ।
କରଣ ଆପଣା ବର୍ଣ୍ଣ ପରକାଶ ଦିନକର ନ ଦଶଇ ଯେ । ୧ ।
କଞ୍ଜନଗଜନ ଘନାଘନରେ । କରେ ବଜ୍ରେ ଘନାଘନ ସଙ୍ଗରେ ।
କେକୀ-ଭେକୀ-ଧ୍ୱନି ବାଜେ ଝମକ । କରବାଳ କି ଚଞ୍ଚଳା ଝମକ ସେ
କି ଶୋଭା ବଳାକପନ୍ତି ଯେ ।
କାମ କି ଶ୍ୱେତ ଆଲମ୍ବ ଉଡ଼ାଇଣ ବଜେ କରନ୍ତି ନୃପତି ଯେ । ୨ ।
କେ ବୋଲେ ସଖି ଅନା ଘନାଘନ । କେତେ ଘନେ ଘନ ମୁଞ୍ଚେ ଜୀବନ
କୁଧରଶିଖରୁ ଖସଇ ବନ । କରଇ ଝରଝର ଧ୍ୱନି ପୁଣ ସେ ।
କି ଶୋଭା ଦଶେ କାନନ ଗୋ ।
କାନ୍ତା କାନ୍ତ ଭେଟ ଅଭେଟ ହୋଇଲା ନିଷ୍ଟୁର ଗଲା ଜୀବନ ଗୋ । ୩ ।
କୁଧରମାନେ ଶୀତଳ ହୋଇଲେ । କାନନ ବେତଣ୍ଡ ସୁନ୍ଦ ଲଭିଲେ ।
କେକୀ ନୃତ୍ୟ କଲେ ମଦବୋଲରେ । କର୍ଦ୍ଦମ ହେଲା କାଶ୍ୟପୀ-
ଯାକରେ ସେ ।
କରେ ଘନ ଘଡ଼ଘଡ଼ ଯେ ।
କର୍ଣ୍ଣେ ଶୁଣି ହୁଅ ହୃଦୟ ଚମକେ କାଳକଣ୍ଠ ଦଏ ରଡ଼ ଯେ । ୪ ।

---

୧ । ୩—ନଭମାଳିକା—ନବଚାଳିକା ।

କୋକିଳମାନଙ୍କ ବସିଲା ଗଳା । କରମାଳୀକର ଶୀତଳ ହେଲା ।
କୁଳଟା ସ୍ତ୍ରୀପ୍ରାଏ ତରଙ୍ଗିଣୀ । କୂଳବେଦନକ ନାଶ କରି ପୁଣି ସେ ।
କରନ୍ତି ସୁଖରେ ଗତି ଯେ ।
କୋଇଲିରୁ କେହୁ ପାରି ହୋଇବାକୁ ଖେମ ଅଛି ନ ବଶନ୍ତି ଯେ ।୫।
କେଦାରେ ପୂର୍ଣ୍ଣ ହୋଇଲା କମଳ । କୃଷକମାନେ ଆନନ୍ଦ ସକଳ ।
କଲେ ଯେ ଯାତ୍ରା ଶୁଷ ଅନୁକୂଳ । କ୍ରମେ ପକ୍ୱ ତୃଣ-ବୀଜ ସକଳ ସେ ।
କେଡେ ଶୀତଳ ଏ କାଳ ଯେ ।
କାଶ୍ୟପୀରେ ତୃଣସମୂହ ହେବାରୁ ଆନନ୍ଦ ହେଲେ ଗୋକୁଳ ଯେ ।୬।
କାନନେ ଗିରିମଲ୍ଲୀ ବିକାଶିଲେ । କଦମ୍ବ କୁସୁମମାନ ଫୁଟିଲେ ।
କଲେ ଝଙ୍କାରଧ୍ୱନିକି ପକ୍ଷିଲେ । କଥା ଅକାଳ ଗୋପିକାସକଳେ ସେ ।
କହନ୍ତି ହୃଦ ଆକୁଳେ ଯେ ।
କୁଞ୍ଜବନପତି ନଇଲେ ଶ୍ରୀପତି କେମନ୍ତେ ବଞ୍ଚିବା ଭଲେ ଯେ । ୭ ।
କେ ଚିନ୍ତା କରଇ ବଂଶୀବଦନ । କେ ଚିନ୍ତା କରେ ମାଳତୀଭୂଷଣ ।
କେ ବୋଲେ ସଖୀ ଅନା ଘନାଘନ ; କି କରିବା ସଙ୍ଗେ ନାହିଁ ମୋହନ
ସେ ।
କହିଁ ବଞ୍ଚିବା ଦୁର୍ଦ୍ଦିନ ଯେ ।
କାଳିନ୍ଦୀନ ନାଥ ମନକୁ ଚତୁରୀ କରିବ ଦୁର୍ଦ୍ଦିନ ଷାନ ଗୋ । ୮ ।
କେ ବୋଲେ ବେଗୀ ପଶିଏ ଏ କାଳ । କସିଉଛି ଦର ଦରସ୍ଥିକୁଳ ।
କରିଇବ ଆଳୀସମୂହ ନାଶ । କେତୁମୁଣ୍ଡ ପ୍ରାଏ ସାରଙ୍ଗ ଗ୍ରାସ ସେ ।
କରିବ ଚନ୍ଦ୍ରବଦନୀ ଗୋ ।
କୃଷ୍ଣବିନୁ ଦିନ କେମନ୍ତେ ବଞ୍ଚିବା ବିଶ୍ୱର ସବ ଗୋପିନୀ ଗୋ । ୯ ।
କାହା ହୃଦୟ ହୋଏ ଥରଥର । କାହା ନୟନୁ ଅଶ୍ରୁ ଝରଝର ।
କାହା ହୃଦୟ ପ୍ରେମେ ଜରଜର । କେ ବୋଲେ ସଙ୍କଟ ହରହେ ହର ସେ ।
କେ ବୋଲଇ ମାର ମାର ଯେ ।
କେ ବୋଲେ ମାର ମାରଣାରୁ ଉଦ୍ଧାର କର ଅହେ ଧରାଧର ଯେ ॥

କାଳକାଳ ଭବ କନ୍ଦ କନ୍ଦ । କେ ବୋଲେ ଥାଉ ଗତ୍‌ ନାହିଁ ନାହିଁ ।
କଞ୍ଚନ ତନୁ କାଢେ ରନ୍ଧ୍ର ରନ୍ଧ୍ର । କ ପ୍ରିୟଜନ ଦୁଃଖ ସନ୍ଧ ସନ୍ଧ ସେ ।
ଜନ୍ଧ ମୁଖ ଚମଚମ ଯେ ।
କରି ଗୃଦ୍ଧମୁଖୀ ବରହ୍ନ ଅନଳେ ସ୍ୱେଦ ଗଳେ ଗମଗମ ଯେ । ୧୧ ।
କଉଁ ସଜଣୀ ମନ ଛନଛନ । କେ ଜୃମ୍ଭା ପ୍ରସରିଲ ଘନଘନ ।
କା ତନୁ ପୁଲକିଲ ପୁନପୁନ । କାହ୍ନା କାନ୍ତ ଦଶିଲ୍ଲ ଥାନ ଥାନ ସେ ।
କା ନୟନ ଥନଥନ ଯେ ।
କପାଁ ନ ଆସିଲେ ଭବବନେ ଦଥି ବୋଲି ମନ ଛନଛନ ଯେ । ୧୨ ।
କେ ବୋଲେ ସଖୀ ଅନା ଘନ ଘନ । କେବୋଲେ ଶମ୍ପା ମାଳେ ଘନଘନ ।
କେ ବୋଲେ ନେବ ଏ ଜୀବନ ଘନ । କେ ବୋଲେ ହରି ଡାକେ ଘନଘନ ସେ ।
କରେ ସ୍ୱର ଘନ ଘନ ଯେ ।
କାନ୍ତିସ୍ୱଚ୍ଛଗୋଷ୍ଠୀ ହରିରବୁ ଶର ମାରେ ଏବେ ଘନଘନ ଯେ । ୧୩ ।
କହନ୍ତ ପ୍ରେମା ନବଘନ ଶ୍ୟାମ । କାମନାକୁ ପୂର୍ଣ୍ଣ କରିବେ କାମ ।
କାଞ୍ଚନଲତା ବୋଲନ୍ତ ଶ୍ରୀହରି । କୁଞ୍ଜବନେ ଦଥି ମୁରଲୀଧାରୀ ସେ ।
କୁରଙ୍ଗୀନେତ୍ରୀଙ୍କ ଧନ ଯେ ।
କୁଞ୍ଜବନୁ ଆସ ସାରଙ୍ଗବଦନ କରିବା କେଳିବିଧାନ ଯେ । ୧୪ ।
କାମିନୀଶତ ନାଣି ଚିନ୍ତାମଣି । କୁଞ୍ଜବନେ ଦଥି ମୁରଲୀପାଣି ।
କରୁଣ ବରଷା ଅବଲୋକନ । କୋଟିଏ ରୂପ ଧଇଲେ ମୋହନ ସେ ।
କାମିନୀମାନଙ୍କ ପୁରେ ଯେ ।
କରି ବଜନ୍ୟେ କେଳନ୍ତ ଆରମ୍ଭିଲେ ଅନେକ ହାସରସରେ ଯେ । ୧୫ ।

---

୧୩.୧—ଘନ ବେଢେ ଘନ—ଅନା ଘନ ଘନ ।
୧୩.୩—ସବଭଘନ—ସଘନ ବନ ।

କାହା ଅଙ୍ଗରେ ଅଙ୍ଗକୁ ଲଗାଇ । କା ଅଙ୍ଗେ ଚଞ୍ଚଳା ପଲ୍ଲଏ ହୋଇ ।
କାହା ବଦନେ ଚୁମ୍ବନ ଦିଅନ୍ତି । କାହା କେଶରେ ଯାଇ ପଛୁଡ଼ନ୍ତି ସେ ।
କରନ୍ତି କେଳିବିଧାନ ସେ ।
କମଳନୟନା ମାରମାରଣାରୁ ପାହି କର ପ୍ରାଣଧନ ସେ । ୧୬ ।
କରନ୍ତେ ଲୀଳା ବଢ଼ି ପ୍ରେମମଣି । କଲ୍ଲୋଳ ଧଇର୍ଯ୍ୟ କୂଳ ବୁଡ଼ାଇ ।
କାମସାଗରେ ଯାଇ ମେଳ ହେଲେ । କଞ୍ଜନେତ୍ରୀ ସୁଖନିଧି ଲଭିଲେ ସେ ।
କେତେ କହିବ ଏମାନ ସେ ।
କମଳନେତ୍ରୀଙ୍କ ପୁରେ ପୁରେ ବିଜେ କରିଛନ୍ତି ଭଗବାନ ସେ । ୧୭ ।
କୃଷ୍ଣ ମହିମାକୁ ନୁହଇ ନିହ୍ନ । କରୁଣାସାଗର ସେ ଦୀନତ୍ରାଣି ।
କୃପାନିଧାନ ଭକତତାରଣ । କମ୍ବୁ ଚକ୍ର ଗଦା ପଦ୍ମ ଧାରଣ ସେ ।
କାହାରେ ନିର୍ଦ୍ଦୟ ନାହିଁ ସେ ।
କେଉଁ କଥାରେ କାହାକୁ ଲକ୍ଷ୍ୟ ଦେବା କାହାକୁ ନ ଛାଡ଼ି କାହିଁ ସେ ।।
କୋବିଦମାନେ ଏ ରସରେ ରସ । କହୁଛି କ୍ଷମା କର ମୋର ଦୋଷ ।
କୁଞ୍ଜବିହାର ଅଟେ କୃଷ୍ଣରସ । କରଇ କଳୁଷକୁଳ ବିନାଶ ସେ ।
କୁଜନ୍ମଟୀ ମଦ୍ ପଲ୍ଲଏ ସେ ।
କର୍ଣ୍ଣେ ଶୁଣି ଚିତ୍ତେ ପ୍ରେମଭକ୍ତି କଲେ ନିର୍ବାଣ ପ୍ରାପତ ହୋଏ ସେ ।।
କୃଷ୍ଣ ଯେତେ ଲୀଳା ବୃନ୍ଦାବନରେ । କଲେ ବ୍ରଜରମଣୀଙ୍କ ସଙ୍ଗରେ ।
କୁଟିଳ ବୁଦ୍ଧି ତେଜନ ଏଥିରେ । କର୍ଣ୍ଣଦ୍ୱାରେ ପିଅ ଶ୍ରଦ୍ଧାଯୁକ୍ତରେ ସେ ।
କାଳସର୍ପ ଭୟ ଯିବ ସେ ।
କର୍ଣ୍ଣେ ଶୁଣି ନିନ୍ଦୁ ଲୋଚକ ଗଲଲେ କାୟ ପତନ ହୋଇବ ସେ ।।
କଲେ ଏହା ନିନ୍ଦା ନାସ୍ତିକ ନର । କାଳରେ ଦଣ୍ଡ ଦେବ ଦଣ୍ଡଧର ।
କୁଟିଳହୃଦୟ ଅଟେ ପଥର । କୋବିଦେ ଜାଣନ୍ତି ଶ୍ରମ ଏଥିର ସେ ।
କୃଷ୍ଣଭକ୍ତ ଯେଉଁ ନର ସେ ।
କଣ୍ଠରେ ସେମାନେ ହାର କରିଥାନ୍ତି ଥାନକୁ ନୋହେ ଗୋଚର ସେ ।।

କୁମତକର୍ଣ୍ଣେ କୃଷ୍ଣକଥା ବିଷ । କେବେ ପିତ୍ତମର୍ଦ୍ଦ ନୁହେ ପୀୟୂଷ ।
କରାଇଲେ ହିତାସଙ୍ଗ ବିଶେଷ । କେବେହେଁ ଦୁର୍ଗୁଣ ନୁହନ୍ତ ନାଶସେ ।
କୁହବୁଦ୍ଧି ଦୁରାଗ୍ରହ ସେ ।
କେବେହେଁ କୁବୁଦ୍ଧି ସୁବୁଦ୍ଧି ନୁହନ୍ତି କୋବିଦେ ମନେ ବିଚାର ସେ ।୨୨।
କାନନ ଧନଞ୍ଜୟ ନାଶକର । କୁଞ୍ଜବିନୋଦଥା ନଗନ-ଶ୍ରେର ।
କୁବଳୟଅରି କୁଧରଧର । ଜାକୋଦରଶିରେ ତାଣ୍ଡବକର ସେ ।
କଷ୍ଟ ସରିତ ଉଦ୍ଧରୀ ସେ ।
କପାଇଁ ସଂସାରେ ଜାତ କରି ମୋତେ କଷ୍ଟ ଦେଲ ବଂଶୀଧରୀ ସେ ।୨୩
କଞ୍ଜଚରଣରେ ସାରଙ୍ଗ ପରି । କଲ ନାହିଁ ମୋତେ କୁଞ୍ଜବିହାରୀ ।
କର୍ପା ମୁକ୍ତିବାଟ ଦ୍ୟନ୍ତ ପାଟସାରି । କଷ୍ଟ ସରିତରେ ଯାଉଛି ସରି ସେ ।
କର ଉଦ୍ଧାର ଶ୍ରୀଧର ସେ ।
କାହାକୁ କଉଁ ସଙ୍କଟରୁ ଅଖିଲେ ତାରି ନାହିଁ ବଂଶୀଧାରୀ ସେ । ୨୪ ।
କରିଛି ତୁମ୍ଭ ନାମ ବନମାଳୀ । କଷ୍ଟେ ବନମାଳୀ ଭିତରୁ ତୋଳି ।
କରିବେ ବନମାଳୀ ଯାତେ ମାଳି । କରୁଣାସାଗର ଶ୍ରୀ ବନମାଳୀ ସେ ।
କୃପାକର ବନମାଳୀ ସେ ।
କେବଳ ମାଳକାର ପ୍ରାଏ ଥୋକାଏ କି ଯେନାଲି କଣ୍ଠେ ମାଳ ସେ ।୨୫।
କୃଷ୍ଣ କଥା ଗୁଡ଼ ଅନରେ ମନ । କରିଅଛନ୍ତି ଯେଉଁମାନେ ଧ୍ୟାନ ।
କାଳେ ସାମବେଦୀ ବ୍ରତ ବିଧାନ । କରାଇବ ନଶ୍ଚେ ସୂର୍ଯ୍ୟନନ୍ଦନ ସେ ।
କୋବିଦେ ମନରେ ଘେନ ସେ ।
କୃଷ୍ଣପଦ୍ମପାଦେ ଚିତ୍ତ ଲଗାଇଲେ ନିର୍ବାଣର ନିକେତନ ସେ । ୨୬ ।

---

୨୩ । ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ପଂକ୍ତିର ଶେଷ ଅକ୍ଷରମାନ 'ରି'— ପାଠାନ୍ତର ।

କୁଜ ଉଜକର କୃପାନିଧାନ । କଲ ଦ୍ରୌପଦୀ ଲଜ୍ଜା ନିବାରଣ ।
କର ଜଗ ହୃତ ନପ ତାରଣ । କମଲ କେଷ୍ଟ କଲ ନିବାରଣ ସେ ।
କୁଞ୍ଜେ ରଖିଣ ଗୋଧନ ଯେ ।
କଲ ବକା ନାଶ ଅହେ ପୀତବାସ କର ମୋତେ ଉଦ୍ଧାରଣ ଯେ ।୬୭।
କରଅଛୁ ତୁମ୍ଭ ନାମକୁ ଗୀତ । କୁଟିଳମାନେ ଏଥି ଦେଲେ ଘାତ ।
କୋବିଦଙ୍କ ହସ୍ତେ ତନୁନିପାତ । କରିବ ତାଙ୍କ ଆନନେ ଅଚ୍ୟୁତ ହେ ।
କରୁଅଛି ମୁଁ ଜଣାଣ ଯେ ।
କମ୍ବୁ-ଚକ୍ର-ଧର କରୁଣାସାଗର କୃପାକୁ ମଧୁସୂଦନ ହେ । ୬୮ ।
କଞ୍ଜବାହା ଚୈକଅନ୍ତ ଗୋସାଇଁ । କରୁଣାସାଗର ଭକ୍ତଙ୍କ ପାଇଁ ।
କଲ ଜତୁଘରୁ ପାଣ୍ଡବ ପାର । କରୁଣାସାଗର ମୁରଲୀଧାରୀ ହେ ।
କୁଞ୍ଜବିନୋଦିଆ ହରି ଯେ ।
କରୁଣାନିଧାନ କଷ୍ଟଉଦ୍ଧାରଣ କର ଭବଜଳୁ ପାରି ହେ । ୬୯ ।
କଳାବଦନ ନିମନ୍ତ୍ରି-ଚୂଳିଆ । କମନୀୟ ବନଫୁଲମାଳିଆ ।
କେଶୀକଳାପୀ କଳାପଚୂଳିଆ । କାମିନୀଚିତ୍ତରଞ୍ଜିବ ନିଭଙ୍ଗିଆ ସେ ।
କେଳିକଦମ୍ବମୂଳିଆ ଯେ ।
କୃଷ୍ଣ କରକୁ ଉଦ୍ଧର ଭବଜଳୁ ଚନ୍ଦ୍ରମୁଖମଣ୍ଡଳିଆ ହେ । ୭୦ ।



---

୬୮ । ୩ କୋବିଦଙ୍କ—ବିଷ୍ଣୁଭକ୍ତ

# ସପ୍ତଦଶ ଛାନ୍ଦ



ରାଗ---ଅହାରୀ

କହନ୍ତ ରାଧିକା ଶୁଣ ଗୋ ଦୂତିକା ଶେଷ ହେଲା ମିଥୁନ କାଳ ।
କ୍ରମେ ଶରଦ ପରବେଶ ହୁଅନ୍ତେ ଦିଗମାନେ ହେଲେ ନିର୍ମଳ ।
କଠିନ, ହେଲେ ଅନନ୍ତାର ପଙ୍କିଳ ।
କି ଶୋଭା ଅନନ୍ତ ଅନା ପ୍ରାଣମିତ ଅଖଣ୍ଡିତଚନ୍ଦ୍ରମଣ୍ଡଳ । ୧ ।
କୃଷ୍ଣଭକତଙ୍କ ହୃଦୟପରାଏ ଅନଙ୍ଗ ନିର୍ମଳ ଦିଶନ୍ତ ।
କୁମୁଦ ବିକାଶି କୁମୁଦ କରଣ ପରିମଳ ବାତ ବୁହନ୍ତ ।
କେଡେ ସୁବାସ, ବାସନ୍ତ ସଖୀଏ ବାସନ୍ତୀ ।
କନ୍ଦର୍ପକରତ ପରାଏ କେତକୀ କି ଶୋଭା ଦିଶେ ଅନା ଦୂତୀ । ୨ ।
କାଳନ୍ଦୀକୁ ଅନା କମଳ କମଳ ଦିଶୁଛନ୍ତ କେଡ଼େ ଅମଳ ।
କି ଶୋଭା ବେନି ସାରଙ୍ଗରେ ସାରଙ୍ଗ ବିକାଶି ଦିଶନ୍ତ ମଞ୍ଜୁଳ ।
କରନ୍ତ, ସାରଙ୍ଗେ ସାରଙ୍ଗ ବିହାର ।
କର୍ଣ୍ଣକୁ ସାରଙ୍ଗଧନୁ ଟଙ୍କାରିଲା ପରାଏ ଲଗେ ବିରହୀର । ୩ ।
କରନ୍ତି ଉଲ୍ଲୁକ ସାରଙ୍ଗକୁ ଦେଖି ସାରଙ୍ଗକରଣ ସଜନୀ ।
କମଳରେ କେଳି କରନ୍ତି ସାରଙ୍ଗମାନେ କାମିନୀସଙ୍ଗ ଘେନି ।
କମଳା, ନୟନ ପ୍ରାଏ ବନମାଳୀ ।
କ୍ରୀଡ଼ା କରୁଛନ୍ତ ନ୍ହୋଇ ପନ୍ତ ପନ୍ତ ଶୋଭା ଦିଶନ୍ତ ପ୍ରିୟ ଅଳୀ । ୪ ।
କାକୋଦର-ଅରି ପୁଚ୍ଛ ଦୂର କରି ନିମଗ୍ନ ହୋଇଣ ରହିଲେ ।
କୁସୁମବନ୍ତ ବଧୂଲୀ ଅନା ଅଳୀ ବିକାଶିଣ ଶୋଭା ଦିଶିଲେ ।

କାମିନୀ, ଦର୍ଶ କୁସୁମ ମନୋହର ।
କରନ୍ତେ ଗମନ ମନ୍ଦ ଅନଳରେ କି ଶୋଭା ଦିଶଇ କେଦାର । ୬ ।

କାଳୀହ୍ରଦ ପୂରେ ପୂରେ କରନ୍ତି ଆନନ୍ଦେ କୁଳବଧୂମାନେ ।
କି ଶୋଭା ମୁଖଚନ୍ଦ୍ରିମ ବାଦ୍ୟମାନ ବଜାଇଣ ଅତି ଯତନେ ।
କୁମାର, ଉତ୍ସବ କରନ୍ତି ସୁଜନେ ।
କରି ଜାଗର କେ ଗୀତ ନୃତ୍ୟର ଜୂତରେ ଜନକାମିମାନେ । ୭ ।

କୁସୁମ ସୁଗନ୍ଧ ବନ୍ଦନ ମକରନ୍ଦ ଶଙ୍ଖନାଥ ଅଖଣ୍ଡିତ ।
କମଳା ଆନନ୍ଦ ପ୍ରାଏ ଶୋଭାବନ ଦେଖି ଆନନ୍ଦ ଗୋପୀନାଥ ।
କରଣ, ଲଚି ଉଜ୍ଜ୍ୱଳ ଦଶ ଦଶ ।
କୁଞ୍ଜଚନ୍ଦୋଦୟ ମନେ ଚିନ୍ତିଲେ କରିବା ରାସକେଳି ରସ । ୭ ।

କମଳନୟନ ସୁବେଶ ହୋଇଣ ନୀପମୂଳରେ ବନମାଳୀ ।
କି ଶୋଭା ତ୍ରିଭଙ୍ଗୀ ଛନ୍ଦେ ହୋଇ ଓଷ୍ଠ ଅଧରେ ମୋହନ ମୁରଲୀ ।
କୁବେଳୀ, ସଙ୍ଗତରେ ମିଶି ନଥିଲି ।
କଣଳଗ୍ନ ବାଙ୍କ ଚୂଳେ ଶୋଭାବନ ବେଢ଼ ଦେଇଛି ଗୋଠା ମଲ୍ଲୀ । ୮ ।

କାଞ୍ଚଲପନେ ମୋହନବେଣୁ ଦେଇ ବଜାନ୍ତି ରସିକନାଗର ।
କର୍ଣ୍ଣେ ଶୁଣି ଗୋପୀ ମାନସରଞ୍ଜନଦର୍ଶନକୁ ହେଲେ ବାହାର ।
କେ କେତେ, ଲୁଚେ ବାହାର ବ୍ରଜଗୋଇ ।
କହିବାକୁ କେ ସାମରଥ ହୋଇବ ସସାରେ ନରଦେହ ବୋହି । ୯ ।

କନ୍ଦରଭିତରେ ବନମାଳୀମାନେ ଶୁଣି ଆସନ ଚେଜ୍ୟା କଲେ ।
କଇଳାସେ କାଳୀକାନ୍ତ ହେଲ ହେଲେ ହୋଗିଏ ହୋଗ ଉପେକ୍ଷିଲେ ।
କଲ୍କ, ବିଶ୍ୱମନକୁ ଆକର୍ଷଣ ।
କରାଇଲା ପତିବ୍ରତା ବ୍ରତ ନାଶ ମୋହ ହୋଇଲେ ସୁରଗଣ । ୧୦ ।

କେଉଁ ଗୋପୀ ବସେ ସୁବେଶ ହୁଅନ୍ତେ କର୍ଣ୍ଣେ ବେଣୁଧ୍ୱନି ଶୁଣିଲା ।
କରି ବେଶ ଦୂର ହୋଇଲା ବାହାର ଆନନ୍ଦସିନ୍ଧୁ ଉଚ୍ଛୁଳିଲା ।
କୁନ୍ତଳେ, କଞ୍ଚଳ ନେତ୍ରେ କେ ଦେଇଣ ।
କଣ୍ଟବଦନ-ପ୍ରସାଧନୀ ଧରିଣ କୁରୁଳ ହୁଅଇ ବନ୍ଧନ । ୧୧ ।

କର୍ଣ୍ଣରେ ମୁରଲୀ ଶୁଣି ଗୋପବାଳୀ ବିବନ୍ଧନ କେଶେଣ ଧାଇଁଲା ।
କଜ୍ଜ୍ୱଳ ବୋଲି ନେ ମୃଗମଦ ନେଇ କୁରଙ୍ଗୀନୟନେ ରଞ୍ଜିଲା ।
କେବଣ, ବାଳୀ ଉତ୍କଣ୍ଠିତେ ଧାଇଁଲା ।
କଜ୍ଜ୍ୱଳ ସିନ୍ଦୂର ସ୍ଥାନ ବିପରୀତ ଯାବକ ବିପରୀତ କଲା । ୧୨ ।

କେ କଟିଭୂଷଣ କଣ୍ଠଦେଶେ ଦେଇ ବିବେକଭୁଲ ଚେଷ୍ଟା କଲା ।
କୃଷ୍ଣମୁଖ ସରସନ୍ନ ଦରଶନ କରିବାକୁ ବାଳୀ ଧାଇଁଲା ।
କାହାର, ଆନନ୍ଦ ଅଶ୍ରୁ ଉଚ୍ଛୁଳିଲା ।
କାହା ଗାତ୍ର ନେତ୍ର ସ୍ତମ୍ଭୀଭୂତ ଶଙ୍ଖ-ଦାରୁପ୍ରାଏ ହୋଇ ରହିଲା । ୧୩ ।

କାହା କଟିରେ କଙ୍କିଣୀ କଣି କଣି ଗମନେ ମଧୁର ସୁରଗାଳ ।
କେହୁ ଭୂତଗ୍ରସ୍ତ ପ୍ରାଏ କରି ଶତ୍ତ ଗମନେ ହୋଇଲା ବିହ୍ୱଳ ।
କାହାର, ଉଡ଼ିଗଲା ବାସ ଅଞ୍ଚଳ ।
କଞ୍ଚନସ୍ୟନ୍ଦନପତାକାପରାଏ ଦିଶୁଅଛି କେତେ ମଞ୍ଜୁଳ । ୧୪ ।

କାହା ପୟୋଧରଦେଶରୁ ସୁଚୀର ଧାମନ୍ତେ ହେବାରୁ ଅନ୍ତର ।
କାମପରିପନ୍ଥୀ ଦିଗମ୍ବର ହୋଇ ତାଣ୍ଡବ କରନ୍ତି ହୃଦର ।
କର୍ଣ୍ଣରେ, କାର ମଣିମୟ କୁଣ୍ଡଳ ।
କାଞ୍ଚନ ମୁକୁରମଣ୍ଡଳ ପରାଏ ଶୋଭା ଦିଶଇ ଗଣ୍ଡସ୍ଥଳ । ୧୫ ।

କାମିନୀମାନେ ଯୂଥ ଯୂଥ ହୋଇଣ ଗମନ୍ତି ଗୋପ ଅଙ୍ଗନରେ ।
କଳହଂସପ୍ରାଏ କଳ୍ୟାଣ ହଂସକ ବାଜନ୍ତ କଞ୍ଜଚରଣରେ ।
କାମିନୀ, ବଦନ୍ତି ପ୍ରେମ ଲମ୍ପଟରେ ।
କରନ୍ତି ଗମନ ଯେସନେ ତରଙ୍ଗିଣୀ ରତ୍ନାକର ସଙ୍ଗ ଆଶାରେ । ୧୬ ।

କନ୍ୟା ଶୃଙ୍ଗକୂଳେ ନୀପତରୁମୂଳେ ନବରଙ୍ଗେଥିଙ୍କୁ ଭେଟିଲେ ।
କରେ କର ଦେଇ ଚକ୍ରବାଡ଼ ହୋଇ ମଣ୍ଡଳୀଆକାରେ ରହିଲେ ।
କଳାକରକୁ କି ଘେରିଛି ଶୋଭନ ।
କୋଟି ମଦନ ସରି ନୁହେ, ମଦନମୋହନ ଦର୍ଶନେ ମୋହନ । ୧୭ ।

କେଉଁ ଆଭୀରୀ କୃଷ୍ଣଙ୍କ ଅନାଇଣ ରହିଲା ଚିତ୍ରକାରୀ ପରି ।
କାହା ନୟନେ ପଲକ ନ ପଡ଼ଇ କେ ହୋଇଲା ଚିତ୍ର ମୂର୍ତ୍ତି ।
କେ ବୋଲେ, ଅନାଥ ଘନାଘନଗାଏ ।
କେ ବୋଲଇ ନେତ୍ର ହୋଇବ ପବିତ୍ର ଦର୍ଶନେ ପୂର୍ଣ୍ଣ ମନୋରଥ । ୧୮

କେ ବୋଲଇ ଯହିଁ ଶୁଣିଛୁ ଶ୍ରୁତିରେ ଋଷି ବଚନକୁ ସ୍ମୃତିରେ ।
କଉଣସ ନାଶ ପାଇଁ ପୀତବାସ ଜନ୍ମ ଲଭିଛନ୍ତି ଗୋପପୁରେ ।
କହେ କେ, ଅବନୀର ଘୋର ଉଲ୍ଲାସ ।
କରି ରାସକେଳି ପ୍ରଭୁ ବନମାଳୀ ଭକ୍ତଙ୍କ ପୂରେଇବେ ଆଶ । ୧୯ ।

କେ ବୋଲଇ ପତିବ୍ରତାବ୍ରତ ସରିଯିବ ଦେଖି ଚନ୍ଦ୍ରଆନନ ।
କେ ବୋଲଇ ପର ହେଲେ ଯିବ ବ୍ରତ, କା ଇଚ୍ଛା ନୋହିବ ମଦନ ।
କେ ବୋଲେ, ଧନ୍ୟ ଧନ୍ୟ ଏ ବୃନ୍ଦାବନ ।
କେ ବୋଲଇ ଜୀବଜନ୍ତୁ ଦେଖୁଛନ୍ତି ଦେହି ଯେବେ ପଦ୍ମଲୋଚନ । ୨୦ ।

କାହା ମନ ଚନ୍ଦ୍ରକାନ୍ତ ପରିଏକ ଆନନ୍ଦବିନ୍ଦୁ ଉଚ୍ଛୁଳିଲା ।
କେ ହୋଇ ଅଳସେ ଟେକି ବେନି ଭୁଜ ଅଧେ ଉରଜ ଦେଖାଇଲା ।
କେବଣ, ଗୋପିକା ପ୍ରେମ ଉଚ୍ଛୁଳିଲା ।
କେ କଟାକ୍ଷେ ଚାହିଁ ସାରଙ୍ଗବଦନ ସାରଙ୍ଗେ ହେଲା ମତିଭୋଳା । ୨୧ ।

---

୨୧-କ—ପ୍ରେମ ଉଚ୍ଛୁଳିଲା—ଚିତ୍ତ ଚଞ୍ଚଳିଲା ।

କହନ୍ତି କହ୍ନାଇ ସାରଙ୍ଗବଦନୀ ସାରଙ୍ଗରେ କପାଁ ଅଇଲ ।
କି ବୋଲିବେ ଗୁରୁ ଗଉରବ ଜନେ ବ୍ରୀଡ଼ା କପାଇଁ ତେଜ୍ୟା କଲ ।
କେ ଥବା, କଲ ତୁମ୍ଭଙ୍କୁ ଏ ଅଜ୍ଞାନ ।
କହନ୍ତି ଚତୁରୀ ଶୁଣ ବଂଶୀଧାରୀ କେବଳ ତୁମ୍ଭ ବେଣୁସ୍ୱନ । ୨୨ ।

କର୍ଣ୍ଣକୁ କଞ୍ଜନ ମୋହନୀ ପରାଏ ଶୁଭିଲା ମାତେ ବେଣୁଗୀତ ।
କଲୁଁ ଘରବର ତ୍ୟାଗ ଝିଲ୍ଲୀଢଣ୍ଠି ଏଣୀ ପ୍ରାଏ ହେଲୁ ମୋହିତ ।
କଦମ୍ବ, ତଳକୁ ସାରଙ୍ଗ କାଳରେ ।
କରି ବେନକୁଳ ନାଶ ନନ୍ଦବାଳ ଅଇଲୁ ତୁମ୍ଭ ଦର୍ଶନରେ । ୨୩ ।
କପାଁ ଡାକ ଦେଲ ମଦନଗୋପାଳ ବନ୍ଧୁନ ଆସ ଗୋପବାଳୀ ।
କଦମ୍ବତଳରେ ରାସକେଳି ରସ କରିବା ହୋଇଣ ମଣ୍ଡଳୀ ।
କରୁଣ, ଘୃଣା ତ୍ରପା କପାଁ ମୋହନ ।
କମ୍ପାଇ ବ୍ରଜକୁ ଯିବୁ ବ୍ରଜଗୋଷ୍ଠ ସେବ ଥିବୁ ତୁମ୍ଭ ଚରଣ ।
କହନ୍ତି ଶ୍ରୀହରି ଅନୁକମ୍ପା କରି ଆସ ଗୋ ସାରଙ୍ଗ-ଅନନୀ ।
କରିବା ସାରଙ୍ଗରଜନୀରେ ରାସ ଖେଳି ତୁମ୍ଭଙ୍କ ସଙ୍ଗେ ଘେନ ।
କଞ୍ଜନୟନୀ ଶୁଣି ସଖୀ ଆନନ୍ଦ ।
କଲେ ରାସକେଳି ଆରମ୍ଭ କଦମ୍ବତଳରେ ଗୋପିକାକଦମ୍ବ । ୨୪ ।
କରେ ଧରି ବୀଣା ବଜାନ୍ତି ପ୍ରବୀଣା ଚନ୍ଦ୍ରା ରବା ଧରି ସୁରଙ୍ଗ ।
କରନ୍ତି ଘନବାଦନ ଘନକେଶୀ ମୃଦୁଅଙ୍ଗୀ ଧରି ମୃଦଙ୍ଗ ।
କରନ୍ତି ଗାୟନ ସୁକଣ୍ଠୀ ମଧୁର ।
କରେ ମଞ୍ଜୀର ଧରିଣ ଲୀଳାବତୀ ବାଦନ କରନ୍ତି ସଧୀର । ୨୫ ।
କାଞ୍ଚନଲତା ଉପାଙ୍ଗ କରେ ଧରି ସୁରସମଞ୍ଜରୀ ମୁରଲୀ ।
କେ ସ୍ୱରମଣ୍ଡଳ ଧରି ମଦକଳା ଶ୍ରୀମତୀ ଭ୍ରମରକୁ ତାଳି ।

---

୨୩-୧—କଞ୍ଜନମୋହନ—ଅମୃତ ସଭଙ୍ଗ ।

କୁଣ୍ଡଳା, ସୁଗ୍ରୀବକୁଣ୍ଡଳା ଆଦି ।
ଭବେ ଧର ଆଗେ ଉଭା ହୋଇଛନ୍ତି ମଦାଳସୀ ଛନ୍ତି ନିକଟ । ୨୭ ।

କଣୋଣ୍ଟ ଐଶାନ୍ୟ ଦିଗେ ହରିପ୍ରିୟା ପୂର୍ବରେ ଅଛନ୍ତି ବିଶାଖା ।
କୁସୁମ ଯେମନ ଶୈବ୍ୟା ବହ୍ନିକୋଣେ ପୃଷ୍ଠଭାଗେ ଛନ୍ତି ସୁରେଖା ।
କୃଷ୍ଣଙ୍କ ଅଗ୍ରତେ ଶ୍ରୀରାଧା ଅଛନ୍ତି ।
କେ ଅବା କହିବ ସେକାଳ ସମ୍ପତ୍ତି ବ୍ରହ୍ମାଣ୍ଡନାଥ ଯହିଁ ଛନ୍ତି । ୨୮ ।

କୃଷ୍ଣପ୍ରିୟା ପ୍ରେମା ଲଳିତା ବିଶାଖା ବୃନ୍ଦାବତୀ ଯେବେ ସଙ୍ଗରେ ।
କରିଛନ୍ତି ବନେ ଷୋଳସହସ୍ର ଗୋପୀ କେ ଅବା କହିବ ମୁଖରେ ।
କି ଦ୍ରବ୍ୟ, ଅପୂର୍ବ ଅଛଇ ତହିଁରେ ।
କମଳାଙ୍କ ଦୟା ଅଳକାନାୟିକା ଆଜ୍ଞାକାରୀ ଛନ୍ତି ଯହିଁରେ । ୨୯ ।

କଦମ୍ବ ମୂଳରେ ବିଜଏ କରିଣ କରିଛନ୍ତି ପ୍ରଭୁ ବିହାର ।
କଳେବର କାନ୍ତି ବଳି ଚନ୍ଦ୍ରଜ୍ୟୋତି କାହାରିହିଁ ନାହିଁ ବିରସ ।
କହିବ, କଉଁ କବି ଅବା ସେ ଶୋଭା ।
କୋଟି କନ୍ଦର୍ପ ଶୋଭାକୁ ଲକ୍ଷ୍ୟ ନାହିଁ ନାକ-ନାଗନାରୀ ଲୋଭା ।୩୦।

କରମ୍ବିତ ହୋଇ ସକଳ ନାଗରୀ ବେଢ଼ିଛନ୍ତି ବ୍ରଜମୋହନ ।
କନକ ଆଲବାଳ କି ତମାଳରେ ଚନ୍ଦ୍ରକୁ ନକ୍ଷତ୍ର ଯେସନ ।
କରନ୍ତି, ରାସମଣ୍ଡଳୀରେ ଗାୟନ ।
କାହାକୁ କେହି ଲୟରେ ଊଣା ନାହିଁ ସମସ୍ତେ ଅଟନ୍ତି ସମାନ ।୩୧।

କରନ୍ତି କଦମ୍ବତଳେ ରାସକେଳି ସଙ୍ଗେ ଘେନି ଗୋପୀମଣ୍ଡଳୀ ।
କୁସୁମ ବରଷି ଜୟ ଜୟ ଭାଷି ଦେବେ ଆକାଶେ ଛନ୍ତି ମେଳି ।
କରନ୍ତି, ମୁଖ୍ୟଭଣ୍ଡିମ ସୁରଥାଳୀ ।
କୃଷ୍ଣ କର ଦାସ କୃତାର୍ଥ ହୋଇଲା ଶନ୍ତି ଶ୍ରୀରାଧା ବନମାଳୀ । ୩୨ ।



# ଅଷ୍ଟାଦଶ ଛାନ୍ଦ



## ରାଗ—ଲଳିତ ଗୌଡ଼ା

କେଳିକଦମ୍ବର ବଶାରଦବର କେଳି କଦମ୍ବ ତଳରେ ।
କରୁଛନ୍ତି ରାସକେଳି ବ୍ରଜବାଳୀ ଅଳୀମାନଙ୍କ ସଙ୍ଗରେ ଯେ ।
  କଳାକର କିରଣରେ । କରୁଛନ୍ତି ନୃତ୍ୟ ଆନନ୍ଦରେ ଯେ । ୧ ।

କୃଷ୍ଣ ରାସଲୀଳା ଚାହିଁ ଦେବଗଣ କୁସୁମ ବୃଷ୍ଟି କରନ୍ତି ।
କରି ଅପଲକ ନୟନଯୁଗଳ ଅଧାସ୍ବର୍ଗେ ରହିଛନ୍ତି ଯେ ।
  କେ କହିବ ତାଙ୍କ ପୁଣ୍ୟ । କୃଷ୍ଣଭାବରେ ସବେ ନିମଗ୍ନ ଯେ । ୨ ।

କଳାକରଭାନୁ ପ୍ରକାଶ ହୋଇଛନ୍ତି କି ଶୋଭା ଶୁଦ୍ଧନୀ ରାତ ।
ଗଜଗମନୀଙ୍କ ସଙ୍ଗେ ବଂଶୀଧାରୀ କଦମ୍ବତଳେ ଶ୍ରୀପତି ଯେ ।
  କରୁଅଛନ୍ତି ବିହାର । କୁସୁମରୁ ପ୍ରକାଶେ ସୁବାସ ଯେ । ୩ ।

କଳାକରମୁଖୀ କାମିନୀକଦମ୍ବ କରନ୍ତି ନୃତ୍ୟ ଗାୟନ ।
କରେ କର ଦେଇ ଚକବାଡ଼ ହୋଇ ମଣ୍ଡଳୀ ଆକାରେ ଘୂଣ ଯେ ।
  କରେ ମାନସ ରଞ୍ଜନ । କର୍ଣ୍ଣେ ଶୁଣି ମୋହନ୍ତି ପଶୁଗଣ ଯେ । ୪ ।

କାହା କଣ୍ଠ ସ୍ୱରବାଣୀ ନିନ୍ଦା କରେ କା କଣ୍ଠ ସାରଙ୍ଗ ଜଣା ।
କାହା କଣ୍ଠ ପଢ଼ାସାରୀ ବାଣୀ ଜିଣି ସମସ୍ତେ ଏକ ଫରୁଣା ଯେ ।
  କେହି ନୁହନ୍ତି ଊଣା । କୃଷ୍ଣପ୍ରେମଭକ୍ତିରେ ପ୍ରବୀଣା ଯେ । ୫ ।

କେ ନୁହନ୍ତି ନୀଚ କେ ନୁହନ୍ତି ଉଚ୍ଚ ବୟସରେ ବାରବର୍ଷ ।
ଖଞ୍ଜନେକ୍ଷୀ କୁନ୍ଦଦନ୍ତୀ କୃଷ୍ଣପ୍ରିୟା ସବେ ଅଷ୍ଟାପଦଗୋରୀ ଯେ ।
  କାନ୍ତି ଚନ୍ଦ୍ରକାନ୍ତ ପ୍ରାଏ । କୃଷ୍ଣଚନ୍ଦ୍ର ଚାହିଁ ଦ୍ରବ ଯାଏ ଯେ । ୬ ।

---

ଟୀ୧—କମଳନୟନ ଇନ୍ଦ୍ରମନୋହାରୀ ଅଟନ୍ତି ହେମବରଣୀ ଯେ

କୃଷ୍ଣଙ୍କୁ ଆବୋରି କଣ୍ଠିସ୍ବରଟୋଣ୍ଟି ସୁହାଗୀ ସମସ୍ତ ଗୋଇ ।
କରୁଛନ୍ତି ନୃତ୍ୟ ହୋଇ ଅନନ୍ଦିତ କୃଷ୍ଣପାଦେ ଶଣ୍ଡ ଦେଇ ଯେ ।
    କୃଷ୍ଣ କରେ ଦେଇ କର । କର ଛନ୍ଦ ଅଙ୍ଗୁଳି ଉପର ଯେ । ୭ ।
କୃଷ୍ଣ ମଧ୍ୟରେ ତାଙ୍କ ବେନି ପାଶରେ ବେନି ସଖୀ ଶୋଭିବନ ।
କରୁଛନ୍ତି ନୃତ୍ୟ ଘନପୁଷ୍ଟ ତଳେ ଷୋଳସହସ୍ର ପ୍ରମାଣ ଯେ ।
    କଳିତ ଶକତିକି ଧରି । କରୁଛନ୍ତି ରାସ ବଂଶୀଧାରୀ ଯେ । ୮ ।
କରନ୍ତି ବାଦନ ତନ୍ତ୍ର ବାଦ୍ୟ ଯେତେ ବଂଶୀସ୍ବର ଗୀତଧ୍ୱନି ।
କିଙ୍କିଣୀ କଙ୍କଣ ନୂପୁରଶବଦ ଧ୍ରୁବ ଲୋକ ଚାଲି ଜଣି ଯେ ।
    କର୍ଣ୍ଣେ ଶୁଣି ରାସରସ । କରାଇଲା ମୋହ ଚତୁର୍ଦ୍ଦଶ ଯେ । ୯ ।
କୃଷ୍ଣଙ୍କୁ ବେଢ଼ି କଳାକରବଦନୀ ଚନ୍ଦ୍ରେ ନକ୍ଷତ୍ର ପରାଏ ।
କିବା ବେନି ଘନ ମଧ୍ୟେ ଏକ ରାକ ଦିଶୁଛନ୍ତି ଶୋଭାମୟେ ଯେ ।
    କାଳସ୍କନ୍ଦରେ ନଥିଲି । କୃଷ୍ଣ ସଙ୍ଗେ ଶୋଭା ଗୋପବାଳୀ ଯେ ।୧୦।
କାଳିନ୍ଦୀର ତଷ୍ଟୁ ପଦ୍ମ ମେଳ କିବା ନବ ନୀରଦେ ଦାମିନୀ ।
କାର୍ତ୍ତସ୍ବର ଥାଳବାଳ ତମାଳରେ ବେଢଣ୍ଡି ଅଛି ନିର୍ମାଣି ଯେ ।
    କୁନ୍ଦନରେ ମରକତ । କରିଛି କି ଚନ୍ଦ୍ରାଣୀ ସମ୍ପୁତ ଯେ । ୧୧ ।
କାମିନୀଙ୍କ ମଧ୍ୟେ ବିଜେ ନଟବର ବ୍ରହ୍ମାଣ୍ଡ ଯା ଖେଳଘର ।
କରୁଣାସାଗର ବାଞ୍ଛାକଳ୍ପତରୁ ଭବ ଅନୁରୂପେ ବର ଯେ ।
    କରୁଅଛନ୍ତି ପ୍ରଦାନ । କୃପାନିଧି ଅମ୍ବୁଜ ଆନନ ଯେ । ୧୨ ।
କରନ୍ତି ଆଳାପ ଛରାଗ ଛତିଶରାଗିଣୀ ମେଣି ଗୋପିନୀ ।
କେଦାର କନଡ଼ା ମଙ୍ଗଳ ମୁରଲୀ ଧ୍ୱନି ମୃତ୍ୟୁସଞ୍ଜୀବନୀ ଯେ ।
    କଲି ଅଜୀବଙ୍କୁ ଜୀବ । କର୍ଣ୍ଣେ ଶୁଣି ମୋହ ସର୍ବ ଜୀବ ଯେ । ୧୩ ।
କର୍ଣ୍ଣପଥେ ଶୁଣି ପାଷାଣ ଦ୍ରବଣ କମଳ ପ୍ରାଏ ବୋହିଲେ ।
କମଳ ସ୍ତବ୍ଧ ହୋଇଲେ ମରୁତ ସ୍ତମ୍ଭୀଭୂତରେ ରହିଲେ ଯେ ।
    କୁଧରମାନେ ଦ୍ରବିଲେ । କାଷ୍ଠ ଦାରୁମାନେ ପଲ୍ଲବିଲେ ଯେ । ୧୪ ।

କେତେ ଶୋଭା ଦଶୁଛନ୍ତି ଗନ୍ଧବତୀ ସାରଙ୍ଗଙ୍କ ଲାଗି ।
କାଳନ୍ଦୀରେ ଶୋଭା କୁମୁଦକୁ ମୁଦ କରନ୍ତି ଲାଗି କରଣ ଯେ ।
 କାନ୍ତିବନ୍ତ ବୃନ୍ଦାବନ । କୃଷ୍ଣ ଗୋପୀଙ୍କର ଲୀଳାସ୍ଥାନ ଯେ । ୧୫ ।
କରୁଛନ୍ତି କେଳି କେଳିକଦମ୍ବର ତଳେ ଜଗତଜନରତା ।
କଉଁ ଗୋପୀଙ୍କଲେ ଗନ୍ଧବତୀ ଶତା ଦଶନ୍ତ କେତେ ଶୋଭିତା ଯେ ।
 କାମକୃପାଣ ପରାଏ । କୃଷ୍ଣ ଧଇର୍ଯ୍ୟକୁ ତରଳାଏ ଯେ । ୧୬ ।
କାହା ସୀମନ୍ତରେ ହିନ୍ଦୁରର ଗାର ଊର୍ଦ୍ଧ୍ୱରେଖା ମନ ମୋହେ ।
କମ୍ବୁଧରଯୁତ କରବାଲେ କଏ କାମୀରକ୍ତେ ରଙ୍ଗମୟେ ଯେ ।
 କାହା ନୟନଖଞ୍ଜନ । କଜ୍ଜ୍ୱଳରେ ଦଶେ ଶୋଭବନ ଯେ । ୧୭ ।
କାହା ନେତ୍ରପ୍ରାନ୍ତ ଇଙ୍ଗିତ ଭଙ୍ଗିମା ଭୂଲତା ନାଶବା ଛବ ।
କଞ୍ଜନେତ୍ର ହୃଦ ଦେଖି ଯା ତରଳେ ବର୍ଣ୍ଣିବ ତା କଉଁ କବ ହେ ।
 କୃଷ୍ଣ ଚନ୍ଦ୍ର ଚନ୍ଦ୍ରକାନ୍ତି । କାମିନୀଏ ତେଜେ ଶୋଭା ପାନ୍ତି ଯେ ।
କାହା କର୍ଣ୍ଣକାପ ଦଶଇ ଝଲକ ମୁକୁର କାନ୍ତି ବଳଣ ।
କଞ୍ଚଚରଣରେ କନକନୂପୁର ନାଦେ ମୋହେ ତ୍ରିଭୁବନ ଯେ ।
 କାହା ନାସାରେ ବସଣୀ । କାବ୍ୟଛନ୍ଦକ ପାରଇ ଜଣି ଯେ । ୧୯ ।
କାହା କଣ୍ଠଦେଶେ ଗଜମୋତିହାର ଦଶେ ଅତି ମନୋହର ।
କୁନ୍ଦନରେ ଗୋପୀବଲ୍ଲଭ ମିଶାଇ କରଛି ମାଳା କଣ୍ଠର ଯେ ।
 କାହା କଟିରେ କଙ୍କିଣୀ । କଣି ନାଏ ମନ ନେତ୍ର ବେଣୀ ଯେ ।୨୦।
କାହାର ପାଦୁକା ଭରମ ହଂସକ ଶରୁ ଭରମ କରଇ ।
କାହା ମଞ୍ଜୀର ପ୍ରତିହାସ୍ୟ ପରାଏ ପଦ୍ମଣ୍ଡ ନାଏ ମଣାଇ ଯେ ।
 କାହା ଅଙ୍ଗୁଷ୍ଠି ଝୁଣ୍ଟିଆ । କବା ଡାକ ଉଥଳ ଖୁଣ୍ଟିଆ ଯେ । ୨୧ ।

---

୧୯।୧—ମୁକୁଳ—ଦଣ୍ଡନ
୨୦।୨—ଭରଛନ୍ତି ମେଳ ଶତ୍ରୁମ ସଙ୍ଗେ ବହଗାବୁ ଅବଗାତର ଯେ

କର୍ଣ୍ଣେ ଶୁଣି ରାମପାଣିଧ୍ୱନି ପସାଏ ଟଙ୍କାର ତନ ପୁର ।
କରୁଛନ୍ତି ରାସକେଳି ବ୍ରଜବାଳୀ ସଙ୍ଗରେ ବ୍ରଜକିଶୋର ଯେ ।
କରି ପ୍ରବନ୍ଧ ଗାୟନ । କରୁଛନ୍ତି ନୃତ୍ୟ ସଖୀଗଣ ଯେ । ୧୨ ।

କୁଞ୍ଜବିହାରୀ ଚରିତ ଯେହୁଁ ରସେ ତେ ବର୍ଣ୍ଣିବ ପାର କିବା ।
କହି ନାହିଁ ଭୋଗୀନାଥ ଯାହା ଅନନ୍ତ ସହସ୍ର-ବଦନ ସ୍ୱନ ଯେ ।
କେ ବର୍ଣ୍ଣିବ ଲୀଳାମାନ । କୃପା ନ କଲେ ରାଧାମୋହନ ଯେ ।୧୩।

କୋଟି କୋଟି କଳ୍ପ ଗଲେ ରାସଲୀଳା କେବେହେଁ କ୍ଷୟ ନୁହଇ ।
କେ କହିପାରିବ ଅକ୍ଷୟଲୀଳାକୁ କବି ନରେନ୍ଦ୍ର ବୋଲେ ଯେ ।
କର୍ଣ୍ଣପୁଟେ ଶୁଣି ଜନ । ଚହୁଁଥାନ୍ତି ଆଶ୍ରୟକୁ ଲୋଭି ଯେ । ୧୪ ।

କେଳି ଶେଷେ ବେଳୀକଦମ୍ବମୂଳରେ ବିଶ୍ରାମିଲେ ସର୍ବ ନାରୀ ।
କୋମଳ ପ୍ରଭଞ୍ଜନକୁ ଅପଘନ ଶ୍ରଦ୍ଧା ଲାଗିଲା ସବୁରି ଯେ ।
କଳେବର ଶ୍ରମ ହରି । କରିଛନ୍ତି ମଧ୍ୟେ ବିଜେ ହରି ଯେ । ୧୫ ।

କାହା ଆନନରେ ଘର୍ମ ଜରଜର ଲଭିଛି ଲାଲ ସିନ୍ଦୂର ।
କାହା ଅଳକ ଲମ୍ପଟେ ପଡ଼ି ଦଶେ ରାହୁଗ୍ରସ୍ତ ସୁଧାକର ଯେ ।
କେହୁ ପ୍ରକୀର୍ଣ୍ଣ ତାଳକ । କଳେବର ଶ୍ରମକୁ ହରଇ ଯେ । ୧୬ ।

କେ ବଲ୍ଲକୀତଳେ ବଲ୍ଲକୀ ଥୋଇଣ ବାଞ୍ଛେ ହେଲା ବସନରେ ।
କାକୋଦର ପରି କୃପାଧ୍ୱଜ ଧରି କେ ବସେ ବୃକ୍ଷ ତଳରେ ଯେ ।
କେ ନୃତ୍ୟରେ ଶ୍ରମ ପାଇ । କଣ୍ଠତଟରୁ ହାର ଫିଙ୍ଗାଇ ଯେ ।୧୭।

କାମିନୀଙ୍କ ମଧ୍ୟେ ବିଜେ ମାୟାଧର ମାୟା କଲେ ବଂଶୀଧାରୀ ।
କେହି ନ ଜାଣନ୍ତି ମାୟାଧର ମାୟା ବୃନ୍ଦାବଣି କର ଧରି ଯେ ।
କୃଷ୍ଣ ହୋଇଲେ ଅନ୍ତର । କରିବାକୁ କୁଞ୍ଜରେ ବିହାର ଯେ ।୧୮।

କର୍ଣ୍ଣପଥେ ଶୁଣି କୃତାର୍ଥ ହୋଇଲା ଭାବ ଯାନ କୃଷ୍ଣ କର ।
କୁଞ୍ଜବନୋଦ୍ଧାରୀ ବଂଶୀବଦନଥି କହିବେ ଭବୁ ଉଦ୍ଧାର ଯେ ।
କୁଞ୍ଜବିହାର ଏ ଗୀତ । କୋବିଦଙ୍କ କର୍ଣ୍ଣକୁ ଅମୃତ ଯେ । ୧୯ ।

---

୧୩।୨—କାକୋଦରନାଥ ବରି ନାହିଁ ଅନ୍ତ ଅନନ୍ତ ବଦନେ ସ୍ୱନ ଯେ ।

## ଊନବିଂଶ ଛାନ୍ଦ



### ବନବିହାର

### ରାଗ-ମଙ୍ଗଳଗୁଜ୍ଜରୀ

କର୍ଣ୍ଣେ ଶୁଣ ଭୃଙ୍ଗରାଜମାନେ ହେଲେ ସ୍ଥିର ।
କରୁ ବିକୁଳନାଶନ ଏ କୁଞ୍ଜବିହାର ଯେ । ୧ ।
କଳ ବସ୍ତ୍ରର କରଇ ମାଳସମକରେ ।
କୃଷ୍ଣବେଣୀ ଯେହ୍ନ କୃଷ୍ଣ ବୁଲନ୍ତି କୃଷ୍ଣରେ ଯେ । ୨ ।
କୃଷ୍ଣସାନୁ କୃଷ୍ଣସାନୁ କୃଷ୍ଣସାନୁ ନାହିଁ ।
କି ଶୋଭା ତମାଳମାଳ ମାଳଗିରେ ଥାଇ ଯେ । ୩ ।
କନ୍ଦରରୁ ଝର ଝର ଝରଇ କମଳ ।
କରନ୍ତି ତରଙ୍ଗ ରଙ୍ଗ ରଙ୍ଗଣୀ ମଣ୍ଡୂଳ ଯେ । ୪ ।
କର ସାରଙ୍ଗ ସାରଙ୍ଗ ସାରଙ୍ଗ ଶୀତଳ ।
କର୍ ମନ୍ଦ ମନ୍ଦମନ୍ଦ ବହଇ ଅନିଳ ଯେ । ୫ ।
କରଇ ମୁଞ୍ଜନ ଘନ ଘନଘନ ବନ ।
କରେ ଯା ମଧୂରେ ମଧୂ ମଧୁକୁ ସଞ୍ଚନ ଯେ । ୬ ।
କାନନେ ଭୃଙ୍ଗ ସୁମନା ପରେ ଭୃଙ୍ଗ ଭୃଙ୍ଗ ।
କି ଏ ବଣୀ ବଣୀ ବନିତା କି ପୁଷ୍ପଯୋଗ ଯେ । ୭ ।

### ଶୃଙ୍ଖଳା

କରନ୍ତି ବୃନ୍ଦାଙ୍କୁ ବୋଧ ଶୃଙ୍ଖଳାବନ୍ଧେଣ ।
କି ବିଚିତ୍ର ଅନା ସଖି ଦଶଇ କାନନ ଯେ । ୮ ।

---

୩।୨—ରଙ୍ଗଣୀମଣ୍ଡୂଳ—ରଙ୍ଗଣୀରେ ମେଳ

କାନନ ବାସନ୍ତ ଦେଖ ବାସନ୍ତୀ କୁସୁମ ।
କୁସୁମରେ ଶୋଭବନ ଦଶଇ କୃତ୍ରିମ ଯେ । ୯ ।
କୃତ୍ରିମ କନ୍ଦରେ ଅନା ବକାଶି କିଂଶୁକ ।
କିଂଶୁକ କଣ୍ଠରେ ଅନା ସଖି ଏ କରକ ଯେ । ୧୦ ।
କରକରଦଶୀ ପ୍ରାଣଧନ ଅନା କୁନ୍ଦ ।
କୁନ୍ଦରେ କି ସ୍ପନ୍ଦ କରଥାନ୍ତି ମୁକୁନ୍ଦ ଯେ । ୧୧ ।
କୁନ୍ଦର ସଙ୍ଗାତ ଏ ଅଟଇ କାଳସ୍କନ୍ଧ ।
କଉବା ଏ ବଚନ କେଲ୍ଲ କାହ୍ନ ସଖିବୃନ୍ଦ ଯେ । ୧୨

### ସିଂହାବଲୋକନ

କେଶଶ୍ରୀ ଅବଲୋକନେ କୁଞ୍ଜ ଅନା ଧନ ।
କୃତମାଳ ମାଳ ମାଳ ଦଶନ୍ତ ଶୋଭନ ଯେ । ୧୩ ।
କି ଶୋଭା ଦଶଇ ଦେଖ ସାରଙ୍ଗ ଧନୁରେ ।
କାନ୍ତହୀନ କାମିନୀଙ୍କ ହୃଦୟ ବଦାରେ ଯେ । ୧୪ ।
କୁଞ୍ଜେ କୁଞ୍ଜେ ସୁମନାମାନଙ୍କ ନାମ ଧରି ।
କହନ୍ତି ବୃନ୍ଦାଙ୍କୁ ଛଳ ବାକ୍ୟେ ବଂଶୀଧାରୀ ଯେ । ୧୫ ।
କୁସୁମବତୀ ହୋଇଛି ଅନା ଏ ସେବତୀ ।
କି ଶୋଭା ଏଥିରେ ବନମାଳୀ ପୁଂସଶ୍ରିତ ଯେ । ୧୬ ।
କଥନ ଏ ନାଗବଲ୍ଲୀ ଅନା ଅପୂର୍ବରେ ।
କୁରଙ୍ଗୀ ଶମ୍ବୁକ ଦେଖ ବଲ୍ଲୀକା ତଳରେ ଯେ । ୧୭ ।
କାନ୍ତ ଅଳକାନାମ୍ବୁକଜାନନ ବଳଣ ।
କର ବନାଳକ ଅଳି ସମ୍ଭାବନା ପୂର୍ଣ୍ଣ ଯେ । ୧୮ ।

### ବ୍ୟାପ୍ତଗତ

କରଣ ସେହଭଗତ ବଳା ଏ ଚରଣ ।
କଳୁଷ ତଳକୁ ଅନା ପଡ଼ିଛି ଭ୍ରମର ଯେ । ୧୯ ।

କେଡ଼େ ଉନ୍ନତ ଏ ତରୁ ଉପମାନ୍ତି ସ୍ଥାନ ।
କରନ୍ତି ବିରଞ୍ଚି ରଣ ନାମକୁ ଅର୍ଜ୍ଜନ ଯେ । ୧୦ ।
କି ଶୋଭା ଏ ବଲ୍ଲବ ବଲ୍ଲବୀଗୋଷ୍ଠୀ ।
କୃଷ୍ଣସଙ୍ଗ ହୋଇବାରୁ ଅଶେଶାଖା ତରୁଷ୍ଟି ଯେ । ୧୧ ।
କୁନ୍ଦ କେତକୀ କୁଟବଳ ନଥିଲୀ ମରୁଆ ।
କି ଶୋଭା ଦଶଇ କୁଞ୍ଜ ଅନା ପ୍ରାଣପ୍ରିୟା ଯେ । ୧୨ ।
କାନ୍ତା ଅନା ମାଧବୀକ ବକୁଳ ଉପରେ ।
କାନ୍ତ କି ସ୍ନେହେ କାନ୍ତାକୁ ଧରନ୍ତି କୋଳରେ ଯେ ।୧୩।

ମହାଯମକ

କହୁଛନ୍ତି ବୃନ୍ଦାବନ ଧରି ବନମାଳୀ ।
କାନ୍ତା ଏ ମହାଯମକ ଅନା ବନମାଳୀ ଯେ । ୧୪ ।
କି ଶୋଭା ଦଶନ୍ତି ଆଳୀ ଅନା ଏ ନଥିଳୀ ।
କାନ୍ତହୀନ ନାରୀଙ୍କର ଆଳି ଏ ନଥିଳୀ ଯେ । ୧୫ ।
କଳକଣ୍ଠ ବାଣୀ ବସନ୍ତରେ ମନୋହର ।
କାନନେ ବସନ୍ତପକ୍ଷୀ ବସନ୍ତେ ସୁନ୍ଦର ଯେ । ୧୬ ।
କାଳିନ୍ଦୀକି ଅନା ସଖି କମଳ କମଳ ।
କାନ୍ତବକ୍ତ୍ର ଦିଶୁଛନ୍ତି କମଳ କମଳ ଯେ । ୧୭ ।
କୁମୁଦ ବିକାଶି କରୁଅଛନ୍ତି କୁମୁଦ ।
କର ବିଲୋକନ ହାସକୁମୁଦକୁ ମୁଦ ଯେ । ୧୮ ।
କାନନରେ ହର ହର-ବାଳୀ କର ବାଳୀ ।
କରୁଛନ୍ତି ହବ ହର ବାଳୀ ଯେନ କେଳି ଯେ । ୧୯ ।
କାନନେ ବନମାଳୀ ବିହାର ବନମାଳୀ ।
କର ଗ୍ରୀତ ମନା ଏଥି ନାହିଁ ବନମାଳୀ ଯେ । ୩୦ ।

## ସଙ୍ଗାଯମକ

କାନ୍ତା କର ଧର କୁଞ୍ଜେ ରସିକ ନାଗର ।
କରନ୍ତୁ ତୋଷ ମାନସ ସଙ୍ଗାଯମକର ଯେ । ୩୧ ।
କେଡ଼େ ପ୍ରିୟକ ମାଧବୀ ମାଧବେ ସଙ୍ଗାତ ।
କେଡ଼େ ପ୍ରିୟକ ମାଧବୀ ମାଧବେ ସଙ୍ଗାତ ଯେ । ୩୨ ।
କନକଅଙ୍ଗୀ ଅନା ଏ କନକ କୁସୁମ ।
କନକଅଙ୍ଗୀ ଅନା ଏ କନକ କୁସୁମ ଯେ । ୩୩ ।
କାନ୍ତା ଏ ବନମାଳୀରେ ଶୋଭି ବନମାଳୀ ।
କାନ୍ତା ଏ ବନମାଳୀରେ ଶୋଭି ବନମାଳୀ ଯେ । ୩୪ ।
କି ଶୋଭି ଏ ଘନପୁଷ୍ପ ଅନା ଘନକେଶୀ ।
କି ଶୋଭି ଏ ଘନପୁଷ୍ପ ଅନା ଘନକେଶୀ ଯେ । ୩୫ ।
କେଳି କରନ୍ତୁ ସାରଙ୍ଗ ସାରଙ୍ଗରେ ଅନା ।
କେଳି କରନ୍ତୁ ସାରଙ୍ଗ ସାରଙ୍ଗରେ ଅନା ଯେ । ୩୬ ।
କାନନେ ବେତଣ୍ଡଗମନୁ ପ୍ରତାପ ନାହିଁ ।
କାନନେ ବେତଣ୍ଡଗମନୁ ପ୍ରତାପ ନାହିଁ ଯେ । ୩୭ ।

## ଛଳବଚନ

କହନ୍ତି ଇଙ୍ଗିତବାଣୀ ମନ୍ଦ ମନ୍ଦ ହସି ।
କହ କୁଞ୍ଜେ କେତେ ଦ୍ୱିଜରାଜ ଛନ୍ତି ବସି ଯେ । ୩୮ ।
କାମିନୀ କହନ୍ତି ଅଷ୍ଟ ଅଷ୍ଟପଦ ବେଦ ।
କୁଞ୍ଜବିହାରୀ ଏ ସାରଫଳ ଅର୍ଥ ଭିନ ଯେ । ୩୯ ।
କୃଷ୍ଣ ମହୀରୁହ କାଣ୍ଡେ ଶମ୍ବୁକ ଅନାଇ ।
କହନ୍ତି ବୃନ୍ଦାଙ୍କୁ ଲକ୍ଷ୍ୟ ଦଅ ପ୍ରାଣସଖୀ ଗୋ । ୪୦ ।

---

୩୪—କାନ୍ତବନର କେବଳ ଏ ସୁମନା । କାନ୍ତବନର ବଦର ତାଳୀ ଏ ସୁମନା ଯେ ।

କହନ୍ତି ପଦ୍ମଆନନା ଜାହ୍ନବୀ-ନନ୍ଦନ ।
କଲେ ଯାହା ମୁଖ ଅଙ୍କେ ଏ ଉପମା ଜାଣ ସେ । ୪୧ ।
କହିବାରୁ ପ୍ରିୟବତୀ ରସଉକ୍ତି ଛଳ ।
କରୁଣାସାଗର ହରି କଲେ ସ୍ନେହେ କୋଳ ସେ । ୪୨ ।
କୋଳେ ଯେବେ ଅନ୍ତର୍ଲାପି ସୁସନ୍ତ ନାଗର ।
କେ ଅସ୍ତ୍ର ଉତ୍ତରରେ ଭରସ୍ତିଜନର ଗୋ । ୪୩ ।
କେହୁ ଉଗ୍ରଜନ୍ତମାନଙ୍କେ ବଶଇ ଶୀତଳ ।
କାଳରନ୍ଧ୍ରେ କାହା ବାଣୀ ଶୁଭଇ ମଞ୍ଜୁଳ ସେ । ୪୪ ।
କୁସୁମକାଳରେ କାହା ବିଗ୍ରହ ସୁନ୍ଦର ।
କାହିଁରେ ଶୟନ କଲେ ଜାହ୍ନବୀକୁମର ସେ । ୪୫ ।
କ ନେଇ ହିରଣ୍ୟଗର୍ଭ ଲକ୍ଷ୍ମୀରେ ରଖନ୍ତି ।
କୋଟଦେ ଦ୍ୱିପଙ୍କ ସଂଖ୍ୟା ଶାସ୍ତ୍ରେ କ ଲେଖନ୍ତି ସେ ।୪୬।
କଉଁ ବଳ କଲ୍ୟାଣ ଅବନୀ କଲେ ନାଶ ।
କାହା ଶ୍ରୁତି ଯୋଗେ ଉପଦେଶ ଦ୍ୟନ୍ତି ଦାସ ସେ । ୪୭ ।
କ ବନ୍ଧ ବାନ୍ଧିଲେ ପାର୍ଥ ହିତ୍ନୁ ଦାୟାଦର ।
କାହିଁରେ ଅନନ୍ତା ଶୋଭେ ବଶେ ଅନନ୍ତର ସେ । ୪୮ ।
କ ନାମ ବୋଲାଇ ଲକ୍ଷ୍ମଣଦେବ ସବନର ।
କ ନଥଇ ପ୍ରଜାଙ୍କ ଠାବରୁ ନୃପବର ସେ । ୪୯ ।

---

ଅନ୍ତର୍ଲାପିକା—ଶଶୀ, ଶିବ, ବନ, ଶର—ଏହି ୫୦ ଅକ୍ଷରରୁ ଅନୁକ୍ରମ-ଉପକ୍ରମ ପାଠରେ ୪୪ରୁ ୫୦ ପର୍ଯ୍ୟନ୍ତ ପାଦଗୁଡ଼ିକର ପ୍ରଶ୍ନର ଉତ୍ତର ମିଳିବ—୪୯ ପଦର ଦ୍ୱିତୀୟ ଚରଣର ଉତ୍ତର ସେହି ୫୦ ଅକ୍ଷର । ଉତ୍ତର—ଶଶୀ, ଶିବ, ବନ, ଶର, ରସ, ନବ, ବଶି, ଶିବ, ଶର, ଶିର, ଧୀର, ବର, ବର, ନର—ଶେଷ ଛଅଟି ଉତ୍ତର ଶେଷ ଅକ୍ଷର ସଙ୍ଗେ ପ୍ରଥମ ଦ୍ୱିତୀୟ ଅକ୍ଷର ଯୋଗ ମିଳାଇଲେ ଶଶିବ ।

କଉଁ ଦ୍ରୁମେ ପ୍ରଳୟରେ ରହିଲେ ଶ୍ରୀହରି ।
କେ ତପନ କୋଟି ଜାବେ ଶ୍ରେଷ୍ଠ ହେମଗୋଷ୍ଠୀ ଗୋ । ୫୦ ।
କାମିନୀ କହନ୍ତି ଶଶୀ, ପିକ, ବନ, ଶର ।
କଣ୍ଠେ ଶୁଣି ପରିରମ୍ଭ କଲେ ବଂଶୀଧର ଯେ । ୫୧ ।
କହନ୍ତୁ ନର୍ମଠ ଦେଇ ବହିର୍ଲିପି ଯେନ !
କର ବେଦ ବର୍ଣ୍ଣ ଲେଖି ଦକ୍ଷିଣକୁ ଦାନ ଯେ । ୫୨ ।
କ ବୈଚିତ୍ର୍ୟ ଜାଣିଲେ ହର ଲପନ ବିଦାରି ।
କଉଁ ବୃକ୍ଷେ ସାମ୍ବକ ଥୋଇଲେ ଦୁତ ହରି ଯେ । ୫୩ ।
କ ବୋଲି ବୋଲନ୍ତି ମିତ୍ରପୁତ୍ରକୁ ସଂସାରେ ।
କରନ୍ତି କୁମରେ ଅଳି କାହାକୁ କ୍ଷୁଧାରେ ଯେ । ୫୪ ।
କ ଦେଲେ ରାମଙ୍କୁ ସୀତା ଧନୁଭଙ୍ଗ ଅନ୍ତେ ।
କାହିଁ ବଧ ହେମମୃଗ ବଧୂର ପଣ୍ଡିତେ ଯେ । ୫୫ ।
କା ସୁତ କଲ୍ୟାଣ ମଣ୍ଡି କଳାକ ଦହନ ।
ଜାନୁଠାରେ କାନ୍ତା କିସ କରନ୍ତି ପୁଣ ଯେ । ୫୬ ।
କିସ ବୋଲଇ ଅନଙ୍ଗ ଅମର ଶବ୍ଦରେ ।
କେହ୍ନୁ ଅବସ୍ତ ଅଛଇ ଦେବମଣିଠାରେ ଯେ । ୫୭ ।
କମଳ କାହା କିରଣେ ପ୍ରଫୁଲ୍ଲ ହୁଅଇ ।
କୁଜବାକୁ କାହିଁରୁ ଭାବିଲେ ଧବଗ୍ରାହ୍ଣ ଯେ । ୫୮ ।
କଉଁ ଦ୍ୱିଜ ସୀତାପାଶେ ରଖେ ଚନ୍ଦ୍ରହାସ ।
କାହା ସୁତ ବଶିଷ୍ଠ-ଶାଳକ କଲା ନାଶ ଯେ । ୫୯ ।

---

ବହିର୍ଲିପିପାଠ—ତଳା, ଶମୀ, ଦାନ, ମାଲ୍ଲ, ମାଳ, ଷର, ଚାର, ମାର, ନାବ, ମାର, ରବ, ବୃନ୍ଦ, ଷାଗ, କାର, ବୃନ୍ଦା, ଜନ । ବାମିନୀ ବୁଲ ରଘନ, ବଶ ଅଷ୍ଟଶତ ଦାନ ।

ସ—ରବଦାର—ରବଳସ ।

କଉଁ ଆସ୍ଥିସ୍ଥିକ କାନ୍ଧେ ବସାଇଲେ ହରି ।
ତାହା ବାନ୍ଧବ ଅଛନ୍ତି ଶଙ୍ଖଚକ୍ରଧାରୀ ଯେ । ୭୦ ।
କମଳନୟନୀ ବୋଲନ୍ତି ଶୁଣ ବଂଶୀଧାରୀ ।
କେମନ୍ତେ ଜାଣିବି ଏହା ଗୁରୁ ମୁଁ ନ କରି ଯେ । ୭୧ ।
କହନ୍ତି କରକୁ ଧରି ସାରଙ୍ଗାଧରବର ।
କାନ୍ତା ଏ ଅଗୁରୁ ବିଦ୍ୟା ଅଟଇ ନାଗରବର ରେ । ୭୨ ।
କହି ରସଗର୍ଭ ବାଣୀ କଲେ ପରିରମ୍ଭ ।
କୋଳେ ଯେନ କମଳବଦନେ ଦେଲେ ଚୁମ୍ବ ଯେ । ୭୩ ।
କଣ୍ଟରଦନ ପଲଙ୍କ ବେତଣ୍ଡ ନିର୍ମାଣି ।
କୁସୁମ ଶେଯ ସଜାଇ ଥିଲା ଆଗୁ ଆଣି ଯେ । ୭୪ ।
କୋଳେ ଯେନ ରସବତୀ ରସିକମୋହନ ।
କୁସୁମଶେଯେ କରନ୍ତି କେଳିକି ବିଧାନ ଯେ । ୭୫ ।
କୁଞ୍ଜେ ପ୍ରିୟବତୀ ଯେନ ପହୁଡ଼ିଲେ ହରି ।
କେ କହି ପାରିବ ତାହା ନରଦେହ ଧରି ଯେ । ୭୬ ।
କରନ୍ତି କୁଞ୍ଜେ ବିହାର ନିଦ୍ରା ଅବସାନେ ।
କୃତାର୍ଥ ହୋଇବ ଧୀରେ ଯଥ ବେଦ କର୍ଣ୍ଣେ ଯେ । ୭୭ ।
କୃଷ୍ଣଙ୍କର କହେ ରାଧାମୋହନ ଚରଣ ।
କରି ଚିନ୍ତା ଦିବାନିଶି ଯାଉ ମୋର ଦିନ ଯେ । ୭୮ ।



## ବିଂଶ ଛାନ୍ଦ



### ରାଗ — ଲଳିତ ଗଉଡ଼ମାଳଶ୍ରୀ

କୁଞ୍ଜେ କୁଞ୍ଜେ ଫୁଲୁଛନ୍ତି ରଙ୍ଗେ ରାଧାମୋହନ ୟ
କୋବିଦେ ପିଅ ଶ୍ରୁତିରେ ନ ଦଣ୍ଡିବ ଶମନ । ଘୋଷା ।

କଲ୍ୟାଣ ଦୋଳ କଲ୍ୟାଣ ଦ୍ରୁମରେ ଲକ୍ଷଣ ।
କରନ୍ତି ବିରଞ୍ଚି ରଚି ଆଗନ୍ତୁ ଚା ସଞ୍ଜନ । ୧ ।
କାମିନୀକୁଳ-ମୁକୁଟମଣି ସଙ୍ଗେ ଘେନଣ ।
କହନ୍ତି ବଚନ ସ୍ଥାନ ଅଟା ଏ ମଧୁବନ । ୨ ।
କାନ୍ତ ଚଉଦରଥରୁ ବଳି ଦଶେ ଶୋଭନ ।
କାମୀ କାମିନୀଜନଙ୍କ ଉନ୍ମତ ଏ ଭୁବନ । ୩ ।
କରନ୍ତି ବସନ୍ତେ କେଳି ଗଉରୀ ତ୍ରିଲୋଚନ ।
କଇଳାସ କାନନରେ ଏକାନ୍ତେ ବେଦ ଜନ । ୪ ।
କମଣ୍ଡଳଧାରୀ ଋତୁବ୍ରତେ ଗନ୍ଧମାଦନ ।
କରନ୍ତି ବନଏ ପାର୍ବତୀକି ସଙ୍ଗେ ଘେନଣ । ୫ ।
କାନନେ ଅପନ୍ତ ଶଚୀ ଘେନି ଶଚୀରମଣ ।
କଲି ବନ୍ଦ ତୁମ୍ଭଙ୍କୁ ଆମ୍ଭଙ୍କୁ ଏଣୁ ବଚନ । ୬ ।
ଚନ୍ଦ୍ର ପୁରପଟ୍ଟରାଣୀ ବୀଣାଜିଣା ବଚନ ।
କହିବା ଏକାନ୍ତେ କେଳି କାହ୍ନାଙ୍କ ସଖୀଗଣ । ୭ ।
କି ଶୋଭା ଏ ଚନ୍ଦ୍ରାତପ ପ୍ରାୟେ ଚନ୍ଦ୍ରକିରଣ ।
କାଞ୍ଚନ ଛଦନେ ଗଳି ଗନ୍ଧବତୀ ଶୋଭନ । ୮ ।

କାନ୍ତା ତୋ ହୃଦ କମଳ ଆଦରଣ ବନ୍ଧଣ ।
କଲ୍ପିଲ୍ଲ ସମ୍ପତ୍ତି କାମୀଜନଙ୍କର ପର୍ଣ୍ଣ । ୯ ।
କଲକଣ୍ଠ-ସ୍ୱାଣାଙ୍କଣାକଣ୍ଠୀ ଗଣ୍ଡି ରଚନ ।
କହୁଛନ୍ତି କୌଶସ୍ୱରେ ପ୍ରିୟ ସୂନୃବଚନ । ୧୦ ।
କାନନେ ପ୍ରିୟାପାଣିକି ଧର ପଦ୍ମଲୋଚନ ।
କୁଞ୍ଜକୁ ଅନା ସଜନୀ ଶୋଭେ ଦଶେ ସୁମନ । ୧୧ ।
କର ହତ ପଲ୍ଲବ ପଲାଶ ପୁଷ୍ପ ଭୂଷଣ ।
କଞ୍ଚନଥନଳ ପ୍ରାଏ ଦଶେ ସୁମାରଚନ । ୧୨ ।
କୃତମାଳ ତମାଳ ନିକଟରେ ଶୋଭବନ ।
କନକକୁସୁମ ବୋଲି ବୋଲନ୍ତି ସୁଜ୍ଞଜନ । ୧୩ ।
କୁଞ୍ଜେ କୁଞ୍ଜେ ବହ୍ନର ପ୍ରବେଶ କେଳିସଦନ ।
କି ସ୍ୱଚ୍ଛ ଦଶେ ସଖୀ ଅନା ଏ ନିଧୁବନ । ୧୪ ।
କାନ୍ତାମଣି ତୋ ସୁଷମା ସମ ତିନି ଭୁବନ ।
କି ବୋଲି ଡାକିବି ଆନ ଲକ୍ଷ୍ୟ ନୃତ୍ତନ୍ତି ପୁଣ । ୧୫ ।
କୁସୁମଗର୍ଭକ ବୋଲି ବୋଲନ୍ତି ବା ବଚନ ।
କରିଣ୍ଣୁ ବରଞ୍ଜ ରଣ ବେଗ ଅନ୍ତେ ମୁଞ୍ଚନ । ୧୬ ।
କଲ୍ୟାଣ ଦ୍ୱାର କଣ୍ଠର ବୋଲନ୍ତି ବା ମଣ୍ଡନ ।
କରନ୍ତି ଜୟ ବିଜୟ ଦେଲେ ତାହା ଦର୍ଶନ । ୧୭ ।
କମଳ ମିତ୍ର-ପୀରତି ଥୟ ନୁହଇ ପୁଣ ।
କାନ୍ତ ଥାଉଁ ସଙ୍ଗ କରେ ଯାଇ ଗନ୍ଧମାଦନ । ୧୮ ।
କୋଟି ଯୁଗାନ୍ତେ ତୋ ସଙ୍ଗ ମୋ ସଙ୍ଗ ନୁହେ ଆନ ।
କରେ ତିଳପୁଷ୍ପ ବାସ ତନୁ ତେଜ ଯେସନ । ୧୯ ।
କୃଶାନୁ ବାରୁଦ ପ୍ରୀତି ଅଟେ ସଖୀ ଯେସନ ।
କଲେ ମେଳ ଏକାବେଳେ ମୁଞ୍ଚନ୍ତି ସେ ଜୀବନ । ୨୦ ।

କୃପାନିଧାନ୍ତ ତୋ ସଙ୍ଗ ମୋହର ସଙ୍ଗ ତେସନ ।
କେବେହେଁ ଯୁଗଯୁଗାନ୍ତେ ନୁହଇ ସେହୁ ଭିନ୍ନ । ୨୧ ।
କହନ୍ତ କହୁଛ ତୁ ମୋ କପାଳର ଲେଖନ ।
କମ୍ପଳକା ଇକ୍ଷଣର ତୁହି ମୋ ପ୍ରାଣଧନ । ୨୨ ।
କହନ୍ତ ଶ୍ରୀମତୀ ଶୁଣି ବଂଶୀଧାରୀ ବଚନ ।
କୃପାନିଧି ବୋଇଲେ କି କହ ତୁଏ ଏମାନ । ୨୩ ।
କୃତ୍ତିବାସଠାରୁ ବଧି ବଡ଼ ନୁହନ୍ତି ଜାଣ ।
କୃପାଳୁ ଉତ୍ତମାଙ୍ଗରେ କଲେ ତାଙ୍କୁ ଧାରଣ । ୨୪ ।
କୃପାନିଧି ସଉରଭ ସଙ୍ଗତରେ ଇନ୍ଧନ ।
କରନ୍ତି ବକ୍ଷ ଅଙ୍ଗରେ ଲେପନ ସୁଜ୍ଞଜନ । ୨୫ ।
କଉତୁକରେ ସେଠାରୁ ବିଜଏ ବେନି ଜନ ।
କଳାମେଘରେ ଦାମିନୀ ପରାଏ ଶୋଭାବନ । ୨୬ ।
କଞ୍ଜନୟନ ନବ ଅବୟବ ବୋହୂଣ ।
କୁସୁମକାଘାତ ଗୁଡ଼ କାନ୍ତା ସଙ୍ଗେ ଗମନ । ୨୭ ।
କରିବାକୁ ରତି ସଙ୍ଗେ ଉତ୍ରତପ ନାଶନ ।
କରନ୍ତ ବନମାଳୀରେ ଗମନ ବେନି ଜନ । ୨୮ ।
କମଳକୃଷ୍ଟି ପରାଏ ଶୋଭା କୁଞ୍ଜଅୟନ ।
କି ତପସ୍ୟା ଗନ୍ଧବତୀ କଲା କେତେ କାଳେଣ । ୨୯ ।
କଉତୁକେ ସାରଙ୍ଗାଧରାର କର ଧରଣ ।
କରନ୍ତ ବନବିହାର ରଙ୍ଗେ ବଂଶୀବଦନ । ୩୦ ।
କୁଞ୍ଜ ସବୁ ବାଲି ବାଟେ ନ ଚଳଇ ଚରଣ ।
କନକ ହଂସକ ଧ୍ୱନି ନ ଶୁଭନ୍ତେ ଶ୍ରବଣ । ୩୧ ।
କହନ୍ତି ସ୍ନେହରେ ଜବା-ଅଧରୀକ ବଚନ ।
ଇନ୍ଦୁ ବସ ସ୍ନେହ ମୋତେ ଲାଗିଲା ପ୍ରାଣଧନ । ୩୨ ।

କୃଷ୍ଣବାଣୀ ଶୁଣି ତାର-ଅଙ୍ଗୀ ତୋଷ ହୋଇଣ ।
କହନ୍ତେ ହଜେ କଲେ ବାଳୀ ଚର୍ମଦେବଣେ ଯାଇଣ । ୩୩ ।
କହନ୍ତେ ଯେନ ରସବତୀ ହଜେ ବଂଶୀବଦନ ।
କୁଞ୍ଜ ନବଡ଼ ଆସ୍ତମ ଅନ୍ଧାର ନଧୁବନ । ୩୪ ।
କେତେ ଦୂର ଯାନ୍ତେ ଗର୍ବ କଲେ ନାଗରଜନ ।
କେ ମୋ ସମ ଷୋଳସସ୍ର ଯେତେକ ଗୋପୀଗଣ । ୩୫ ।
କୃଷ୍ଣ ବଶ ମୋ ରସରେ ଧନ୍ୟ ମୋହ୍ନ ଜୀବନ ।
କେ ମୋହ୍ନ ସମାନ ଆଉ ହେବେ ତିନ ଭୁବନ । ୩୬ ।
କରେ ଅମୃତ ବନାଣ ଗନ୍ଧବତୀ ଯେସନ ।
କରଇ ଅଶୁଦ୍ଧ ନ ଲାଗଇ ଦେବବ୍ରାହ୍ମଣ । ୩୭ ।
କଲେ ଗର୍ବ ଖର୍ବ କରିବାକୁ ବଂଶୀବଦନ ।
କରେ ଗୋଲ ଯୋଜନଗନ୍ଧାକୁ ନନ୍ଦନନ୍ଦନ । ୩୮ ।
କହନ୍ତି ସଜନୀ ଶୋଷ ଗୃହ୍ଣ ପଦ୍ମଚରଣ ।
କମଳପାଦେ ଯାବକ ଲେଖିବାକୁ ମୋ ମନ । ୩୯ ।
କର ଯାବକ ଲେଖନ ଶହବନ୍ତ କାନନ ।
କବ ହୋଇ ବର୍ଣ୍ଣିବାକୁ କେ ହୋଇବ ଭାଜନ । ୪୦ ।
କହନ୍ତ ବନମାଳୀକ ବ୍ରଜବାଳୀ ହସିଣ ।
କରିବ ବନମାଳୀକ ଚୂଳ ପରେ ମଣ୍ଡଣ । ୪୧ ।
କଲେ ହକେ ଲତାତଳେ ପ୍ରିୟବନ୍ତୀ ଯେସନ ।
କରନ୍ତ ନଥାଳୀ ଆଳୀ ତୋଳ ଚୂଳେ ମଣ୍ଡଣ । ୪୨ ।
କମଳନୟନୀ ମୁଖବାସେ ଗନ୍ଧମାଦନ ।
କରେ ଚଞ୍ଚଳକ ଧୂନ ବୁଲି ଚନ୍ଦ୍ରବଦନ । ୪୩ ।

---

୪୧।୨—ବନମାଳୀଙ୍କ ଚୂଳପରେ—ବନମାଳାରେ ବାନ୍ଧବୁ ।

କରେ ଧରି ଲତା ଡାଳ ନବାବନ୍ତେ ବନ୍ଧନ ।
କନ୍ଦରୁ ପଡ଼ିଲେ ନ ସମ୍ଭାଳି ନାଗ୍ରିରତନ । ୪୪ ।
କମଳନୟନ ହରି ଅନ୍ତର ସେହିକ୍ଷଣ ।
କରନ୍ତି ଶୋକ ରମଣୀ ଚିନ୍ତି ପଦ୍ମଚରଣ । ୪୫ ।
କର୍ଣ୍ଣେ ଶ୍ରଦ୍ଧାବନ୍ତ ହୋଇ ପାନ କର ସୁଜନ ।
କଳୁଷ ବିନାଶ ହେବ ନ ଦଣ୍ଡିବ ଶମନ । ୪୬ ।
କୃଷ୍ଣକଥା ଶୁଣି ଯାର ନେତ୍ରୁ ଝରେ ଜୀବନ ।
କି କରିବ ଗୃହ ତେଜି ପଶିଲେ ଘୋର ବନ । ୪୭ ।
କହେ କୃଷ୍ଣ କର ଧ୍ୟାନ ରାଧାକୃଷ୍ଣ ଚରଣ ।
କର ଶ୍ରୀମତୀ ଶ୍ରୀପତି ଭବଜଳୁ ତାରଣ । ୪୮ ।



# ଏକବିଂଶ ଛାନ୍ଦ



ରାଗ—ବିଳାସମଞ୍ଜରୀ

କରି ଉତ୍ତମ ରହିକେ ମନରେ ବିଚାରି । କମଳନୟନ କୃଷ୍ଣ ହେବାରୁ ଅନ୍ତରି । କୁରଙ୍ଗୀ ପରାଏ ହୋଇ । କରନ୍ତି ରୋଦନ ସଖୀ ଆଗଙ୍କୁ ବଢ଼ାଇ । ୧ ।

କାଳିନ୍ଦୀକୂଳରେ ଆହେ ବରଜସୁନ୍ଦର । କରିଥିଲ ପରା ମୋତେ କଣ୍ଠେ ହାରହାର । କଣ୍ଠା ହୋଇଲ ନିଷ୍ଠୁର । କଲ ଅରଣ୍ୟମାଳରେ ପ୍ରାଏ ବଂଶୀଧର । ୨ ।

କହିଥିଲ ମରା ମୋତେ ଅଙ୍କେ ବସାଇଣ । କାନ୍ତା ତୋ ବିନା ଆନ ନାହିଁରେ ତାହିଁ ମନ । କପଁା ହୋଇଲ୍ ତା ଆନ । କଳାପଚୂଳରେ ଏ କ ରୀତି ହେ ମୋହନ । ୩ ।

କଳାକରଜିତ ମୁଖ ପ୍ରଫୁଲ୍ଲ ବଦନ । କାନନେ ଅନ୍ତର କଲ ଗୋପୀଙ୍କ ଜୀବନ । କାମଅନଳେ ପକାଇ । କୁସୁମ ଚୂମ୍ବିଲ୍ ଅଳି ପ୍ରାଏ ସର୍ବଗ୍ରାହୀ । ୪ ।

କାହିଁ ଗଲ ଭୂମ୍ଭ ଅନୁକମ୍ପା ଏହା କଲ । କମଳାଜନକ ପ୍ରାଏ କୂଳେ କଗ୍ଗୁଡ଼ିଲ । କୋଳରାଣ୍ଡ ଆଚରିଲ । କନ୍ଦରୁ ପ୍ରେମ-ଲତାକୁ ତାଡ଼ି ପକାଇଲ । ୫ ।

କନ୍ୟାସନ୍ଧକାଳେ ମୋତେ ଏକାନ୍ତେ ଡାକିଲ । କୁସୁମ କୁଞ୍ଜବନରୁ ଆଣିବା ବୋଇଲ । କୂର୍ମ ଉତ୍ତମାଙ୍ଗ ପରି । କୁଞ୍ଜରେ ଲୁଚିଲ୍ ନାଥ ମୋତେ ଏକା କରି । ୬ ।

ନକର୍ଥନା ବଦେହ ପଥିକ ପରି ଥରେ । କୃଷ୍ଣ ଶଲ୍ୟା କରି ନେଲ ଅଶ୍ରୁଜଳ ଝରେ । କୁଞ୍ଜବନୋଦଧି ହରି । କମଳନୟନ କୁଞ୍ଜ ଆସ ବଂଶୀଧାରୀ । ୭ ।

କାମିନୀକଦମ୍ବ ସ୍ନେହ-ସରୋବର-ଜଳେ । କି ନିମନ୍ତରେ ବାନ୍ଧି ଥିଲ ଗୋପୀମୀନ ମେଳେ । କଟାକ୍ଷକୁ କଣ୍ଟା କରି । କାମ ବଡ଼ସୀରେ ମୋତେ ଆଣିଲ ଉଠାଇ । ୮ ।

କରିଥିଲ ଅନୁରାଗ ଏମନ୍ତ ଘାତକ । କୃପା ଥିଲେ ଲାଭ ହରି ଦେଇ ସୁଗତକ । କୃପାବଲୋକନେ ବନ୍ଦା । କମଳଚରଣେ ବନ୍ଦା ହୋଇଛନ୍ତି ଗୋପିକା । ୯ ।

କେଡ଼େ ସ୍ନେହ କରି ମୋତେ ଥିଲ ରସାଇ । କିପାଁ ଅନାଦର କରି ଦେଉଛ ଭସାଇ । କାମ ଜ୍ୱାଳାକୁ ମୁହିଁ । କାହା ଦାସୀ କୁହାଇବ କହନ୍ତ କହ୍ନାଇ । ୧୦ ।

କେତେ ପ୍ରୟୋଜନ ଲୋକ ଏ ଲୋକଭିତରେ । କାହାକୁ ନ ଚାହିଁଅଛ ଅଧରାମୃତରେ । କରିଥିଲ ବହୁ ଆଶା । କାଳେ ନାଶ କଲ ଆଣି ସକଳ ଭରସା । ୧୧ ।

କାଳ ଏ କାଳ ତ କାଳ ମଦନ ପଞ୍ଚାଳ । କାମ ଅନଳରେ କାୟା କିପାଇଁ ମୋ ଡାଳ । କୃପା କମଳକୁ ଡାଳ । କାୟାରୁ ଫୁଲିଙ୍ଗ ନିଭିଯାଉ ନନ୍ଦବାଳ । ୧୨ ।

କାନ୍ତିସ୍ୱର ଜଣି ଶୋଭା ଦଶଇ ମୋ ଦେହ । କନକକୁସୁମ ପ୍ରାଏ ବାସେ ମନ୍ଦମନ୍ଦ । କାହୁଁ ଜାଣିବ ମୋ ଭାବ । କାନନେ ସୁରଭି-ରେଖା ଏ ଘାତ ସ୍ୱଭାବ । ୧୩ ।

କୃଷ୍ଣଙ୍କୁ ନ ଦେଖି ଏଣେ କଳାକରମୁଖୀ । କୁଞ୍ଜେ କୁଞ୍ଜେ ସଖୀଗଣ ଖୋଜନ୍ତି ନିରେଖି । କରୁଅଛନ୍ତି ରୋଦନ । କାନନେ ଅନ୍ତର ହେଲେ ଗୋପୀଙ୍କର ଧନ । ୧୪ ।

କୁଞ୍ଜ ପୁଞ୍ଜ ଘେରେ ସଙ୍ଗେ ନବ୍ୟା ଦେଖି ଶ୍ରେଣୀ । କୃଷ୍ଣପ୍ରିୟା ସୁଦେବକା ସେତେକ ଗୋପେଣୀ । କାନନରେ ପାଦପଙ୍କ । କନ୍ଧ କନ୍ଧ ରନ୍ଧ ରନ୍ଧ ପଗ୍ରବନ୍ତ ତାଙ୍କୁ । ୧୫ ।

କନ୍ଧ ମସ୍ତିରୁନ୍ଧେ କାହ୍ନି ଅତ୍ୟନ୍ତ ମୋହନ । କାମୀଜନମାନଙ୍କର ଶ୍ରୀହରଚନ୍ଦନ । କର୍ପା କୁଳଶହ୍ରଦୟ । କରିଗଲେ ଆମ୍ଭଠାରେ ହୋଇଣ ନିର୍ଦ୍ଦୟ । ୧୬ ।

କପଟିଆ କପଟରେ ପଡ଼ି ନାଶ ଗଲୁ । କୁଳଛଡ଼ା ବଂଶୀ ବୋଲେ ପ୍ରାଣ ହରାଇଲୁ । କାମ-ରତ୍ନାକରେ ପଡ଼ି । କାମିନୀଜନମ୍ଭ ଏବେ ଯାଉଅଛୁ ବୁଡ଼ି । ୧୭ ।

ନେତେନେହେକ ହୃରେ ଘନପୁଷ୍ପକାନ୍ତ ଗୃହି । କନ୍ଧୁଛନ୍ତ ଘନ-କେଶୀ ବାଇ ପ୍ରାଏ ହୋଇ । କହ୍ନ କନ୍ତ ଘନପୁଷ୍ପ । କହ୍ନନ ବଳମ୍ଭ ତେଜ କାହ୍ନି ପୀତବାସ । ୧୮ ।

କାଳନୀକୃଳଆ କେକୀକଳାପଚୂଳଆ । କପଟିଆ ମାଟିଖିଆ ଗୋବତ୍ସ-ରଖିଆ । କୁନ୍ଦକୁସୁମମାଳଆ । କାହ୍ନିରେ ରହିଲେ ଭୃଙ୍ଗ-ଜଳଦକାଳଆ । ୧୯ ।

କନନ୍ତ ତମାଳକେଶୀ ତମାଳକୁ ଗୃହି । କାହ୍ନି ଗଲେ ଭୁଞ୍ଜି-ବନୋଦଆ ଖବଗ୍ରାହ୍ମୀ । କନ୍ଦର୍ପସୁନ୍ଦର ବର । କହ୍ନ କହ୍ନ କୃଷ୍ଣ ତେଜ ଅତେହ୍ନ ତରୁବର । ୨୦ ।

କାଇଞ୍ଚମାଳଆ ଗୋପୀଙ୍କର ଗଳାମାଳ । କାହ୍ନିରେ ରହିଲେ ସଙ୍ଗେ ଘେନ ପ୍ରିୟ ଅଳୀ । କାହ୍ନି ଗଲେ ଦୁଃଖହରା । କାମୀଜନ-ମାନଙ୍କର କୈବଲ୍ୟପସରା । ୨୧ ।

---

୧୭ । ୨—ପ୍ରାଣ ହରାଇଲୁ—କୁଳ ବୁଡ଼ାଇଲୁ ।

କପାଁ ଦକ୍ଷିଣ ନାୟକ ଅନୁକୂଳ ହେଲେ । କାମିନୀଏ ସଙ୍ଗେ
ଯେଉ ବନେ ବିହରିଲେ । କଣ୍ଠହାଟକର ମାଳ । କଣ୍ଠେ ଥାଇ
ଗଲା କାଟିଗଲେ ବନମାଳୀ । ୨୨ ।

କେକାଚ୍ଲଥାର ମିନ ଅଟ ପର ତୁମ୍ଭେ । ଜଳାରେ ସମାନ
କାୟା ଜାଣିଲୁଟି ଅମ୍ଭେ । କେତେ ସ୍ନେହ ଦ୍ୱିଜପଦେ । କରିଛ
ସ୍ୱଗଜ ଦେଖ କେବେ ମିନହୃଦେ । ୨୩ ।

କହ ହେ ପଳାଶ କାହିଁ ଗଲେ ପୀତବାସ । କଲେ ତୁମ୍ଭ ପ୍ରାଏ
ଗୋପୀକୁଳକୁ ବିନାଶ । କହ ନ କର କପଟ । କାନ୍ହା ଯେବେ ଏ
ପଥେ କି ଗଲେ ନନ୍ଦସୁତ । ୨୪ ।

କହ ହେ ବକୁଳ କାହିଁ ବନପାଟିତର । କଦମ୍ବମୂଳଥା
ମାଟିଖିଆ ବାସଶ୍ୱେର । କାହିଁ ଗଲେ ଗିରିଧର । କାକୋଦର
ଉତ୍ତମାଙ୍ଗ ପରେ ନୃତ୍ୟକର । ୨୫ ।

କହ ଅଘବିନାଶିନୀ ତୁମ୍ଭେ ହରିପ୍ରିୟା । କୃଷ୍ଣଙ୍କୁ ଲୁଚାଇ କପାଁ
କରୁଅଛ ମାୟା । କରିଥାନ୍ତ ଅବତଂସ । କହ ପାପହାରୀ କାହିଁ ଛନ୍ତି
ପୀତବାସ । ୨୬ ।

କଠୋର ହୃଦ ତୁମ୍ଭର ଜାଣିଲୁଟି ଅମ୍ଭେ । କୃଷ୍ଣକଥା ନ
କହଣ ରହିଛ ଯା ଦମ୍ଭେ । କୃଷ୍ଣଶରେ ଏ ହୃଦୟ । କୃଷ୍ଣର ଷ୍ଟୁଲିଙ୍ଗ
ପ୍ରାଏ ଦହଇ ବିଗ୍ରହ । ୨୭ ।

କହନ୍ତ ଅଶୋକ ଗୃହିଁ ପଙ୍କଜନୟନୀ । କପାଇଁ ନ କହ ବାଣୀ
ହୋଇଅଛ ତୁନି । କୂଟ ଶମ୍ବର ପରାୟେ । କରିଣ ରଖିଛ ଠେକ
ମନ୍ତ୍ରପୁତ ପ୍ରାଏ । ୨୮ ।

କଲ ଯା ଅଶୋକ ନାମ ଚତୁରଆନନ । କରାଇଲ ନାହିଁ
ଆଦ୍ୟବର୍ଣ୍ଣକୁ ମୁଞ୍ଚନ । କୃଷ୍ଣ ପରାଏ ହୃଦୟ । କୃଷ୍ଣରେ ଖୋଜୁଛୁଁ
କୃଷ୍ଣ କପାଇଁ ନ କହ । ୨୯ ।

କମଳଘଥକୁ ଗୃହିଁ କମଳବଦନୀ । କହନ୍ତି ସକଳ ହୋଇ ସକଳ ଗୋପିନୀ । କହ କଲ୍ୟାଣ ହେ ହରି । କଲ୍ୟାଣ ହରିର ପ୍ରାଏ ହୃଦୟ ନ କରି ।୩୦ ।

କହ କହ ବ୍ରଜଗୋଇ କରନ୍ତି ବେଦନ । କର୍ଣ୍ଣକୁ ଶୁଭିଲା ତାଙ୍କ ବଇଣବ ସ୍ୱନ । କଥା-ପ୍ରସଙ୍ଗ ପସ୍ୱଏ । କରଣ ଉଦ୍ବେଗ ମନ ଧାଇଁଲେ ଗୋପିଏ । ୩୧ ।

କହେ ଦାସ କୃଷ୍ଣ ହର ଶ୍ରୀମତୀଚରଣ । କର ଚନ୍ତା ଦବା ଜଣି ଯାଉ ମୋର ଧନ । କର ଆଜ୍ଞା ସାଟୁ ଜନ । କର ଯୋଡ଼ି ଭୂମି ପାଦେ କରୁଛୁ ଜଣାଣ । ୩୨ ।



## ଦ୍ୱାବିଂଶ ଛାନ୍ଦ



ରାଗ—ଚକ୍ରକେଳି

କହୁଛନ୍ତି ଅନାଇ ବ୍ରଜବାଳୀ । କାନ୍ତାମଣି ଏ ନୁହଇ ମୂଢଣୀ ।୧।
କୁଳ ସ୍ୱଭାବରୁ ଧ୍ୱନି ମଞ୍ଜୁଳ । କରାଇଲା କାମିନୀଙ୍କି ବିକଳ ।୨।
କୃଷ୍ଣକାନ୍ଦରୁ ପଡ଼ି ସେହି ବାଳା । କାନନରେ ରୋଦନ କରୁଥିଲା ।୩।
କର୍ଣ୍ଣେ ବଇଣବ ଧ୍ୱନି ଶୁଣିଲା । କୃଷ୍ଣଦୂତୀ ବୋଲିଣ ଧାଇଁଲା ।୪।
କାମିନୀଏ ଅନାଇ ତା ବଦନ । କହୁଛନ୍ତି କରିଣ ଆଲିଙ୍ଗନ ।୫।
କୁନ୍ଦଲତା କହନ୍ତି ପ୍ରାଣଧନ । କାହିଁ ଅଛନ୍ତି ମଦନମୋହନ ।୬।
କଉତୁକେ କହନ୍ତି ହରିପ୍ରିୟା । କାହିଁ ଅଛନ୍ତି ଭାବବିନୋଦିଆ ।୭।
କୃଷ୍ଣପ୍ରିୟା କହୁଛନ୍ତି ଚତୁରୀ । କହ କହିଁ କାନନେ ଛ  ହରି ।୮।
କହୁଛନ୍ତି ବିମଳା ପରିମଳା । କାହିଁ ଅଛନ୍ତି ଯଶୋଦାଙ୍କ ବାଳା ।୯।
କେ କହିବ ଷୋଳ ସହ୍ର ଯୁବତୀ । କରି ଆଲିଙ୍ଗନ ବାର୍ତ୍ତା ପୁଚ୍ଛନ୍ତି ।୧୦।
କହେ ସଜନୀ ଶୁଣ ଗୋପୀକୁଳ । କୁଞ୍ଜକାନନୁ ଆଣିବାକୁ ଫୁଲ ।୧୧।
କୃଷ୍ଣ ନେଇ ପ୍ରାନ୍ତେ ମୋତେ ଡାକିଲେ । କଉତୁକ କହି ମନ ମୋହିଲେ ।
କୁଞ୍ଜ ଅୟନେ ଶ୍ରମ ଅପଘନ । କଲି ବକୁଳମୂଳରେ ଶୟନ ।୧୩।
କୃପାନିଧି ମୁଁ ନ ପାରଇ ଯାଇ । କାନ୍ଧେ ବସାଇ ଆଣିଲେ କହ୍ନାଇ ।୧୪।
କି ବିଗ୍ରହ କଲେ ତାଙ୍କ ମନରେ । କବୁଢ଼ି ଗଲେ କୁଞ୍ଜ ଅୟନରେ ।।
କହନ୍ତି ରାଧା  ଗର୍ବ ଥିବ କରି । କୃଷ୍ଣ ନ ସହନ୍ତି ଗର୍ବ କାହାରି ।୧୬।
କେ ବୋଲଇ ଗୋପୀକୁଳ ବିକଳ । କରିବାରୁ ପାଇଲୁ ଏ କୁଫଳ ।।
କର୍ମଯୋଗୁଁ ପାଇଲୁ ଆମ୍ଭ ମେଳ । କହି ନେତ୍ରୁ ପୋଛୁଲେ ଅଶ୍ରୁଜଳ ।୧୮।
କର ଧରିଣ  କରକାହୁଣୀର । କହୁଛନ୍ତି ଗୃହୁବାଣୀ ରୁଚିର ।୧୯।

---

୧୬।୧—ମୋଟେ—ଠାଉ ।

କେ ବୋଲଇ ଏ ପୁରୁଷଙ୍କ ପ୍ରୀତି । ଜଳା ବୃକ୍ଷପ୍ରାଏ ଥାୟୀ ନୃହନ୍ତ ।୨୦।
କୃଷ୍ଣ କଥାକୁ ମନରେ ଭାବନା । କରୁ ବନେ ବୁଲନ୍ତି ବ୍ରଜାଙ୍ଗନା ।୨୧।
କାଳିନ୍ଦୀକୂଳେ କଦମ୍ବର ମୂଳେ । କାନ୍ତାକଦମ୍ବ ଯାଇ ବନେ କଲେ ।
କେହୁ ସ୍ତମ୍ଭୀଭୂତ ହୋଇ ରହିଲା । କେହୁ ନୟନରୁ ବଜ ମୁଞ୍ଚିଲା ।୨୩।
କାହା ଚିତ୍ତ ବଚନେ କମ୍ପିଲା । କେହୁ ଭାଷା କହିବା ଦୂର କଲା ।୨୪।
କଳାକର ଅନାଇ ଗୋପବାଳୀ । କହେ ଅଳୀକ ଅଳୀ ମନେ ଭାଳି ।୨୫
କାହିଁ ଝଳକ ବର୍ଷନ୍ତି ମତ । କହ ଅମ୍ଭେ ତା ନୋହୁଁ ପରପନ୍ଥୀ ।୨୬
କେ ବୋଲଇ ସଖୀ ଏ ହିମଧାମ । କାନ୍ତାକୁଳକୁ କାହିଁ ହେଲେ ବାମ ।
କୃତ୍ତିବାସ ତନୁ କଲେ ଶୀତଳ । କାହିଁ ଅମ୍ଭ କର୍ମକୁ ହଳାହଳ ।୨୮।
କେ ବୋଲଇ ଏ ବିଶଦ-ମୟୂଖ । କରେ ବନେ ବରଷନ୍ତି ଦେଖ ।୨୯
କେ ବୋଲଇ ଏ ଅମୃତ-କିରଣ । କାହିଁ ଅମ୍ଭ କର୍ମରେ ବର୍ଣ୍ଣିହିନ ।୩୦।
କେ ବୋଲଇ ଏ ଶିଶିରକିରଣ । କରେ ପଦ୍ମିନୀକୁଳକୁ ଦହନ ।୩୧।
କୂଟବୁଦ୍ଧିରୁ ସଖୀ ଏହାଙ୍କର । କହୁଥାନ୍ତି ଲୋକେ ଦୋଷାକର ।୩୨।
କେ ବୋଲଇ କାହିଁ କର ନନ୍ଦନ । କର୍ମେ ଥାଇ ଯାହାର ଯା ଲେଖନ ॥
କୃତ୍ତିବାସ ଅଙ୍ଗେ ଭସ୍ମ ଭୂଷଣ । କରି ନାଗର ନାଗରେ ଶୟନ । ୩୪ ।
କାନ୍ତାକଦମ୍ବ ବନେ ବୁଲିବାର । କଲା ଅମୃତ ନିକଳରେ ସାର । ୩୫ ।
କୁଳଛଡ଼ା ବଂଶୀ ବୋଲେ ପଡ଼ିଲୁଁ । କପଟିଆ କପଟ ନ ଜାଣିଲୁଁ ।୩୬।
କୁଳ ଶୀଳ ଗୁରୁଜନ ବଚନ । କଲୁ ନ ମାନି ସାରଙ୍ଗେ ଗମନ ।୩୭ ।
କଲୁ ବିରଞ୍ଚି ତହିଁ ଆଣି ଫଳ । କରୁଅଛି ଗୋପୀକୁଳ ବିକଳ । ୩୮ ।
କହୁ କଦମ୍ବମୂଳରୁ ଉଠିଲେ । କାଳିନ୍ଦୀର କମଳରେ ପଶିଲେ । ୩୯ ।
କଲେ ଅମୃତ ପାନ ସବୁ ଅଳୀ । କହ କହ ଅଗୋ ଭାନୁ ଦୁଲାଳୀ ॥
ଜନ୍ମ ନିଧି ଲଭ ରସନିଧିକ । କଲେ ନାଶ ହେବ କ ଗୁଆଳୀକ । ୪୧।
କଳାହୀନ ଶଶୀ ପରାଏ ଦେହ । କାମ ମଦକ ପରାଏ ବିଗ୍ରହ । ୪୨ ।
କଳଙ୍କକ କରି ନାଶ ଶ୍ରୀପତି । କୃଷ୍ଣ ଅବଜବେ କହୁଁ ସମ୍ପତ୍ତି । ୪୩ ।

କାମିନୀଙ୍କ ବଚନ ପ୍ରେମା ଶୁଣି । କହନ୍ତି ଶୁଣ ସଙ୍ଗ ଗୋପିନୀ । ୪୪ ।
କାହିଁ ବ୍ରହ୍ମ ପଦ୍ମଯନ୍ତ୍ରେ ଶ୍ୱର । କହନ୍ତି ସଙ୍ଗ ଘଟେ ବିହାର । ୪୫ ।
କାହିଁ ପାଇବା ତାଙ୍କୁ ଖୋଜିକରି । କହ ମୋ ବୋଲ ସକଳ ସୁନ୍ଦରୀ ॥
କରି ଆଶା ମୁଞ୍ଜନ ପ୍ରେମଭକ୍ତି । କଲେ ନିକଟେ ଅଛନ୍ତି ଶ୍ରୀପତି । ୪୬ ।
କୃଷ୍ଣଚରଣେ ପ୍ରେମବନ୍ଧ ଦେଇ । କହ ପ୍ରେମ ଭକତି ସର୍ବ ଗୋଇ ।୪୮
କହେନ୍ତି ଶୁଣି ସଙ୍ଗ ସଖୀ ଆନନ୍ଦ । କଲେ ପ୍ରେମଭକତି ଗୋପୀବୃନ୍ଦ ।୪୯।
କୃଷ୍ଣ ଭକ୍ତଙ୍କ ମାନ ଉଦ୍ଧାରଣ । କୃପା କଲେ ଶୁଣି ନନ୍ଦନନ୍ଦନ । ୫୦ ।
କାନନରୁ ବାହାରିଲେ ମୋହନ । କରେ ମୋହନ ବେଣୁ ଶୋଭିବନ ॥
କାନ୍ତାକଦମ୍ବ ମଧ୍ୟେ ବିଜେ କରି । କହନ୍ତି ଲଳିତେ ବଂଶୀଧାରୀ ।୫୧।
କୃଷ୍ଣ କହନ୍ତି ଶୁଣ ଗୋପବାଳୀ । କଲେ ବନୁ ଅନ୍ତର ବନମାଳୀ ।୫୩ ।
କଳେବର ମୁଞ୍ଚଇ ତତକ୍ଷଣ । କଞ୍ଚନେତ୍ରୀ ବୁନ୍ଦେ ଜଳ ମୁଁ ମୀନ ।୫୪।
କୁଞ୍ଜକାନନେ ବଣା ହୋଇଥିଲି । କହେଣ୍ଟି ଭକ୍ତି ଶୁଣି ଧାଇଁ ଅଇଲି ।୫୫।
କଲେ ଯୁବତୀଙ୍କି ଆଲିଙ୍ଗନ । କେହି ନ ଜାଣନ୍ତି କାହା ବିଧାନ ।୫୬।
କୃଷ୍ଣ ପ୍ରୀତି ବଚନ ଶୁଣି ନାରୀ । କଲେ ଶତ ଆନନ୍ଦିତ ଚଳୁରୀ । ୫୭ ।
କହେ କୃଷ୍ଣ ଜନ ହୋଇ ଆନନ୍ଦ । କରୁଣା କର ସାଧୁ ଆଦିକନ୍ଦ ।୫୮ ।



# ତ୍ରୟୋବିଂଶ ଛାନ୍ଦ



ରାଗ—ଦଶକାଦମ୍ବିନୀ ଚଉତିଶା

କୃଷ୍ଣ ମୁଖ ଅରବିନ୍ଦ । କାନ୍ତାକଦମ୍ବ ଅନାଇ ଆନନ୍ଦ ହେ ।
    କୋବିଦେ ହେ । କଲେ ମନକୁ ପ୍ରମୋଦ ହେ । ୧ ।
କଞ୍ଜବନକୁ ମିହିର । କୁମୁଦବନକୁ ଶିଶିର-କର ହେ ।
    କୋବିଦେ ହେ । କାନ୍ତାବନେ ବଂଶୀଧର ହେ । ୨ ।
କଳା ମୁଦିର ଅନାଇ । କାକୋଦର-ଅରି ଯେମନ୍ତ ହୋଇ ହେ ।
    କୋବିଦେ ହେ । କୃଷ୍ଣ ସ୍ପୃହିଁ ଗୋପଗୋଷ୍ଠି ହେ । ୩ ।
କାଲରବନିରେ କାତର । କାନ୍ତବନ୍ତ ଯେହ୍ନେ ପଲାଶଗଣ ହେ ।
    କୋବିଦେ ହେ । କି ଶୋଭି ଗୋପୀ ଆନନ ହେ । ୪ ।
କସ୍ତରେ ଚନ୍ଦ୍ର ତ୍ରନ । କାଳ ଅହିକୁ ମିଳିଲା ନକୁଳ ହେ ।
    କୋବିଦେ ହେ । କୃଷ୍ଣ ସ୍ପୃହିଁ ନାରୀଗଣ ହେ । ୫ ।
କୁନ୍ଦମାଳିଆକୁ ସ୍ପୃହିଁ । କୁନ୍ଦନ ଅଙ୍ଗୀ କନ୍ଦନ୍ତି ଗୋଳିଇ ହେ ।
    କଳାକାହ୍ନୁ । କେଉଁ ବନେ ଥିଲ ରହି ହେ । ୬ ।
କେ ବୋଲଇ ପଦ୍ମମୁଖ । କେତେ ଦେଲ ଆମ୍ଭମାନଙ୍କୁ ଦୁଃଖ ହେ ।
    କଳାକାହ୍ନୁ । କି ପ୍ରଭୁଙ୍କ ଏ ବିବେକ ହେ । ୭ ।
କଲେ ନାଶ ପୋଷା ଜୀବ । କେଉଁ ଯଶ ହେବ କୃପାନିଧିର ହେ ।
    କଳାକାହ୍ନୁ । କିପାଁ କଲ ଏତେ ଦୂର ହେ । ୮ ।
କର୍ଣ୍ଣେ ଗୁରୁ ଉପଦେଶ । କରିଥିଲେ କି କାନ୍ତା ବିନାଶ ହେ ।
    କଳାକାହ୍ନୁ । କେତେ ହେଲା ଏଥି ଯଶ ହେ । ୯ ।

ଶ୍ୟାମା ସେବକୀ ନାଶିଲ । କି ଯଶ ଏଥିରେ ଉଦୟ କଲ ହେ ।
କଳାକାହ୍ନୁ । କୃଷ୍ଣସ୍ୱବ ନ ଶୁଣିଲ ହେ । ୧୦ ।
କାମକଲ୍ଲୋଳେ କାମିନୀ-କୁଳକୁ ଭସାଇ ଦେଲଣି ଆଣି ହେ ।
କଳାକାହ୍ନୁ । କର୍ଣ୍ଣେ ଦେଇ ବଂଶୀଧ୍ୱନି ହେ । ୧୧ ।
କେଶବ କହନ୍ତି ହସି । କାହିଁ ଚନ୍ଦ୍ର କର କୁମୁଦହାସୀ ଗୋ ।
କଞ୍ଜନେତ୍ରୀ । କୁଞ୍ଜବନେ ଥିଲ ପଶି ଗୋ । ୧୨ ।
କରିବାକୁ ଭ୍ରମ ବେଶ । କାନନ ମଧ୍ୟେ ତୋଳୁଥିଲ ପୁଷ୍ପ ଗୋ ।
କଞ୍ଜନେତ୍ରୀ । କପାଇଁ କରୁଛ ରୋଷ ଗୋ । ୧୩ ।
କମଳ ବଦନେ ମୀନ । କେମନ୍ତେ ବଞ୍ଚିବ ରଜନୀ ଦିନ ଗୋ ।
କଞ୍ଜନେତ୍ରୀ । କି ବଶ୍ୟର ଭ୍ରମ ମନ ଗୋ । ୧୪ ।
କି କରି ପାରିବ ମାର । କରିବା ତାହା ସଙ୍ଗତେ ସମର ଗୋ ।
କଞ୍ଜନେତ୍ରୀ । କରିବା ପ୍ରେମକ ଶର ଗୋ । ୧୫ ।
କମଳନେତ୍ର ଏମନ୍ତ । କହନ୍ତେ କାନ୍ତା କଲେକ ବହୁତ ସେ ।
କଳାକାହ୍ନୁ । କେ କରି ପାରିବ ଅନ୍ତ ସେ । ୧୬ ।
କୁଞ୍ଜ ବଂଶେ ମନୋହର । କେତେ ଶୋଭା ମଧୁବନ ମନ୍ଦର ସେ ।
କଳାକାହ୍ନୁ । କାମିନୀଙ୍କ ଚିତ୍ତଚୋର ସେ । ୧୭ ।
କରକରଦନୀ ସଙ୍ଗେ । କରୁଅଛନ୍ତି ବଗଲତା ରଙ୍ଗେ ସେ ।
କଳାକାହ୍ନୁ । କରି ପରରମ୍ଭ ଅଙ୍ଗେ ସେ । ୧୮ ।
କା ମୁଖେ ନର୍ମ୍ମଠ ଦେଇ । କାହ୍ନା ଚିତ୍ତ ବିପରୀତରେ ମୋହି ସେ ।
କଳାକାହ୍ନୁ । କାହା ଉରଞ୍ଚଳ ଫିଇ ସେ । ୧୯ ।
କାହା ନୀବୀକୁ ଫିଟାଇ । କଞ୍ଜନବସରେ ମନକୁ ମୋହି ସେ ।
କଳାକାହ୍ନୁ । କଲେ ତୋଷ ବ୍ରଜଗୋପୀ ସେ । ୨୦ ।
କାହା ନର୍ମ୍ମଠକୁ ଧରି । କହନ୍ତି ବଚନ ନର୍ମ୍ମଠ କରି ସେ ।
କଳାକାହ୍ନୁ । କର ପୂର୍ଣ୍ଣା ହେମଗୋପୀ ସେ । ୨୧ ।

କାହା ନର୍ମଠରେ କର । କହନ୍ତ ଦେଇ ନାଗରଶେଖର ସେ ।
କଳାକାହ୍ନୁ । କର ଏଡ୍ଡାଙ୍କ ଚୋୟର ସେ । ୨୨ ।
କୃଷ୍ଣଚନ୍ଦ୍ର ନବଘନ । କାମିଣୀଙ୍କ ତନୁ ତଡ଼ିତ ଜାଣ ସେ ।
କଳାକାହ୍ନୁ । କହିବା ସ୍ବର୍ଗୁଣ୍ଠ ବନ ସେ । ୨୩ ।
କାମ ଚୌଷଠି ବନ୍ଧେଣ । କଲେ ଦ୍ୱାଦଶ ଆଲିଙ୍ଗନମାନ ସେ ।
କଳାକାହ୍ନୁ । କର ବାସ୍ତବ ଚୁମ୍ବନ ସେ । ୨୪ ।
କାମଶାସ୍ତ୍ରେ ପରିପୂର୍ଣ୍ଣ । କଦମ୍ବମୂଳଆ ବଂଶୀବଦନ ସେ ।
କଳାକାହ୍ନୁ । କେ କହିବ ଭେଦମାନ ସେ । ୨୫ ।
କଲେ ଯେତେ ସୁରଲତା । କଞ୍ଚନକୁ ତାହା କୋହେ ଗମ୍ଭିତା ସେ ।
କଳାକାହ୍ନୁ । କଉ ରସିକ ଶକତା ସେ । ୨୬ ।
କରି ରତି ପୂର୍ଣ୍ଣ ରସ । କଲେ ରସରସ-ରସକୁ ଶେଷ ସେ ।
କଳାକାହ୍ନୁ । କରଣ ତୋଷ ମାନସ ସେ । ୨୭ ।
କନ୍ଦର୍ପ ବ୍ରୀଡ଼ା ପାଇଲା । କରରୁ କୁସୁମଧନୁ ଖସିଲା ସେ ।
କଳାକାହ୍ନୁ । କରି ଗୁପ୍ତ ମନେ ଗଲା ସେ । ୨୮ ।
କାଞ୍ଚୋଲି ବାସ ସମ୍ଭାଳି । କରି ପୂର୍ଣ୍ଣ ସାଇ ପିନ୍ଧିଲେ ବାଳୀ ସେ ।
କଞ୍ଜନେତ୍ରୀ । କୃଷ୍ଣପ୍ରିୟା ଆଗେ ମିଳି ସେ । ୨୯ ।
କୋଳେ ରାଧାକୁ ବସାଇ । କଉତୁକେ ସ୍ମିତବଚନ କହି ସେ ।
କଳାକାହ୍ନୁ । କୃପା ନ ତେଜବ ସହି ଗୋ । ୩୦ ।
କୁସୁମେ କରି ସୁବେଶ । କଲେ ଜଣେ ଜଣେ ମନକୁ ତୋଷ ସେ ।
କଳାକାହ୍ନୁ । କହି କେ ଜାଣିବ ଶେଷ ସେ । ୩୧ ।
କରି ଗୋପୀବାଞ୍ଛା ପୂର୍ଣ୍ଣ । କାମୀ କାମଧେନୁ ହରିଚନ୍ଦନ ସେ ।
କଳାକାହ୍ନୁ । କୃପାଳୁ ମଧୁସୂଦନ ସେ । ୩୨ ।

---

କହନ୍ତି ମେଲାଣି ଦେଇ । କୁଞ୍ଜକୁ ଯାଉଥିବ ପ୍ରାଣସଖି ଗୋ ।
କଞ୍ଜକେଶୀ । କରୁଥିବା କେଳି ତହିଁ ଗୋ । ୩୩ ।
କୃଷ୍ଣ ବଚନ ଶୁଣିଣ । କଲେ ଗମନ ଗୋପନାରୀଗଣ ହେ ।
କଞ୍ଜକେଶୀ । କାନ୍ତ ବଦଣେ ଆନ ଆନ ସେ । ୩୪ ।
କହେ ଦାସ କୃଷ୍ଣକର । କର କୃପା ମୋତେ ରାଧାଶ୍ରୀଧର ହେ ।
କଳାକାହ୍ନୁ । କୁଞ୍ଜେ କର ବିହାର ହେ । ୩୫ ।



## ଚତୁର୍ବିଂଶ ଛାନ୍ଦ



### ରାଗ—ମଙ୍ଗଳଗୁର୍ଜ୍ଜରୀ

କୁବଳୟ ନର ଲାଗି କମଳକାନନ ।
କରଇ ଯେମନ୍ତ ଅସ୍ତବ୍ୟସ୍ତକୁ ପବନ ଯେ । ୧ ।
କର୍ପୂର ଚନ୍ଦନ ଅଙ୍ଗେ ଲାଗି ସଖୀଙ୍କର ।
କଳାକର ପ୍ରାଏ ଦିଶୁଅଛି କଳେବର ଯେ । ୨ ।
କାଳୀ-ଆପଣ ଆନନୁ ଫିଟିଲେ କମଳ ।
କରୁଥାଇ ଯହିଁ ରୂପେ ଶଉକୁ ଚଞ୍ଚଳ ଯେ । ୩ ।
କମଳ-ନୟନୀ ନେତ୍ର ଅନିଦ୍ରେ ଅରୁଣ ।
କଟାକ୍ଷ ଖେଳାଇ ବାଳୀ କରନ୍ତି ଗମନ ଯେ । ୪ ।
ନଖଙ୍କ କାହା ଉରଜେ ଦେଖି କହଁ ବାଳୀ ।
କହେ ବାମା ଇଙ୍ଗିତ ବଚନ ସ୍ୱଚ୍ଛନ୍ଦେ ତାଳି ଯେ । ୫ ।
କାହା ଗଣ୍ଡେ ନାଗବଲ୍ଲୀ ଚୁମ୍ବନର ଗାର ।
କି ଉପମା ଦିଶେ ଜଳ ବିମ୍ବରେ ମକର ଯେ । ୬ ।
କନକ କମଳ ପରେ କମଳକାନ୍ତିକୁ ।
କରନ୍ତି ବିରଞ୍ଚି ବିପରୀତ ରଚନାକୁ ଯେ । ୭ ।
କାହା କଟିଦେଶୁଁ ଫିଟି ପଡ଼ିଲେ ବସନ ।
କରଇ ସମ୍ଭାଳି ବାଳୀ ସତ୍ୱରେ ଗମନ ଯେ । ୮ ।
କାଞ୍ଚି ବିଦ୍ୟାଧର ଲାଗି ଚଳଇ ଯେମନ୍ତ ।
କାମିନୀ ଗମନେ ଅଙ୍ଗ ହୁଅଇ ତେମନ୍ତ ଯେ । ୯ ।

କଲହଂସ ପ୍ରାଏ ଚାଲି କରନ୍ତ ଗମନ ।
କଳାହୀନ ଶଶୀ ପ୍ରାଏ ମଳିନ ବଦନ ଯେ । ୧୦ ।
କମଳନାଥ ଅମ୍ବରେ ବିଜେ କରିବାର ।
କଲଣି ସମସ୍ତ ଚନ୍ଦ୍ରକାନ୍ତ ସୁମାବର ଯେ । ୧୧ ।
କୃଷ୍ଣ-ସୁଖଦାୟୀ କୃଷ୍ଣ କଥାମାନ କହି ।
କକ୍ଷାଗତ ଗୋପରେ ପ୍ରବେଶ ହୋଇଲେ ଯାଇ ଯେ ।୧୨।
କଳାକର ଅସ୍ତ ଗୃହଂ ମୁଦ୍ରିତ କୁମୁଦ ।
କଳିନ ସ୍ୱହଂ ଆନନ୍ଦ ହୋଇଲେ କଳିନ୍ଦ ଯେ । ୧୩ ।
କଲେ ମନକୁ ଆନନ୍ଦ ଚକ୍ରବାକ କୁଳ ।
କରାଇଲେ ଚକୋରଙ୍କ ନୟନ ସଜଳ ଯେ । ୧୪ ।
କରନ୍ତି ତାମ୍ରଚୂଡ଼ଙ୍କ ଶୁଭିଲାଣି ବାଣୀ ।
କଲେ ସେବକେ ମାଳାଢ଼୍ୟ ସ୍ୱରେ କମ୍ବୁଧ୍ୱନି ଯେ । ୧୫ ।
କମ୍ବୁଶବଦ ଶୁଣନ୍ତେ ଧରି ଦରଥରି ।
କାର୍ତ୍ତସ୍ୱର ପଲଙ୍କରୁ ଉଠିଲେ ଶ୍ରୀହରି ଯେ । ୧୬ ।
କରି ସାଗରଜା ଅଙ୍କ ତେଜ୍ୟା ଭଗବାନ ।
କନକ ସିଂହାସନରେ ବିଜୟେ ମୋହନ ଯେ । ୧୭ ।
କବାଟକୁ ଯାଇ ସିଟାଇଲେ କ୍ଷିତିଦେବ ।
କଲେ ଚରଗ୍ନ ଖଞ୍ଜଣୀ ଖଞ୍ଜାମାନ ସଙ୍ଗ ଯେ । ୧୮ ।
କରାଇ ସୁଗନ୍ଧ ସ୍ନେହ ଅଙ୍ଗରେ ମର୍ଦ୍ଦନ ।
କାଠି ଲଗି ବାସଜଳେ ମୁଖ ପଖାଳଣ ଯେ । ୧୯ ।
କଷା ବସନେ ଶ୍ରୀଅଙ୍ଗ ମାର୍ଜନା କରାଇ ।
କଉଷେୟ ବସନକୁ ପିନ୍ଧାଇଲେ ନେଇ ଯେ । ୨୦ ।
କରାଇଲେ ଅଷ୍ଟରତ୍ନ ଅଙ୍ଗେ ଆଭରଣ ।
କୁସୁମମାଳମାନରେ କରାଇ ମଣ୍ଡଣ ଯେ । ୨୧ ।

କୁନ୍ଦ ମନ୍ଦାର ସୁଗନ୍ଧ ପାରିଜାତକରେ ।
କଲେ ମାଲ୍ୟ ବନମାଳୀ ମେଶାଇ ସଙ୍ଗରେ ଯେ । ୨୨ ।
କି ଶୋଭା ଉତ୍ତମାଙ୍ଗରେ ତୁଳସୀର ଚୂଳ ।
କଣ୍ଠଦେଶେ ବନମାଳୀ ଦିଶଇ ମଞ୍ଜୁଳ ଯେ । ୨୩ ।
କରନ୍ତି ତାହା ଦର୍ଶନ ନୟନେ ଯେ ଜନ ।
କଳୁଷ ନାଶି ଲଭନ୍ତି ଅପବର୍ଗମାନ ଯେ । ୨୪ ।
କୋଟିବ୍ରହ୍ମାଣ୍ଡେ ଏମନ୍ତ ଅଭିରାମ ନାହିଁ ।
କର ମନ୍ଦ ମନ୍ଦ ହାସ ଭକ୍ତଙ୍କୁ ଅନାଇ ଯେ । ୨୫ ।
କୁହୁରେ ଝୁଲଙ୍ଗ ପଡ଼ୁ ହୁଅଇ ଯେସନ ।
କଲେ ଦର୍ଶନ ପାତକ ହୁଅଇ ଦହନ ଯେ । ୨୬ ।
କେତନ ଉଡ଼ଇ ନାମ ପତିତପାବନ ।
କରିବାକୁ ପତିତ ଲୋକଙ୍କୁ ଉଦ୍ଧାରଣ ଯେ । ୨୭ ।
କଥା ନ କହନ୍ତି ବସିଅଛନ୍ତି ମଉନେ ।
କୃତାର୍ଥ ହୁଅନ୍ତି ନରେ ଦେଖିଲେ ନୟନେ ଯେ । ୨୮ ।
କଞ୍ଜବାହା ଟେକିଛନ୍ତି ଭକ୍ତଙ୍କର ପାଇଁ ।
କରୁଣା-ହୃଦୟ ଅକରୁଣା କାହିଁ ନାହିଁ ଯେ । ୨୯ ।
କରେ ପତିତପାବନ ବ୍ରତ ଶୋଭାବନ ।
କରୁଛନ୍ତି ଭୃଙ୍ଗଗଣମାନେ ଗୁହ୍ମ ଧ୍ୟାନ ଯେ । ୩୦ ।
କାଳଦଣ୍ଡ ଛେଦିବାକୁ ବୁଲେ ସୁଦର୍ଶନ ।
କର୍ଣ୍ଣେ ଏହା ଶୁଣି ଅନେକ ନ ଭ୍ରମ ସୁଜନ ଯେ । ୩୧ ।
କୈବଲ୍ୟ ମହିମା ବର୍ଣ୍ଣିବାକୁ କ୍ଷେମ ନାହିଁ ।
କେ ବର୍ଣ୍ଣି ପାରିବ ତାହା ନରଦେହ ବୋହି ଯେ । ୩୨ ।
କାତ୍ୟାୟନୀ ସଙ୍ଗେ କଇବଲ୍ୟ କର ପାନ ।
କଲେ ପୁରୁଷହତ୍ୟା ଦୋଷକୁ ବିମୋଚନ ଯେ । ୩୩ ।

କୃତ୍ତିବାସ କୃତାର୍ଥ ହୋଇଲେ ଯାହା ଖାଇ ।
କୈବଲ୍ୟ ଆନନ୍ଦେ ଦେଲେ କାଳ ନ ଛୁଁଅଇ ଯେ । ୩୪ ।
କମଣ୍ଡଳୁଧାରୀ ନୀଚପଦରୁ କୈବଲ୍ୟ ।
କରନ୍ତି ଭୋଜନ ଅଟେ ଏମନ୍ତ ଅମୂଲ୍ୟ ଯେ । ୩୫ ।
କଲେ ନୀଳାଦ୍ରି କଣ୍ଟକ-ଅୟୁନେ ଶୟନ ।
କୃପାନିଧିପାଦେ ଦଣ୍ଡପ୍ରଣାମ ସମାନ ଯେ । ୩୬ ।
କୁତ୍ସିତ ଭୋଜନ ମିଷ୍ଟା ଭୋଜନ ବଳଣ ।
କୃତାର୍ଥ ଲଭନ୍ତି ଭକ୍ତେ କୁଟୁମ୍ବ ପେଦଣ ଯେ । ୩୭ ।
କେଣ୍ଟେ ଏମନ୍ତ ମହିମା ଶୁଣି ସାଧୁଜନ ।
କପାଇଁ ମାୟାରେ ପଡ଼ି ଭ୍ରମୁଛ ଅଜ୍ଞାନ ଯେ । ୩୮ ।
କୋକନଦ ଅମ୍ବୁଜ ଚରଣ ଆଶ୍ରା କର ।
କେଣ୍ଟେ କହିଥିଲେ ଗୁରୁ କପାଇଁ ପାଟେଯାର ଯେ । ୩୯ ।
କୃଷ୍ଣ ଛାଡ଼ି ଅନ୍ୟ ଦେବ ଆଶ୍ରୟ ଯାହାର ।
କୂପ ଖୋଳି ଜାହ୍ନବୀତଟରେ ପିଏ ନୀର ଯେ । ୪୦ ।
କରୁଛି ଜଣାଣ ଦନ୍ତେ ଧରିଣ ଝରଣ ।
କର ତୁମ୍ଭ ସଙ୍ଗେ ଲେଖା ଜଣେ ସାଧୁଜନ ହେ । ୪୧ ।
କଞ୍ଜଚରଣ ଲାଗି ପାଷାଣ ହେଲା ନାରୀ ।
କୃଷ୍ଣ କର ଭରସା ରଖିଛି ଶୁଣି କରି ଯେ । ୪୨ ।



# ପଞ୍ଚବିଂଶ ଛାନ୍ଦ

ରାଗ—କଳହଂସ

କୋଉଦେ କୃଷ୍ଣକଥାରସେ ରସ । କଳେବରେ ନ ରହିବ କଳୁଷ । କଦମ୍ବମୂଳଆ ଘନଶ୍ୟାମଳଆ ବଢ଼ାଇଣ ରାସରସ ସେ । କୋଉଦେ । କୃଷ୍ଣ ଗୋପେ ଆନନ୍ଦିତ ହୋଇଣ । କରୁଛନ୍ତି ଲୀଳା ଗୋପୀ ସଙ୍ଗେଣ । କଉଣପମଣି କର୍ଣ୍ଣପଥେ ଶୁଣି ଚିନ୍ତା କଲା ମନେ ମନ ସେ । ରାଜନ । ୧ ।

କେଉ ମନେ ପାଞ୍ଚି କଂସ ରାଜନ । କରାଇଲା ହକରା ମନ୍ତ୍ରୀଗଣ । କହ ମୋତେ ବୁଦ୍ଧି କାଳ ଦସ୍ୟୁନିଧି ହୋଇଲା ଗୋପରେ ବଢ଼ିଣ ସେ । କୋଉଦେ । କହ ସମସ୍ତେ ପାଞ୍ଚି ମୋ ଆଗର । କଉଁ ପ୍ରକାରେ ଶକ୍ରୁ ଯିବ ମାର । କେଶୀ ଆଦି ମୋର ଯେତେ ନିଶାଚର ସବୁ ମାଇଲେ ଶ୍ରୀଧର ହେ । କୋଉଦେ । ୨ ।

କହନ୍ତି ନରେଶ ମୋତେ ହଂସ । କଂସ ଗୋପକୁ ଗଲେ ଯିବୁ ନାଶ । କେମନ୍ତେ ମୁନି ଆଜ୍ଞା ହେବ ଅବଜ୍ଞା କଲା ଆନନ୍ଦ ଚରସ ସେ । ରାଜନ । କହନ୍ତି ବଶ୍ୱିର ପୁଣ୍ୟଜନ । କପାଂ ପୁଣ୍ୟଜନ-ପତି ବମନ । କେ ଅଛି ବଡ଼ ତୁମ୍ଭଙ୍କୁ ଭୂମଣ୍ଡଳେ କି କରିବେ ନନ୍ଦନନ୍ଦନ ହେ । ରାଜନ । ୩ ।

କର ଆଜ୍ଞା ତୁମ୍ଭରୁ ଯାଉ ଦୂତ । କୃଷ୍ଣବଳରାମକ ଆଣୁ ତୁରିତ । କରି ଧନୁଯାତ ନନ୍ଦ ବେଦସୁତ କପଟେ କରିବା ହତ ହେ । ରାଜନ । କହ କହଇ ମନରେ ବଶ୍ୱିର । କହେ ସବୁ ଯେ ମିଥ୍ୟା ସ୍ନେହ ଧର ।

କୁଳନାଶ କୁଳଘାଣ କରି ଆପେ ପଡ଼େ ଯାଇ ନର୍କଯୁଗ୍ମ ହେ ; କୋବିଦେ । ୪ ।

କର୍ଣ୍ଣେ ଶୁଣିଣ କର୍ଣ୍ଣଜପ ଗିର । କରେ ଯଉଁ କୁ-ପନ୍ଥ କୁବିସ୍ତର । ଭରି ଧରି ନାଶକର ସ୍ଥିର ନେଇ ପକାନ୍ତି କୁମ୍ଭୀପାକର ହେ । ସୁଜନେ । କରେ ପିତୃମର୍ଦ୍ଦ ଆଦେୟ ଅସାର । କଳେବର ଯନ୍ତ୍ରକୁ ସୁଖକର । କରେ ଯେ କୁଟିଳ ବୁଦ୍ଧିକି ମୁଞ୍ଚନ ତାକୁ ବୋଲି ବୁଦ୍ଧିବନ୍ତ ନର ହେ । ସୁଜନେ । ୫ ।

କର ଚନ୍ଦ୍ରଚୂଡ଼େ ମେଳ ଶ୍ରୀଫଳ । କରିଇବ ଲେମ୍ବୁରସ ଯୁଗଳ । କରେ ସ୍ଵରୂପର ଆବେଶଙ୍କ ଗିର ପଛେ ହୁଏ ହଳାହଳ ହେ । କୋବିଦେ । କଲେ ଚଞ୍ଚଳ ସିନ୍ଧୁକୁ ମାରଣ । କଞ୍ଜନାଥ ଆଗେ ଜ୍ୟୋତିରିଙ୍ଗଣ । କରେ ଯଶନାଶ ଯେମନ୍ତ ରାକ୍ଷସ ଚଳାଇ ଆଣେ ମରଣ ହେ । ସଜନ । ୬ ।

କରିଇବ ଧନୁଯାତ୍ରା ଉଚ୍ଛବ । କୃଷ୍ଣ କାମପାଳ ସଙ୍ଗେ ଆସିବ । କରିଇଣ କୂଟ ନନ୍ଦ ନନ୍ଦନଙ୍କୁ କପଟ କରି ମାରିବ ହେ । ଅସୁରେ । କୁନ୍ଦନରେ ରଙ୍ଗସଭା ଭିଆଇ । କର ଚାପ ରଙ୍ଗାଙ୍ଗିବ ଉଚ୍ଚାଇ । କୃଷ୍ଣ କାମପାଳ ଦେଖି ହେବେ ମୋହ କପଟେ ମାରି କହ୍ଲାଇ ହେ । ଅସୁରେ । ୭ ।

କରି-ଅସ୍ତ ଦୁର୍ଗଦ୍ଵାରେ କରି—କନ୍ଧେ ଯନ୍ତା ଅଙ୍କୁଶ ଧରି ଧରି । କୁଧର ପରାଏ ବେନି ମାଲେ ସଭାତଳରେ ଥିବେ ଉଭାର ହେ । ଅସୁରେ । କହି ଏମନ୍ତ ଉଲ୍ଲାସେ ଗ୍ରୁତ । କେତେଠାରୁ ବଞ୍ଚିବ ମୋ ଅସ୍ତ୍ରତ । କଲି ସଜ୍ଜାମାନ ଆପେ ଜାଗୁଧାନ ଆନନ୍ଦିତ ହୋଇ ମତ ସେ । ସଜନ । ୮ ।

କଂସ ହକାରି ଆଣିଲା ଅକ୍ରୂର । କରଣକୁ ବୋଲେ ଲେଖ ପତ୍ର । କରମୁଠି ଆଜ୍ଞା ନ ତେଜ ପ୍ରତିଜ୍ଞା ଆସୁ ନନ୍ଦର କୁମର ହେ ।

କୋଦଣ୍ଡେ । କର ଆଠ ବରଷର କାଞ୍ଚନ । କୃଷ୍ଣ ସଙ୍ଗରେ ଆଣିବ ବନ୍ଧନ । କୁଞ୍ଜବନୋଦଥା ଜଳଧି ବନରୁ ରଖିଛ କ ବଡ଼ ପଣ ରେ ଗୋପାଳେ । ୯ ।

କୃଷ୍ଣ ସଙ୍ଗେ ଲବଣୀ ଶରେ ଖାଇ । କର ଧନୁଯାତ୍ରା ଆସି ମୋହର । କଲେ ହେଲା ନଷ୍ଟ ବୁଡ଼ାଇବ ଭେଳା ଆସ ହୋଇ ତତପର ରେ । ଗୋପାଳେ । କଂସ ହସ୍ତୁ ଅକ୍ରୂର ଲେଖ ଧର । କଣ୍ଠେ ଲମ୍ବାଇଲ୍ଲ ନେଇ ଚଳୁଛି । କର ଯୋଡ଼ଣ କଂସକୁ କଂସମ୍ଭର ବାହାରିଲେ ଶୀଘ୍ର କର ନସ । ଅକ୍ରୂର । ୧୦ ।

କର ଶତାଙ୍ଗ ମଣ୍ଡଣୀ ସତ୍ଵରେ । କଲେ ବଜଏ ମଥୁରା ଦାଣ୍ଡରେ । କେତେ ରୂପରେ ମଙ୍ଗଳ ଆହି ମେଳ ହେଲେ କେ କହୁ ମୁଖରେ ହେ । କୋଦଣ୍ଡେ । କରେ ଦଧି ଧେନ ଆସେ ଆଗୁଆ । କହେ ଦାସୀମନ୍ତ ମନ୍ତ୍ର ବସ୍ତାର । କମ୍ବୁଶବଦ ଶମ୍ଭୁଆଲେ ଶୁଭିଲା ବାଟେ ବଞ୍ଚକ ଗମନ କର ନସ । କୋଦଣ୍ଡେ । ୧୧ ।

କଲ ଅକ୍ରୂର ମନରେ ଭଗ୍ରର । କେ କହିବ ପୂର୍ବ ଭାଗ୍ୟ ମୋହର । କୋଟି ଜନ୍ମେ ଯୋଗୀ ଭେଟ ଯାକୁ ନାହିଁ କଂସ ବରଗିଛି ସ୍ୱର ନେ । ପୁଜନେ । କମ୍ପି ଦକ୍ଷିଣ ଅଙ୍ଗ ନୃତ୍ୟ କଲା । କୃଷ୍ଣ ବୋଲି ଅଶ୍ରୁ ନେତ୍ରୁ ବୋହିଲା । କଣ୍ଠ ଗଦଗଦ ନ ସ୍ଫୁରଇ ପଦ ପ୍ରେମବଶେ ହେଲା ଭୋଳା ସେ । ଅକ୍ରୂର । ୧୨ ।

କାୟା କମ୍ପିଲା ରୋମାଞ୍ଚିତ ହୋଇ । କରେ ନତ୍ୟ ଆନନ୍ଦେ ଚାଳ ଦେଇ । କଲ ଭଯ କାହିଁ କଲ ନ ପାରଇ ଭେଟିବ କଳା- କହ୍ନାଇ ସେ । ଅକ୍ରୂର । କୃତ୍ତିବାସ ଯା ପାଦୋଦକ ସ୍ନାନ । କର ଅଜାମର ବନ୍ଧୁଲୋଚନ । କମଣ୍ଡଳୁଧାରୀ ରଚନ୍ତି ଯା ଚରଣ କରନ୍ତି ସୃଷ୍ଟି ରଚନ ହେ । କୋଦଣ୍ଡେ । ୧୩ ।

କଳ୍ପବୃକ୍ଷ ପ୍ରାଏ ଯଉଁ ପଯ୍ୟର । କଲେ କଳ୍ପନା ଦ୍ୟନ୍ତି ବାଞ୍ଛା ବର । କରି ମନରେ ବିସ୍ମର କଂସ୍ମଗୃହ ରଥ ବାହୋ ଖରତର ସେ । ଅକ୍ରୂର । କେତେବେଳେ ପ୍ରବେଶ ବୃନ୍ଦାବନ । କରି ଅବଲୋକନ ପାଦଚିହ୍ନ । କୁଳିଶ-ଯବ-ଅଙ୍କୁଶ-ପଦ୍ମ-ପାଦ ¹ଦେଖି ଆନନ୍ଦିତ ମନ ସେ । ଅକ୍ରୂର । ୧୪ ।

କଲେବର-କଦମ୍ବ କୋରକିତ । କହି ରଥରୁ ପଡ଼ିଲା ତ୍ୱରିତ । କୃଷ୍ଣ କୃଷ୍ଣ ବୋଲି ମାଖେ ପାଦଧୂଳି କଞ୍ଜେ ଭ୍ରମର ଯେମନ୍ତ ସେ । ଅକ୍ରୂର । କୃତକୃତ୍ୟ ହୋଇ ଧାବେ ଉଠିଲା । କଳେବର ଅବଶ୍ଚି ଯାସୋରିଲା । କେତେ ଦୂରେ ଯାଇ ଦେଖିକ ଅନାଇ ଗୋଷ୍ଠେ ଛନ୍ତି ନନ୍ଦବାଳା ସେ । ମୋହନ । ୧୫ ।

କାମପାଳ ସଙ୍ଗତେ ବେଢ଼ ଧରି । କୁଞ୍ଜ ଅଧୀନେ ଦୁହେଁ ଛନ୍ତି ଗାଈ । କର୍ଣ୍ଣରେ କୁଣ୍ଡଳ କଣ୍ଠେ ବନମାଳ ଅକ୍ରୂର ଦେଖି ଅନାଇ ସେ । ମୋହନ । କମନୀୟ ଉଷ୍ଣୀଷ ଅଭିରାମ । କୃଷ୍ଣ ସଙ୍ଗତେ ଛନ୍ତି ବଳରାମ । ଦିବା ବସ୍ତ୍ର ପଣ ପୀତା ସଙ୍ଗତରେ ବିଧାତା କରିଛି ଯୁଗ୍ମ ସେ । ମୋହନ । ୧୬ ।

କରେ ଅକ୍ରୂର ମନରେ ବିଚାର । କୃଷ୍ଣ ସଙ୍ଗେ ଯେତେ ବ୍ରଜ-କୁମର । କିଶୋର ବୟସ ସମସ୍ତେ ସୁବେଶ କେ ଏଥିରେ ବେଣୁଧର ସେ । ମୋହନ । କୃପାନିଧି ମନ ଜାଣି ତାହାର । କୃଷ୍ଣ ଧଇଲେ ନିଜ କଳେବର । କଳା ଘନାଘନେ ନକ୍ଷତ୍ର ପରାଏ ଖିରବିନ୍ଦୁ ଶୋଭାକର ସେ । ମୋହନ । ୧୭ ।

କଞ୍ଜ ଚରଣେ ମଣିର ମଞ୍ଜୀର । କାରି ଭୃଙ୍ଗରାଜ ମନ ପିଞ୍ଜର । କର ଟିରେ ଦେଇ ଦଣ୍ଡ ପ୍ରାଏ ହୋଇ ପଡ଼ିଲା କୃଷ୍ଣ ପୟର ସେ ।

---

୧୪।୭—ପଦ୍ମପାଦ—ପଦଚିହ୍ନ ।

ଅକ୍ରୂର । କୁଞ୍ଜବିହାରୀ ହୋଇ ସୁପ୍ରସନ୍ନ । ଲଜ୍ଜାହୃଦରେ ଜଳେ ଆଲିଙ୍ଗନ । କରୁଣପବାଣୀ ବୋଲିଲନ୍ତ ହେ ଦାଦ କର୍ଣ୍ଣ କଲ ଆଗମନ ହେ । ଅକ୍ରୂର । ୧୮ ।

କର ଯୋଡ଼ି କଂସଗୁର କହଇ । କି କହିବି ଅନ୍ତର୍ଯ୍ୟାମୀଙ୍କ ମୁହିଁ । କହିଲୁ କପଟ ଦୁର୍ମତିର ଗୃହ ମାଇବାକୁ ଭବଗ୍ରାହୀ ହେ । ମୋହନ । କହ ନନ୍ଦକୁ ବୋଲେ ଭବଗ୍ରାହୀ । କଂସ ଆଜ୍ଞା ଅବଜ୍ଞା ନ କରିବ । କୃଷ୍ଣବାଣୀ ଶୁଣି ଗାନ୍ଧିନୀକୁମର ନନ୍ଦହସ୍ତେ ପତ୍ର ଦେଇ ସେ । ଅକ୍ରୂର । ୧୯ ।

କଂସ ଆଜ୍ଞା ନନ୍ଦ ଶିରେ ଲଗାଇ । କଲେ ଘୋଷ ଗୋପାଳଙ୍କୁ ବସାଇ । କର୍ଣ୍ଣେ ଶୁଣି ତାହା ଗୋପୀ ହେଲେ ଯାହା କେ କହିବ ଦେଖ ବୋଲି ସେ । ସୁଜନେ । କୃଷ୍ଣ ଯିବେ ମଧୁପୁର ଘୋଷଣ । କର୍ଣ୍ଣେ ଶୁଣିଲେ ବ୍ରଜନାରୀଗଣ । କିବା ସ୍ୱର୍ଗଙ୍କ ବଜ୍ରମାନେ ପଡ଼ିଲା ପ୍ରାଏ ମୂର୍ଚ୍ଛିତ ଜୀବନ ସେ । କାମିନୀ । ୨୦ ।

କେହୁ ବୋଲଇ କି ବୁଦ୍ଧି କରିବା । କୃଷ୍ଣବିନୁ କାହିଁ ପ୍ରାଣ ବଞ୍ଚିବା । କରୁଣାନିଧାନ ଆମ୍ଭର ଜୀବନ ନନ୍ଦ କେମନ୍ତେ ମୂର୍ଚ୍ଛିବା ଗୋ ସଜନୀ । କହି ବାତରେ କମ୍ପେ ଅପଘନ । କାନ୍ତା ଚଳ ଚାପରେ ମୋହିମାନ । କମଳେ ସାରଙ୍ଗ ବୃଷ୍ଟି ହେଲା ପ୍ରାଏ ମାନସ ହେଲା ବଦନ ସେ । କାମିନୀ । ୨୧ ।

କାହା ଆନନ ବିରସ ଦିଶିଲା । କେହୁ ଭାବ ବେଳ ଚକ୍ଷୁ ବୁଜିଲା । କାହା ବିଗ୍ରହକୁ କର୍ପୂର ଚନ୍ଦନ ଅଗ୍ନି ପରାଏ ଲାଗିଲା ସେ । କାମିନୀ । କାହା ଶିରୋରୁହ ଫିଟି ପଡ଼ିଲା । କେହୁ ବାସ ସମ୍ଭାଳି ନ ପାରିଲା । କେ ବୋଲଇ ମଧୁବନ ବନମାଳୀ ବିନେ କାରାଗୃହ ହେଲା ରେ । ସଙ୍ଗାତ । ୨୨ ।

କେହୁ ଅବନୀରେ ପଡ଼ି କାନ୍ଦିଲା । କେହୁ ହାହା କୃଷ୍ଣ ବୋଲି ଗଡ଼ିଲା । କେହୁ ବନଦକାଳର ବଜ୍ରଗ୍ରନ୍ଥି ପରାଏ ମନ ହୋଇଲା

ସେ । କାମିନୀ । କେହୁ ଶିରେ ତାଡ଼େ କରଯୁଗଳ । କାହା ଧଇର୍ଯ୍ୟ
ହୋଇଲା ବିକଳ । କେ ବୋଲଇ ଗୋପେ କ୍ଷଣେ ନ ରହିବା କୃଷ୍ଣ
ସଙ୍ଗେ ଯିବା ଚାଲ ଗୋ । ସଙ୍ଗାତ । ୨୩ ।

କେତେବେଳେ ଅସ୍ତ ଗ୍ରହ୍ମାରମଣ । କୃଷ୍ଣ କାମପାଳ ଘେନ
ଗୋଧନ । କଲେ ଗୋପେ ବିଜେ ଗୋପାଳଙ୍କ ସଙ୍ଗେ ନବରଙ୍ଗିଆ
ମୋହନ ହେ । ସୁଜନେ । କଲେ ଭୋଜନ ତୋଷେ ବେନି ଭାଇ ।
କଂସସ୍ମରକୁ ସନ୍ତୋଷ କରାଇ । କହି ତାତ ଯଦୁକୁଳର କୁଶଳ
ଯତ୍ନରନ୍ତ ସବଗ୍ରାହ୍ମୀ ସେ । ମୋହନ । ୨୪ ।

କନ୍ଦରବଦନ ଶେଯେ ପହୁଡ଼ିଲେ । କି ସୁଖରେ ରଜନୀ
ବଞ୍ଚାଇଲେ । କ୍ରମେ ନିଶିଶେଷ ହୁଅନ୍ତେ ପ୍ରବେଶ ତାମ୍ରଚୂଡ଼ ଡାକ
ଦେଲେ ହେ । ସୁଜନେ । କୃପାନିଧି ପଲଙ୍କରୁ ଉଠିଣ । କଲେ ସ୍ନାନ
ମାର୍ଜନ ବେନି ଜନ । କରିଣ ମଣୋହି ଅନନ୍ଦିତ ହୋଇ ତାମ୍ବୁଳ
କଲେ ଭୋଜନ ସେ । ମୋହନ । ୨୫ ।

କଂସଦୂତ ଶତାଙ୍ଗ ସଜ କରି । କନ୍ଦର୍ପଦ୍ୱାରେ ଆଣି ଉଭାରି ।
କାମପାଳ କୃଷ୍ଣ ରଥେ ବିଜେ କଲେ ଆନନ୍ଦିତ ବସୁନ୍ଧରା ହେ ।
ସୁଜନେ । କମ୍ବୁଶବଦ ମଙ୍ଗଳ ମନ୍ଥର । କାମିନୀଙ୍କ ହୁଳ ଶୁଣି ଦ୍ୱାରେ ।
କି ଶୋଭା ପରିମଳ ବାତ ବହଇ ଦେବେ ପୁଷ୍ପବୃଷ୍ଟି କରୁ ହେ ।
ସୁଜନେ । ୨୬ ।

କୃଷ୍ଣକରର ପ୍ରପଞ୍ଚ ଭଞ୍ଜନ । କର ଯାମୁଳାର୍ଜୁନ-ଭଞ୍ଜନ ।
କର ମନ୍ଥଧର ଦୁଷ୍ଟଙ୍କୁ ନିବାର କଂସକୋଦଣ୍ଡଭଞ୍ଜନ ହେ ।
ମୋହନ । କର ମୋହଠାରେ ଅନୁକମ୍ପାକୁ । କୁଞ୍ଜବିନୋଦିଆ ଦିଅ
ମୋକ୍ଷକୁ । କୁଧର-ଧାରଣ କର ଉଦ୍ଧାରଣ ଶରଣ ରଖ ଦୀନକୁ
ହେ । ମୋହନ । ୨୭ ।



୬

# ଷଡ଼୍‌ବିଂଶ ଛାନ୍ଦ

## ରାଗ — ଅହାରୀ

କୃଷ୍ଣ କଂସପୁର ଯିବା ଶୁଣି, ଗୋପୀ କମଳ-କମଳ-ନୟନେ ।
କର ଶିରେ ଦେଇ କକର୍ଥନା ହୋଇ, ଓଗାଳନ୍ତେ ଗୋପ ଅୟନେ ।
କହନ୍ତ, କୋମଳତା କର ମୋହନେ ।
କେମନ୍ତେ ଆମ୍ଭଙ୍କୁ ମୁକ୍ତି ସ୍ୱବଗ୍ରାହ୍ମୀ ଯାଉଛ ମଥୁରାଭୁବନେ । ୧ ।

କାନନୁ ଗୋଧନ ଫେନ ଆସିବାକୁ ଖିନ୍ନ କରେ ତନୁ ଅନ୍ତନୁ ।
କେମନ୍ତେ ବଞ୍ଚିବୁ ବରଜକାମିନୀ ତୁମ୍ଭେ ଗଲେ ଗୋପଭୁବନୁ ।
କୃଷ୍ଣ ହେ, ମକରଧ୍ୱଜ-ଶିଳୀମୁଖ ।
କଳାହୀନ ଶଶୀ ପରାଏ ବଗ୍ରନ କରିବ ଆହେ ପଦ୍ମମୁଖ । ୨ ।

କୁରଙ୍ଗୀନୟନୀ କଳାକରମୁଖୀ ଅଙ୍ଗ ବହଇ ଶ୍ରମଝାଳ ।
କବରୀ ଫିଟି ଚର୍ମଦେଶେ ପଡ଼ୁଛି ପାଣ୍ଡୁର ଦରଶ ବକ୍ଷସ୍ଥଳ ।
କୃଷ୍ଣ ହେ. କେ ଖଣ୍ଡିବ ମନବ୍ୟଥାକୁ ।
କୃପାନିଧି ହୋଇ କୃପା ଦୂର କରି ବହିଅଛ ପୋତ ମଥାକୁ । ୩ ।

କଲୁ ହତାଦର ଗିରସ୍ତ ଶ୍ୱଶୁର ତାତ ମାତ ବେନି କୁଳକୁ ।
କୋଳ ବେନରେ ପୟର ଦେଲ ପ୍ରାଏ ଲାଗୁଅଛି ଆମ୍ଭମାନଙ୍କୁ ।
କୃଷ୍ଣ ହେ, କୋଳବଦନେ କୁରୁବିନ୍ଦ ।
କଲ ପ୍ରାଏ ନାଶ କାମିନୀକୁଳକୁ ମୂଳରୁ ନାଶୁଛ ଗୋବିନ୍ଦ । ୪ ।

କେ ବୋଲଇ ତୁମ୍ଭେ ମଥୁରା ଯାଉଛ ଧନ୍ୟ ଧନ୍ୟ ତୁମ୍ଭ ଜୀବନ ।
କେ ବୋଲଇ ହୃଦ ଫାଟି ନ ଯାଉଣ କପାଁ ଅଛୁ ଅମ୍ଭ ପରାଣ ।
କେ ବୋଲେ, କେହ୍ନ କାହାକୁ ନୁହେ ଊଣା ।
କୁବ୍ଜାମନ୍ଦିର ସେଠାରେ ଦେବ ଠାକୁର ଟେକି ଜଣା । ୫ ।

କେହ୍ନ ଅବସରେ ପଡ଼ି କ୍ରୋଧରେ କଦର୍ଥନା ହୋଇ ଯୁବତୀ ।
କେ ବୋଲଇ କାହା ଆଗେ ଗୁହାରିବା କଂସ ତ ଅସୁର ଅରାତି ।
କେ ବୋଲେ, ଶୁଣ ଆହେ ବଂଶୀବଦନ ।
କାହେ ଅବେଶର ମଥୁରା ଯାଉଛ କାହା କର କ୍ରୀଡ଼ାସଦନ । ୬ ।

କେ ବୋଲଇ ସୁତମାନଙ୍କରୁ ଭିନ୍ନ ହୋଇ ରଖିଅଛ ଜୀବନ ।
କାଦମ୍ବିନୀକାଳ ବନପ୍ରିୟଙ୍କୁ ପ୍ରାଏ କଲ ଏବେ ହେଲେ ମଉନ ।
କୃଷ୍ଣ ହେ, ଜୀମୂତବାହନ କଣ୍ଠରୁ ।
କାହିଁ ଜୀମୂତ ଧାରଣ କୃପାନିଧି ଗୋପ ରଖିଛ ମହାଦେମରୁ । ୭ ।

କପାଇଁ ମୋହନମୁରଲୀ ବଜାଇ ଡାକିଲ ଆମ୍ଭ ନାମ ଧରି ।
କର୍ଣ୍ଣେ ଶୁଣି କୃଷ୍ଣ ଦରଶନ ପ୍ରାଏ ମିଳିଲୁ ବରଜନାଗରୀ ।
କୃଷ୍ଣ ହେ, ମିଳନ ପ୍ରାଏ ମେଳଲେ ।
କଳନରୁ ବାସ ନେଇ ପୀତବାସ କୁଞ୍ଜେ ମନ ବଳାଇଲ । ୮ ।

କମଳଜକୁଳକାନ୍ତ ନୟନାଥ ପିତାସତ୍ୟେ ବନମାଳୀକ ।
କଲେ ଗମନ ସେହିରୂପେ ଅକ୍ରୂର ନେଉଅଛୁ ବନମାଳୀକ ।
କୃଷ୍ଣ ହେ, ଦୁହେଁ ହେଲ ଏକ ସଙ୍ଗାତ ।
କାମପାଳ ସଙ୍ଗେ ମଥୁରା ଯାଉଛ ଗୋପୀଙ୍କ କରଣ ଅନାଥ । ୯ ।

---

୨ାଠ—ଚଉଁ—ହିଡ । ଦେଖିଅଛ—ରକ୍ଷିଅଛ ।

କୁ-ମାର କପଟେ କୁଜା ସଙ୍ଗ ସେନ ବାସ କଲେଲ ପଞ୍ଚବାଟୀରେ ।
କୁ-ମାତୁଳକୂଟେ ଅକ୍ରୂର କପଟେ ନେଉଅଛନ୍ତି ମଧୁନଗରେ ।
କୃଷ୍ଣ ହେ, ତାଙ୍କ ତନୁ ମଲେ ପେଥର ।
କାନ୍ତାକଦମ୍ବଯାକ ନାଶ ହୋଇବେ ତୁମ୍ଭ ବଞ୍ଚନେ ବଂଶୀଧର ।୧୦।
କୁଞ୍ଜବନ-କଳାନିଧି କଳାନିଧି କଳାନିଧି ଦେବ ଶ୍ରୀଧର ।
କଳାନିଧି ଥାଉଁ ଅନ୍ଧାର ଘୋଟିଲା କାହାକ କରିବୁ ଗୁହାର ।
କୃଷ୍ଣ ହେ, କୃତ୍ତିବାସ ସେବା ବଢ଼ାଇ ।
କଲୁ କାମନା ସର୍ବ ଗୋପଅଙ୍ଗନା ଗୋପରୁ ନ ଯିବେ କହ୍ନାଇ ।୧୧।
କଣ୍ଟକେ ଅଟକ ହୋଇଲେ କଣ୍ଟକୁ କଣ୍ଟକ କଣ୍ଟକ ଖସିବ ।
କାର୍ତ୍ତସ୍ୱର ତନୁ ଅତନୁ-କଲମ୍ବ କାନ୍ତକ ଦୂର କରାଇବ ।
କୃଷ୍ଣ ହେ, ତୁମ୍ଭ ଗୁଣ ହେବ କୃଶାନୁ ।
କୋଟରେ ଲଗିଲା ପରାଏ ବିଗ୍ରହ ଦଗ୍ଧ ହୋଇବ ଆମ୍ଭ ତନୁ ।୧୨।
କେ ବୋଲଇ ଆହେ ଭବଭବନୋଦଧି କୁଞ୍ଜକାନନ ନିଶାମଣି ।
କାମ ଅନ୍ଧକାରେ ପକାଇ ମାରିଣ ଯାଉଅଛ ବ୍ରଜରମଣୀ ।
କୃଷ୍ଣ ହେ, କୁ-କୀର୍ତ୍ତିକେତନ ଟେକାଇ ।
କମଠ କୋଷ ଛାଡ଼ିଲା ପ୍ରାଏ କରି ଛାଡ଼ି ଯାଉଛ ଭବଗ୍ରାହୀ । ୧୩ ।
କେ ବୋଲଇ ସନ୍ଧ୍ୟାଅରୁଣବଦନ କରି ଏବେ ଆମ୍ଭ ବୋଲକୁ ।
କାମିନୀବଚନ ବୋଲିଣ ନ ବୋଲ କହୁଅଛୁ ତୁମ୍ଭ ଭଲକୁ ।
କୃଷ୍ଣ ହେ, କୂଟନର ଗାନ୍ଧାରୀ କୁମର ।
କଂସ ବୋଲରେ ପିଶୁନବୁଦ୍ଧି କରି ଅରାନ୍ତି ହୋଏ ଗୋପୀଙ୍କର ।୧୪।
କମଳ ଅରାତି ତା ପତି ତା ପତି ଶିର ପରେ ଦେଇ କମଳ ।
କରିଥିଲୁ ପତି କାଳନ୍ଦୀରପତି ବିନାଶ କରି ବେନି କୂଳ ।
କୃଷ୍ଣ ହେ, ପାର୍ବତୀପତି ପାର୍ବତୀଙ୍କି ।
କରୁଣା କରିଣ ବର ଦେଇଥିଲେ କଲା ବିଧାତା ଅଣାଇକି । ୧୫ ।

କର୍ଣ୍ଣେ ଉପଦେଶ ଦେଇ ବିପ୍ରଜନେ ଯଜ୍ଞେ ପଶୁବଧ କରାନ୍ତି ।
କଲେ ଅମ୍ବାକାଶ ଯେତେ ହୋଏ ଦୋଷ ନ ବୁଝି ନିଗମର ଗତି ।
କୃଷ୍ଣ ହେ, ମୁରଲୀ କର୍ଣ୍ଣଗୁରୁ ହେଲା ।
କମଳଇନ୍ଦ୍ର ପ୍ରାଏ ହୋଇ ଅମ୍ଭଙ୍କୁ କୂପେ ପକାଇ ପ୍ରାଣ ନେଲା ।୧୬।
କେ ବୋଲଇ ଅହେ ଯାମଳାଭଞ୍ଜନ କେ ବୋଲଇ ବକଅରିର ।
କେ ବୋଲଇ କାଳୀଗର୍ବଖର୍ବକର କେ ବୋଲେ ପୂତନା ବଇରୀ ।
କେ ବୋଲେ, କର ଏବେ ଅମ୍ଭ ବୋଲକୁ ।
କାମିନୀଙ୍କ ବୋଲ ଶୁଣି ଗରଲ ହରି ହେବ ସନ୍ନିପାତକୁ । ୧୭ ।
କରି ମନ୍ଦମନ୍ଦ ହାସ ପୀତବାସ ବୋଲନ୍ତି ଶୁଣ ବ୍ରଜନାରୀ ।
କରୁଣାନିଧାନୀ ତୁମ୍ଭ କରୁଣାରୁ ଅସିବୁ ଯାହା ଦେଖି ପାରି ।
କେବଳ, ମାନସରୁ ନୁହ ଅନ୍ତର ।
କଉତୁକ ଦେଖି ରାଜା ଅକ୍ଷ ରଖି ଫେରି ଅସିବୁ ଗୋପପୁର ।୧୮।
କୃଷ୍ଣ କହନ୍ତି ବନମାଳୀବଦନୀ ବନମାଳୀରୁ ବନମାଳୀ ।
କରାଇଲେ ଦୂର ରହେ କି ଶରୀର ତେମନ୍ତ କୃଷ୍ଣ ଗୋପବାଳୀ ।
କାମିନୀ, ସାରଙ୍ଗ ତେଜେ କି ସାରଙ୍ଗ ।
କାଣିଛ ଧୁବର ଧନେ ମୋ ମନକୁ କେବେ ସଙ୍ଗ ନୋହେ ଭଙ୍ଗ ॥
କୃଷ୍ଣ କହନ୍ତି ବନମାଳୀ ଅନାଇ ବନମାଳୀ ମନ ଯେମନ୍ତ ।
କଳାକରମୁଖୀ ଗୋପୀଙ୍କି ଅନାଇ କୃଷ୍ଣମନ ହୁଏ ତେମନ୍ତ ।
କନକାଚଳନନ୍ଦିନୀ ଅଙ୍କେ ଧରି ।
କରି ସଦାନନ୍ଦ ମନକୁ ଅନନ୍ଦ କୃଷ୍ଣ ଆନନ୍ଦ ବ୍ରଜନାରୀ । ୨୦ ।
କହନ୍ତି କହ୍ନାଇ କଳାକରମୁଖୀ ଅନନକୁ କର ପ୍ରସନ୍ନ ।
କଣ୍ଠ କରି ଗୃହ ଵନକୁ ଯାଉଛୁ ସାକ୍ଷୀ ଅଛନ୍ତି ବକର୍ତ୍ତନ ।
କାମିନୀମାନେ ବୋଲନ୍ତି ବନମାଳୀ ।
କର୍କ ପରେ ସ୍ନେହ ଟାଳିଲ ପରାଏ ବଚନ କହୁଅଛ ଟାଳି । ୨୧ ।

କର୍କବଦନା ବୋଲନ୍ତି ହେ ଶ୍ରୀଧର କର୍କରୁ କର୍କ ଗଲା ପର ।
ଝିଗଇଲା କେଳିସଦୁସଖୀଙ୍କ କଦମ୍ବମୂଳ ବ୍ରଜପୁର ।
କୃଷ୍ଣ ହେ, ତୁମ୍ଭ ବିହୀନେ ଶୂନ୍ୟ ହେଲା ।
କାମସେନ୍ଧତରେ ସେନ୍ଧତ ଲଗାଇ ସେନ୍ଧତନେହୀ ବିନାଶିଲା ।୧୨।
କେତେ ନୂଆ ବାଣୀ ଶ୍ରୁତିପୁଟଗ ଶୁଣି ନୂଆ ଅପାଙ୍ଗ ମଣ୍ଡି ହେବ ।
କେତେ ନବୀନ ସାରଙ୍ଗମାନ ପାଇ ଗୋପୀଙ୍କ ଭାବ ପାସୋରିବ ।
କୃଷ୍ଣ ହେ, କହୁଛ ଆମ୍ଭଙ୍କୁ ମନାଇ ।
କଂଟକନାଗରୀ ଅଂକ କରିବେ କଜ୍ଜଳରେଖକ ଲଗାଇ ।୧୩।
କୃଷ୍ଣ କହନ୍ତି ଗୋ ଚନ୍ଦ୍ରନଗୋଷ୍ଠୀ ଚନ୍ଦ୍ରଚୂଡ଼ ଆନ ବାସନା ।
କଲେ ଲକ୍ଷ୍ୟ କାହିଁ ହୋଇବ ସମାନ, ଗୋପୀ ସଙ୍ଗେ ଆନ ଅଙ୍ଗନା ।
କମଳ ସଙ୍ଗେ ସମାନ ଗିରିମଲ୍ଲୀ ।
କଲେ ଲକ୍ଷ୍ୟ କାହିଁ ସମାନ ହୋଇବେ ଗୋପୀ ମଥୁରାପୁର ଆଳୀ ।
କୃଷ୍ଣ କହନ୍ତି ଗୋ ବରଜଚତୁରୀ ଲକ୍ଷ୍ମଣା ସଙ୍ଗେ ଆନ ନାରୀ ।
କାହିଁ ଲକ୍ଷଣରେ ସମାନ ହୋଇବେ ତୁମ୍ଭଙ୍କୁ ମଥୁରାନାଗରୀ ।
କରିବ, ନାହିଁ କିଛି ଚିନ୍ତା ମନରେ ।
କମଣ୍ଡଳୁଧାରୀଆନନ ଦନରେ ଥିବି ହେବୁ ବ୍ରଜନଗରେ ।୧୪।
କମଳ ଆନନ ହରଷ କରିଣ ଅନାଏ ସବୁଗ ନୟନେ ।
କର ଧରି କହୁଅଛୁ ସମସ୍ତଙ୍କ ପଡ଼ିଥିବୁଟି ଆମ୍ଭେ ମନେ ।
କରୁଛି, ଗମନ ମଧୁନଗରକୁ ।
କଂସକିଙ୍କରକୁ ଆଜ୍ଞା ଦେଲେ ଶ୍ରୀହରି ବହନ ବାହା ସ୍ୟନ୍ଦନକୁ ।୧୬।
କୃଷ୍ଣବାଣୀ ଶୁଣି ଗାନ୍ଦିନୀକୁମର ଅଶ୍ୱ ଦଉଡ଼ି ଦେଲା ଗୁଳି ।
କି ଶୋଭା ଗୁଣ୍ଡି ଶୃଙ୍ଗାରକୁ ବିଜୟ କଲା ପରାଏ ବନମାଳୀ ।
କରନ୍ତି ମୁଖଚନ୍ଦ୍ରିମା ପୁରଆଳୀ ।
କନ୍ୟାସ୍ତମ୍ଭ ପ୍ରାଏ ଗୋପୀଏ ରହିଲେ ସେ ଯାତ୍ରା ଦୃଷ୍ଟେ ଯାଇ ମିଳି ।।

କଂସନଗର ରଥ ବାହି ସତ୍ୱର ବ୍ରଜନଗର ବଳିଗଲା ।
କୃଷ୍ଣ ଗୋପବାଳ ସମସ୍ତଙ୍କୁ ଧରି ଯମୁନାରେ ଯାଇ ମିଳିଲା ।
କୂଳରେ, ନୀପଗୁମ୍ଫାରେ ବିଶ୍ରାମିଲେ ।
କରି ଜଳପାନ ଶାନ୍ତ କରି ମନ ସମସ୍ତେ ଯାଇ ରୁଣ୍ଡ ହେଲେ ।୨୮।

କହନ୍ତି ଅକ୍ରୂର କମଳ କମଳ କେଡେ ଅମଳ ଦିଶୁଛନ୍ତି ।
କି ଶୋଭା ବେନି ସାରଙ୍ଗରେ ସାରଙ୍ଗ ବିକାଶି ଶୋଭା ପାଉଛନ୍ତି ।
କୃଷ୍ଣ ହେ, ଆଜ୍ଞା ହେଲେ ସ୍ନାନ କରନ୍ତି ।
କୂଳକୁ ଉଠି ତୋ ଶ୍ରୀମୁଖ ଅନାଇ ଅପବର୍ଗ ହେଲେ ଲଭନ୍ତି ।୨୯।

କହନ୍ତି ମୋହନ କର ଯା ସ୍ନାନ ଟିକାଏ ବିଳମ୍ବ ନ କରି ।
କୃଷ୍ଣବାଣୀ ଶୁଣି ମନ୍ତ୍ରୀଚୂଡ଼ାମଣି ବୁଡ଼ିଲା ଗୋବିନ୍ଦ ସୁମରି ।
କମଳ ଭିତରେ ମଣିପଦ୍ମ ପୁରେ ।
କାମପାଳ ସଙ୍ଗେ ବିଜେ କରିଛନ୍ତି ଅଷ୍ଟନିଧି ଛନ୍ତି ସଙ୍ଗରେ ।୩୦।

ଡରେ କଂସଶୂର ମନରେ ବିଚାର କି ଅବା ଅଇଲେ ପଳାଇ ।
କଂସ ଆଗେ ଯାଇ କି ବୋଲି କହିବି ଉଠି କୂଳକୁ ଦେଲା ଗୁହାଁ ।
କଦମ୍ବ-ମୂଳରେ ବିଜେ ଗିରିଧର ।
କହନ୍ତି ଅକ୍ରୂର ଆସ ରଥପର ବିଜେ କଲେ ଗୋପସୁନ୍ଦର ।୩୧।

କନଣପବାଣୀ ବୋଲନ୍ତି ହେ ଦାଦା ଜଳରେ କି ଦେଖିଲ କହ ।
କପଟକୁ ଦୂର କରିଣ ସତ୍ୱର ଆଣିଣ ବେଗେ ରଥ ବାହ ।
କହନ୍ତି, ଅକ୍ରୂର ଯୋଡ଼ି ବେନି କର ।
କାମପାଳ ସଙ୍ଗେ ବ୍ରଜସୁତ ରଙ୍ଗେ ଜଳେ ଦେଖିଲି ରୂପ ତୋର ।୩୨।

କଣ୍ଠକଳା ଆଦି ମଙ୍ଗଳ ସମ୍ବାଦ ସ୍ତୁତି କରନ୍ତି ବେଦବର ।
କୃତାର୍ଥ ହୋଇଲି ବୋଲିଣ ସ୍ୟନ୍ଦନ ବାହିଲେ ଯାଇ ସତ୍ୱର ।
କଣ୍ଟକ ତୋଟା ଦୁର୍ଗଦ୍ୱାରେ ମିଳିଲେ ।
କୃଷ୍ଣ କାମପାଳ ରଥରୁ ଓହ୍ଲାଇ ନିତ୍ୟକର୍ମକୁ ବଢ଼ାଇଲେ ।୩୩।

କରି ଛତିରସ ଭୋଜନ ସମସ୍ତେ ଆନନ୍ଦ କଲେ ପଞ୍ଚ ମନ ।
କହନ୍ତି ଗୋପାଳ ଶୁଣ ଗୋପବାଳ ଦେଖିଯିବା ମଧୁଭୁବନ ।
କଂସକୁ, କହିଲା ଗାନ୍ଧିନୀକୁମର ।
କରି ମନ ତୋଷ ଦୁର୍ମିଳାର ଶିଷ ଅକ୍ରୂରକୁ ଦେଇ ଭଣ୍ଡାର । ୭୪ ।

କୃଷ୍ଣଙ୍କର ମନ ରଥ ପଛେ ପଛେ ଗୋଡ଼ାଇ କରିଅଛି ଆଶା ।
କୃତାନ୍ତକ ଭଗ୍ନ-ଦଣ୍ଡବିନାଶନ କରିବାକୁ ରଖି ଭରସା ।
କରରେ, ପତିତପାବନ ବୃତ୍ତକୁ ।
କରଣ ଧାରଣ ବାନ୍ଧା ଚୈତନ୍ୟ ପତିତ ଜନ ତାରିବାକୁ । ୭୫ ।



# ସପ୍ତବିଂଶ ଛାନ୍ଦ



## ରାଗ—ଗଡ଼ମାଳଆ

କୋବିଦେ କର ଶ୍ରବଣ । କଳୁଷ ନ ରହିବ ଅପଘନ ସେ ।
　କଇବଲ୍ୟ ହେବ ନିକେତନ । ସୁଜନେ ହେ । ୧ ।
କୃଷ୍ଣ ମଧୁର ଭଜଏ । କର୍ଣ୍ଣେ ଶୁଣି ପାପ ହୋଇବ କ୍ଷଏ ସେ ।
　କୋଟି ଜନ୍ମ କଲୁଷ ନ ରହେ । ସୁଜନେ ହେ । ୨ ।
କଟକର ଅମ୍ବୁଜରେ । କଲେ ବନେ ବ୍ରଜବାଳ ସଙ୍ଗରେ ସେ ।
　କାମପାଳ ଅଛନ୍ତି ଆଗରେ । ସୁଜନେ ହେ । ୩ ।
କରନ୍ତି ଲୋକେ ଦର୍ଶନ । କାମିନୀମାନଙ୍କ ଆନନ୍ଦ ମନ ସେ ।
　କହେ ଅଳୀକ ଅଳୀ ବଚନ । ସଜନୀ ରେ । ୪ ।
କେ ବୋଲେ ଏ ଅପଘନ । କଲା ଘନାଘନ ପ୍ରାଏ ଶୋଭନ ସେ
　　କେକୀପୁଚ୍ଛ ଇନ୍ଦ୍ରଶରାସନ । ସଜନୀ ରେ । ୫ ।
କି ଶୋଭା ଅଳକାପନ୍ତି । କଣ୍ଠେ କି ବାଳ ଅଳି ବେଢ଼ିଛନ୍ତି ସେ ।
　　କଞ୍ଜଆନନ ଶୋଭା ଦିଶନ୍ତି । ସଜନୀ ରେ । ୬ ।
କୁଣ୍ଡଳ ଶ୍ରୁତିରେ ଗତି । କରିବା ଅନାଇ ପତିବରତି ସେ ।
　　କାମେ ଦୁଲୁକି ଉଠଇ ଗ୍ଲୁତି । ସଜନୀ ରେ । ୭ ।
କି ଶୋଭା ନାସାବସଣୀ । କଳାକରେ ଉଦେ ସଉଦାମିନୀ ସେ ।
　　କରେ ଅଣନହୃଦୟୁ ପାଣି । ସଜନୀ ରେ । ୮ ।
କଟିରେ କ୍ଷୁଦ୍ର କିଙ୍କିଣୀ । କି ଜାତ ମଧୁର ଶୁଭେ ତା କଣି ସେ ।
　　କାମିନୀଙ୍କ ମନ ନଏ ଜାଣି । ସଜନୀ ରେ । ୯ ।

କ ଛୁର ନରତରୁଣୀ । କାକୋଦରନାଶ୍ୱ ସୁରତରୁଣୀ ଯେ ।
କର୍ଣ୍ଣେ ଶୁଣିଣ ସୁରତ-ରଣୀ । ସଜନୀ ରେ । ୧୦ ।
କେ ବୋଲେ ଏ ମନୋହର । କାମିନୀ ଧାଇଁଲେ ଛାଡ଼ି ମନ୍ଦର ଯେ ।
କରି ଲଜ୍ଜା-ସଦନକୁ ଦୂର । ସଜନୀ ରେ । ୧୧ ।
କାହା ବାସ ଗଲା ଖସି । କରେ ଧରି କେହୁ ବଅଲ ଖୋସି ଯେ ।
କାମ ବାଣ କଲା ଶତ୍ରୁ ଅସି । ସଜନୀ ରେ । ୧୨ ।
କେ ବୋଲଇ ପ୍ରିୟସଖୀ । କୃଷ୍ଣଙ୍କୁ ଦେଖିବା ପୂର୍ବେ ନ ଆଖି ଯେ ।
କରିଥିବା ଏ ଅମ୍ଭାକୁ ସୁଖୀ । ସଜନୀ ରେ । ୧୩ ।
କେ ବୋଲଇ ପ୍ରାଣମିତ । କପଟୀ ଧାଇଁର ପରଶ ହିତ ଗୋ ।
କଲେ ଶକଟା ଭଣ୍ଡା ନିପାତ । ସଜନୀ ରେ । ୧୪ ।
ଯେବେ ଅର୍ଜୁନ ଭାଙ୍ଗିଲେ । କାଳୀୟଫଣମାଙ୍କେ ତାଣ୍ଡବ କଲେ ଯେ ।
କାଳିନ୍ଦୀରୁ କମଳ ତୋଳିଲେ । ସଜନୀ ରେ । ୧୫ ।
କେ ବୋଲେ ହଟକେଶ୍ୱର । କରେ ସାନୁମାନ ଧରି ଶ୍ରୀଧର ଯେ ।
କଲେ ଉନାପନକଷ୍ଟ ପାର । ସଜନୀ ରେ । ୧୬ ।
କେଉଁ ଶାତକୁମ୍ଭଗୋଷ୍ଠୀ । କାଖରେ ଅଛୁ ଶାତକୁମ୍ଭ ଧରି ଯେ ।
କରେ ଯମୁନାସ୍ନାନ ଚତୁର୍ଥ । ସଜନୀ ରେ । ୧୭ ।
କର୍ଣ୍ଣେ ଶୁଣି ଧାଏଁ ବାଳୀ । କଳେବର ଧରେ ପଡ଼ନ୍ତେ ବାଲି ଯେ ।
ଜବ ବସ୍ତୁରଇ ମନେ ଭାଳି । ସଜନୀ ରେ । ୧୮ ।
କାନ୍ତ ଦଣେ ଶୋଭାବନ । କି ଅବା ଚନ୍ଦ୍ରଚୂନେ ଚନ୍ଦ୍ରଚୂନ ଯେ ।
କଞ୍ଜସମ୍ଭବ ଅଛୁ ବସିଣ । ସଜନୀ ରେ । ୧୯ ।
କୁଳବତୀ ପ୍ରାସାଦରେ । କରୁଛନ୍ତି ଦୃଷ୍ଟି ବାତାୟନରେ ଯେ ।
କାନ୍ତ ଜ୍ୟୋତିରଙ୍ଗଣ ପ୍ରକାରେ । ସଜନୀ ରେ । ୨୦ ।
କେ ସୁଧାଅଟ୍ଟାଳ ପରେ । କରେ ଦର୍ଶନ ମେଲି ଗବାକ୍ଷରେ ଯେ ।
କଳାନିଧି ବଶଦ ମେଘରେ । ସଜନୀ ରେ । ୨୧ ।

କେ ଧରି ପରିବାଦିନୀ । କରେ ଜୟଦେବ କୃଷ୍ଣଙ୍କୁ ଧ୍ୟାନ ଯେ ।
କର୍ଣ୍ଣେ ଶୁଣି ଧାଇଁଲା କାମିନୀ । ସଜନୀ ରେ । ୨୨ ।
କରୁଁ ଯାରଙ୍କ ନେତ୍ରଜଣ । କୃଷ୍ଣ ଦର୍ଶନେ ମନ ଛନଛନ ଯେ ।
କଲା ଜବାଅଧଗ୍ରା ଗମନ । ସଜନୀ ରେ । ୨୩ ।
କଉଁ ନାଗସ୍ୱରତନ । କରରେ ଧରିଅଛି ଫଳାଶନ ଯେ ।
କୃଷ୍ଣ ନାମ କରନ୍ତ ଗାୟନ । ସଜନୀ ରେ । ୨୪ ।
କର୍ଣ୍ଣେ ଶୁଣି ବାଦ୍ୟମାନ । କରଇ ଗମନ ନାହିଁ ମୋହନ ଯେ ।
କେହୁ ସଙ୍ଗେ ନାହିଁ ସଖୀଗଣ । ସଜନୀ ରେ । ୨୫ ।
କାହା ହଂସକ ଫିଟିଲା । କାହାର କଙ୍କିଣୀ ଖସିପଡ଼ିଲା ଯେ ।
କୃଷ୍ଣଭାବେ ନ ଜାଣେ ଅବଳା । ସଜନୀ ରେ । ୨୬ ।
କଉଁ ବନମାଳୀଗତ । କଣ୍ଠ ବନମାଳୀ ପଲ୍ଲବ ମତ ଯେ ।
କୃଷ୍ଣନାମ ହୃଦପଦ୍ମେ ଶାନ୍ତ । ସଜନୀ ରେ । ୨୭ ।
କେତେ ରୂପରେ ଅନାଇ । କୃଷ୍ଣଙ୍କୁ ଦେଖୁଛନ୍ତି ଗୃଢମୁଖୀ ଯେ ।
ନବ ଲପନରେ ନ ଥାସଇ । ସଜନୀ ରେ । ୨୮ ।
କଳା ଧଳା ଚେନ ତନୁ । କେ ବୋଲେ ପାସୋରି ନ ଗଲେ ମନୁ ଯେ
କାମୀ ଲୋକଙ୍କର କାମଧେନୁ । ସଜନୀ ରେ । ୨୯ ।
କଲ୍ପତରୁ ଚିନ୍ତାମଣି । କୁସୁମ-ମାର୍ଗଣ ପରଶୁମଣି ଯେ ।
କେହୁ ସମାନ ନୋହିବେ ପୁଣି । ସଜନୀ ରେ । ୩୦ ।
କୋଟି ବ୍ରହ୍ମାଣ୍ଡରେ ସଖୀ । କେ ଲକ୍ଷ୍ୟ ଏହାଙ୍କ ପଲ୍ଲବ ନାହିଁ ଗୋ ।
କତ ଲକ୍ଷ୍ୟ ଦ୍ୟନ୍ତ ଭ୍ରମ ହୋଇ । ସଜନୀ ରେ । ୩୧ ।
କାମିନୀ ବ୍ରୀଡ଼ା ଛଡ଼ାଇ । କରୁଅଛି ଉଦ୍ଧ ଦାଣ୍ଡରେ ନେଇ ଯେ ।
କେ ବର୍ଣ୍ଣିବ ଏ ଶୋଭା ବଢ଼ାଇ । ସଜନୀ ରେ । ୩୨ ।
କଲେ ମୁଖ ବିଲୋକନ । କଟାକ୍ଷେ ଜନ୍ମଇ କୋଟି କଞ୍ଜନ ଗୋ ।
କରଇ ଦୂର ମନୁ ମାନ । ସଜନୀ ରେ । ୩୩ ।

କି ତପରୁ ଗୋପଗୋଈ । କାଖେ ଧରିଥାନ୍ତି ହୃଦେ ଲଗାଇ ସେ ।
କଲା ବଦନେ ଚୁମ୍ବନ ଦେଇ । ସଜଣୀ ରେ । ୩୪ ।

କୃଷ୍ଣଗୁଣମାନ ଗାଇ । କେମନ୍ତେ ରଜଣୀ ବଞ୍ଚିବେ ଗୋଈ ଗୋ ।
କାମକାଣ୍ଡେ ଜରଜର ହୋଇ । ସଜଣୀ ରେ । ୩୫ ।

କହନ୍ତେ ଏଡ଼ା କାମିନୀ । କରନ୍ତି ବଜାଏ ମୁରଲୀପାଣି ସେ ।
କମ୍ବୁଘୋଷ କର୍ଣ୍ଣପଥେ ଶୁଣି । ସଜଣୀ ରେ । ୩୬ ।

କରି ତାଙ୍କୁ ବିଲୋକନ । କହନ୍ତି ଡାକି ବ୍ରଜନମୋହନ ସେ ।
କାହିଁ ନ ଶୁଣୁ ଆମ୍ଭ ବଚନ । ସୁଜନେ ହେ । ୩୭ ।

କୃଷ୍ଣ ବୋଲନ୍ତି ହେ ସଖି । କଂସର ଭଣଜା ଅଟଇ ମୁହିଁ ସେ ।
କେତେ ଯାଉଅଛୁ ଥାଉ ହୋଇ । ସୁଜନେ ହେ । ୩୮ ।

କଳା ଧଳା ରୂପ ଗୃହି କରେ ମୋର ବେନି ବସନ ବିଥ ସେ ।
କଂସ ରଜା ଆଗେ ଯାଇ କହ । ସୁଜନେ ହେ । ୩୯ ।

କହେ ଦାସ କୃଷ୍ଣକର । କରୁଣାସାଗର ମୁରଲୀଧର ସେ ।
କର ଭବଜଳୁଁ ମୋତେ ପାର । ମୋହନ ହେ । ୪୦ ।



# ଅଷ୍ଟାବିଂଶ ଛାନ୍ଦ



ରାଗ—କୌଶିକ

କୃଷ୍ଣବାଣୀ ଶୁଣି କହଇ ରଜକ ଶୁଣ ଆହେ ନନ୍ଦକୁମର ।
କେଶରୀବଦନେ ଅଜ୍ଞଜନ ନାହିଁ ପରି ଲାଗେ ତୁମ୍ଭ ଉତ୍ତର ।
କରିଛ, ବ୍ରଜ ପରିଏ ଏ ନଗର ।
କାହା ବଳ ପାଇ ଏତେ ଆଣ୍ଠ କରି ଓଗାଳିଅଛ ଗ୍ରନାଟୀର ।୧ ।
କାମିନୀମାନଙ୍କଠାରୁ ଯଉଁ ରୂପେ ଖାଅ ଦହି ଦୁଧ ଛଡ଼ାଇ ।
କଟକରେ ଆସି କରୁଛ ଗୋପାଲେ ସେହି ପରକାରେ ବଡ଼ାଇ ।
କଂସର, ରାଜଅଙ୍ଗ ମାହିବସନ ।
କହି ଲୋଲୁପକୁ ଆସିଛ ଆଗକୁ ବିକଳ କରି ପଞ୍ଚ ମନ ।୨ ।
କହୁଅଛି ଆହେ ନନ୍ଦର କୁମର ଗ୍ରହଣ୍ଡିଦଅ ଏ ଅମ୍ବରକୁ ।
କରିବ ବିନାଶ ରାଜ ଅନ୍ତେ କଂସ କାଲି ଜାଣିଥାଅ ତୁମ୍ଭଙ୍କୁ ।
କେଶବ, ଶୁଣି କୋପରେ ଥରହର ।
କ୍ରୋଧେ ମୁଷ୍ଟିପୋତେ ମାଇଲେ ଶିରେ ତାର ଗୁଡ଼ିଲା ପରାଣ ସହର ।୩।
କଲୁଷ ପକାଇ ନିର୍ବାଣକୁ ଯାଇ କୃଷ୍ଣ ଅଙ୍ଗେ ପ୍ରାଣ ପଶିଲା ।
କଳା ଘନାଘନେ କ୍ଷଣକାନ୍ତି ପ୍ରାଏ ଗୋବିନ୍ଦ ଦେହେ ଲୀନ ହେଲା ।
କି ସେହୁ, ମରଣ ନାହିଁକ କାଳରେ ।
କୃଷ୍ଣକରେ ରିପୁଷ୍ଟବେ ନାଶ ଯାଇ ରହିଲା ଅପୂର୍ବ ଧାମରେ ।୪ ।

---

୧।୨—ବଦନେ—ସଦନେ ।
୪।୨—ଦେହେ—ଅଙ୍ଗେ ।

କୃଷ୍ଣବଦନ ଅନାଇଁ ପ୍ରାଣ ଗଲା କୈବଲ୍ୟ ଲଭିଲେ ଅଳ୍ପରେ ।
କରି ବନମାଳୀମାନେ ଯୋଗଧ୍ୟାନ ଯାହା ନ ଲଭନ୍ତି କଳ୍ପରେ ।
କୃଷ୍ଣର, ବୋଲେ ନେଲେ ବସ୍ତ୍ର ଗୋପାଳ ।
କରି ସବୁ ଠୁଳ ବେନି ଭାଇ ପାଇଁ ରଖିଲେକ ବେନି ଦୁକୂଳ । ୫ ।
କରୁଣାନିଧି ଆଜ୍ଞାରେ ଗୋପବାଳେ ମଡ଼ିଆଳମାନ ଘେନିଲେ ।
କନ୍ଧେ ପକାଇ ମଡ଼ିଆଳ ଗୋପାଳ ମଥୁରାଦାଣ୍ଡେ ବିଜେ କଲେ ।
କର୍ଣ୍ଣରେ, ଗଲାଇତ ତାହା ଶୁଣିଲା ।
କୃଷ୍ଣ ରୂପ ଚାହିଁ ଆନନ୍ଦିତ ହୋଇ କର ଯୋଡ଼ି ଆଗେ ମିଳିଲା । ୬ ।
କହେ ବେଣକାରୀ ଶୁଣ ବଂଶୀଧାରୀ ମୋ କରକୁ ଦିଅ ବସନ ।
କାଛୁ ପିନ୍ଧାଇବି କଣ୍ଠ-ଉପକଣ୍ଠି ଦିଶିବ କେଡ଼େ ଶୋଭନ ।
କୃଷ୍ଣ ତା କରେ ଦେଲେ ଦୁଇ ଅମ୍ବର ।
କାଛୁଣି ବେନି ଭାଇଙ୍କି ପିନ୍ଧାଇଲା ଦିଶନ୍ତି କେଡ଼େ ମନୋହର । ୭ ।
କହନ୍ତି କହ୍ନାଇ ତୋଷମନ ହୋଇ ବରମାଗ ହେଲୁ ପ୍ରସନ୍ନ ।
କଞ୍ଜ ଚରଣ କୁସୁମଲିହ ପ୍ରାଏ ନିରନ୍ତେ ରହୁ ମୋର ମନ ।
କୃଷ୍ଣ ହେ, ବାଞ୍ଛିତ ବର ଏ ମୋହର ।
କରୁଣାସାଗର କମ୍ବୁଚକ୍ରଧର ହଉ ବୋଇଲେ ବଂଶୀଧର । ୮ ।
କଲେ ସେଠାରୁ ବିଜଏ ମଧୁରିପୁ ମଧୁପୁର ନାରୀ ପୁରୁଷ ।
କୃଷ୍ଣକିରଣରେ ପତଙ୍ଗପରାଏ ବେଢ଼ି ଦେଖନ୍ତି ଚଉପାଶ ।
କେଶବ, ବିଜେ ସୁଦାମା ଅଙ୍ଗନରେ ।
କର୍ଣ୍ଣେ ଶୁଣି ମାଳୀ ବାହାରି ସତ୍ୱର ପଡ଼ିଲା ପଦ୍ମଚରଣରେ । ୯ ।
କନକ ଝରିରେ ଜାହ୍ନବୀର ନୀର ଆଗରୁଁ ସଞ୍ଚି ରଖିଥିଲେ ।
କୃଷ୍ଣ କାମପାଳ ବେନି ଭାଇ ପାଦ ପତିପତ୍ନୀ ଦୁହେଁ ଧୋଇଲେ ।
କୃତାର୍ଥ, ହେଲେ ଚରଣାମୃତ ପାଇ ।
କରି ସ୍ତ୍ରୀ ଦୁହେ ନୃତ୍ୟ ଆରମ୍ଭିଲେ କୃଷ୍ଣନାମରେ ଭୋଳ ହୋଇ ।

କୁଶକେତୁରେ ଧଉତ ଯଉଁ ପାଦ କୋହଉଛନ୍ତି ଭୃଙ୍ଗ ନେ କୋକନଦେ ।
କୃତ୍ତିବାସ ପାଦୋଦକ ନ ପାଇଣ ରହୁଛନ୍ତି ଶିବ ବିଷାଦେ ।
କଞ୍ଜଚରଣ ଧୋଏ ମାଳୀ ଭବରେ ।
କେବ ତତ୍ତ୍ୱରଇ ଭବବନ୍ଧନୋଦଧି ବନ୍ଧା ଭକ୍ତି-ପ୍ରେମପାଶରେ ।୧୧।
କୃଷ୍ଣଙ୍କୁ ବେଶ କରିବାକୁ ସୁଦାମା ବନମାଳୀରେ ସୁଗନ୍ଧାକୁ ।
କରିଅଛି ମାଳୀ ମାଳ ବନମାଳ ବନମାଳୀକଣ୍ଠେ ଦେବାକୁ ।
କରୁଣା- ନିଧି ତା ମନକୁ ଜାଣିଲେ ।
କର ବେଶ ବୋଲି କେହ ଅମାଙ୍ଗରେ ଉତ୍ତମାଙ୍ଗ ହୃଦ ଦୋରିଲେ ॥
କୃଷ୍ଣଙ୍କୁ ଅନାଇ ସଦନକୁ ଯାଇ ସୁମନେ ସୁମନ ଆଣିଲା ।
କୃଷ୍ଣ କଣ୍ଠମାଳୀ ଦେଇ ବନମାଳୀ ଶ୍ରୀଅଙ୍ଗ କୁସୁମେ ମଣ୍ଡିଲା ।
କେତକୀ ନଥିଲା ଚୂଳରେ ଖଞ୍ଜିଲା ।
କଳାପ ସଙ୍ଗରେ ରଙ୍ଗ ଜାମୁଡାଳ ଗୋଛା ମଲ୍ଲୀକ ବେଢ଼ ଦେଲା ॥
କାମପାଳଙ୍କୁ ବେଶ କରି ସୁଦାମା ମନରେ ହୋଇଲା ଆନନ୍ଦ ।
କୁମରଙ୍କୁ ଅନୁରୂପେ ପୁଷ୍ପ ଦେଲା ଦେଖି ଦୟାନିଧି ଆନନ୍ଦ ।
କୃପାଳୁ, ମାଳୀକ ଯାଚି ଦେଲେ ବର ।
କୁସୁମରେ ବେଶ ବେନି ସହୋଦର ଚଳନ୍ତି ମଥୁରାଦାଣ୍ଡର ।
କାମିନୀ ପୁରୁଷ ମଥୁରାଦାଣ୍ଡରେ ଦେଖୁଛନ୍ତି ହୋଇ ହରଷ ।
କନ୍ୟାସ୍ତମ୍ଭସ୍ତ୍ରୀଏ ଧାଡ଼ି ଧାଡ଼ି ହୋଇ କାହାରିହିଁ ନାହିଁ ବରସ ।
କାମିନୀମାନେ ଗୃହ ଲଜ୍ଜା ଉପେକ୍ଷି ।
କୃପାନିଧିମୁଖ ଚାହିଁ ଆନନ୍ଦରେ ହଉଅଛନ୍ତି ମହାସୁଖୀ ।୧୫।
କୁବୁଜା ଆସନ୍ତି ତିନି ବାଙ୍କ ହୋଇ ଚରମଦେଶେ ଘେନି କୁଜ ।
କମଳନୟନ ଆଗେ ଉଭା ହୋଇ । ପଚାରୁଛନ୍ତି ଦେବରାଜ ।
କାଖରେ, କି ଧରିଛ କହ ବହନ ।
କହଇବା ମନୋରଥ ପୂର୍ଣ୍ଣ ତୋର ନାଗରୀମାନଙ୍କ ରଚନ ।୧୬।

କହଇ କୁବୁଜା ସାରଙ୍ଗପେଢ଼ାରେ ସାରଙ୍ଗେ ସାରଙ୍ଗ ମିଶାଇ ।
କଂସ ଅଙ୍ଗଲାଗି ନିମନ୍ତେ ସାରଙ୍ଗ ନେଉଛନ୍ତି ନାଗର କହ୍ନାଇ ।
ତାଖରୁ ସାରଙ୍ଗ ଦେବୁ କି ଥୋକାଏ ।
କରି ମନ ତୋଷ ଅତି ପଉରୁଷ କରିବ ମାମୁ କଂସ ରାଏ । ୧୭ ।

କୁବୁଜା କହଇ ସାରଙ୍ଗବଦନ କଂସକୁ ମୋର ଭୟ ନାହିଁ ।
କରିଅଛି ଆଶା ସାରଙ୍ଗ ପରାଏ ସାରଙ୍ଗ ଅପଘନ ଚାହିଁ ।
କୃଷ୍ଣ ହେ ଅନାଇ ସାରଙ୍ଗବଦନ ।
କୃତାର୍ଥ ହୋଇଲି, ବେନି ଘଇ ଅଙ୍ଗେ ସାରଙ୍ଗ କରିବ ଭୂଷଣ ।୧୮।

କାଖରୁ ଗନ୍ଧ କାଢ଼ିଣ ଗନ୍ଧକାରୀ ମୁଖଡିଣ୍ଡିମ ବାଦ୍ୟ କଲା ।
କେ ବଡ଼ କେ ସାନ ମନରେ ବିଚାରି ଗୋବିନ୍ଦମୁଖକୁ ଚାହିଁଲା ।
କରୁଣା-ନିଧି ଅନାଇଲେ ରାମକୁ ।
କୁବୁଜା ଅନାଇ ଆନନ୍ଦିତ ହୋଇ ଗନ୍ଧ ଦେଲା କାମପାଳଙ୍କୁ । ୧୯ ।

କର୍ପୂର ଚନ୍ଦନ କୃଷ୍ଣ ଅଙ୍ଗେ ବୋଳି କୁବୁଜାର ମନ ପୂରୁଣା ।
କୃପାସିନ୍ଧୁ ଦୀନବନ୍ଧୁ ଚିନ୍ତାମଣି କୁବୁଜାକୁ କଲେ କରୁଣା ।
କୃପାରେ ଚରଣେ ଚରଣ ଚାପିଲେ ।
କର ଚିବୁକରେ ଦେଇ ବଂଶୀଧାରୀ ଅଳପ କରି ଟେକି ଦେଲେ ।୨୦।

କୁଜ କେଣେ ଗଲା କାନ୍ତି ବିକାଶିଲା ଯେସନେ ସ୍ୱର୍ଗ ଅପସରୀ ।
କୁବୁଜା ଆପଣା ବିଗ୍ରହ ଅନାଇ ବିଚାରି କରଇ ସୁନ୍ଦରୀ ।
କାହ୍ନାକୁ, ସମର୍ପିବି ଏ କଳେବର ।
କରି ଲାଗନ୍ତେ ମୁଁ ହୋଇଲି ସୁନ୍ଦରି ଏ ସେ ମୋହର ନିଜ ବର ॥

କୁବୁଜା ଏମନ୍ତ ମନରେ ବିଚାରି କୃଷ୍ଣର ଧଇଲା ଉତ୍ତରୀ ।
କଲା ପୀତାମ୍ବର ନାଗରୀଙ୍କ ବର କୋପ ନ କର ବଂଶୀଧାରୀ ।

କେଶବ, ବୋଇଲେ ସଙ୍ଗେ ହଳଧାରୀ ।
କପାଇଁ ଉତ୍ତରୀ ଧରୁଥିଲୁ ନାରୀ ଗ୍ରୀଡ଼ା ମନରୁ ଦୂର କରି । ୨୨ ।

କଂସଦର୍ପ ନାଶି ବନ୍ଧୁଜନ ତୋଷି ଗୋପାଳ ପେଶି ଗୋପପୁରୀ ।
କରୁଥାଅ ଯାଇ ପୁରକୁ ମନ୍ତ୍ରିଣି ବିଜେ କରିବ ତୋ ନଗରୀ ।
କୁବୁଜା, ତକ୍ଷଣେ ଉତ୍ତରୀ ଛାଡ଼ିଲା ।
କୃଷ୍ଣଙ୍କୁ ମେଲାଣି ମାଗିଣ କାମିନୀ ପୁରମନ୍ଦିର ଯାଇ କଲା । ୨୩ ।

କଲେ ସେଠାରୁ ବିଜଏ ବେନି ଭାଇ ଅନନ୍ତା ହୋଇଲା ଆନନ୍ଦ ।
କହଇ ବିଶ୍ୱର ଗଲା ମୋର ଭାର ସ୍ତୁତି କରନ୍ତି ପୁରବୃନ୍ଦ ।
କରୁଣାନିଧି ବିଶ୍ୱର କଲେ ମନ ।
କଂସ ସବୁରି ପରପଞ୍ଚୀ ଅଛଇ କାଲି କରାଇବା ନିଧନ । ୨୪ ।

କୃଷ୍ଣ ଗୋପବାଳେ ଗମନ କରନ୍ତେ ଚମକିଲା ମଧୁଭୁବନ ।
କେ ବାଢ଼ ବୁଲାଇ ଗାଲଭୂଷା ଦେଇ ଚଳନ୍ତି ବରଜନନ୍ଦନ ।
କଲେକ ଧନୁଘରେ ବିଜେ ମୋହନ ।
କହନ୍ତି ମୋହନ ଶୁଣ ବେଦକାରି କବାଟ ଫିଟାଅ ବନ୍ଧନ । ୨୫ ।

କୃଷ୍ଣବାଣୀ ଶୁଣି ଦ୍ୱାରପାଳ ଭଣି ଏଡ଼େ ଗର୍ବ ଅଛି ତୁମ୍ଭର ।
କରିଛ ଭରସା ଧନୁ ଭାଙ୍ଗିବାକୁ ବୋଲି ରହିଲେ ଶସ୍ତ୍ର ଧରି ।
କୋପରେ ପ୍ରତାପୀ ରୋହିଣୀନନ୍ଦନ ।
କରି ଘୋରନାଦ ମୁଥ ପ୍ରହାରିଲେ ଦ୍ୱାରୀକ ନେଲେ କାଳଗଣ । ୨୬ ।

କାମପାଳ କୃଷ୍ଣ ଧସାଇ ପଶିଣ ଧନୁକୁ ଅଢ଼ଲେ ଉଚ୍ଛୁଢ଼ ।
କରେ ଗୁଣ ଦେଇ ଦୃପ ଓଟାରନ୍ତେ ଭାଙ୍ଗିଣ କଲା ଘୋର ରଡ଼ ।
କୋଦଣ୍ଡେ ଯେତେକ ରକ୍ଷୀ ଲାଗିଥିଲା ।
କରି ହୁରଚୁରି ନେଲେ ଗୋପବାଳେ ବାହାର ହେଲେ ନନ୍ଦବଳା ।

କରନ୍ତେ ଗମନ ବେଲ ଅବସାନ ମଧୁବନେ ହେଲେ ପ୍ରବେଶ ।
କୃଷ୍ଣଙ୍କୁ ଦେଖିଣ ଜନକ ଜନନୀ ମନରେ ହୋଇଲେ ହରଷ ।
କୋଳରେ ବସାଇ ମୁଖେ ଚୁମ୍ବ ଦେଲେ ।
ଚରଣ ମାର୍ଜନ ଭୁଞ୍ଜି ଆଚମନ କରି ପଲଙ୍କେ ପହୁଡ଼ିଲେ । ୨୮ ।

ଜଗିରବଦନପଲଙ୍କରେ ଶୟନ କଲେକ ବେନି ସହୋଦର ।
ଜଳ ବସ୍ତୁରଇ ସୁନୁଘୁଚାସଙ୍ଗେ ଅଚ୍ଛନ୍ତି ଭରଣିଧର ।
କୋମଳ ପଲଙ୍କେ ନିଦ୍ରା ଗୁରୁତର ।
କାମପାଳ କୃଷ୍ଣ ବେନି ସୁଚ ପାଦ ସ୍ମରଇ ଦାସ କୃଷ୍ଣଙ୍କର । ୨୦ ।



## ଉ୍ନତ୍ରିଂଶ ଛାନ୍ଦ

ଝ ଝ

ରାଗ ମଙ୍ଗଳଗୁଜ୍ଜରୀ

କଲେ ତାମ୍ରଚୂଡ଼ ବାଣୀ ଷଦେବ ଶେଷରେ ।
କୃଷ୍ଣ କାନପାଲ ନିଦ୍ରା ତେଜିଲେ ସତ୍ୱରେ ଯେ । ୧ ।
କୁଳବଣିମାନେ ଲଜ୍ଜା ଅବୋଇ ଲଭିଲେ ।
କୁମୁଦ ମୁଦ୍ରିତ ହେଲେ କଞ୍ଜ ବିକାଶିଲେ ଯେ । ୨ ।
କର ଦେଇ ସୁବଳ ସୁଦାମା ସଖା କରେ ।
କରୁଛନ୍ତି କ୍ରୀଡ଼ା ଉପବନରେ ରଙ୍ଗରେ ଯେ । ୩ ।
କଳାନିଧିଙ୍କ ନକ୍ଷତ୍ର ବେଢ଼ିଲା ପରାଏ ।
କି ଶୋଭି ଦିଶନ୍ତି ସଙ୍ଗେ ବ୍ରଜବାଳ ପୋଏ ଯେ । ୪ ।
କହିଲି ଡଗର ନନ୍ଦ ଅଗରେ ଯାଇଣ ।
କର' ରଙ୍ଗସଭାକୁ ବିଜଏ ଗୋପ-ରାଣ ଯେ । ୫ ।
କୃଷ୍ଣ କାନପାଳ ଘେନ ସକଳ ସମ୍ଭାର ।
କର୍ଣ୍ଣେ ଶୁଣି ନନ୍ଦ ବାହାରିଲେ ତତପର ଯେ । ୬ ।
କଂସ ଅଗରେ ସମ୍ଭାର ଦେଲେକ ବୁଝାଇ ।
କଲା ଆଜ୍ଞା ବସୁଦେବ ପାଶେ ରଖ ନେଇ ଯେ । ୭ ।
କୃଷ୍ଣ ବିଜଏ ପଛରେ ଘେନି ସଖାଗଣ ।
କାନ୍ତି ନିନ୍ଦା କରୁଅଛି କୋଟିଏ କଞ୍ଚନ ଯେ । ୮ ।
କିବା ଉଡୁରାଜ ଋକ୍ଷ ସଙ୍ଗେ ଅନଙ୍ଗରେ ।
କଳିନ୍ଦ ଉଦେ ହୋଇ କି ଆସନ୍ତି ଅମ୍ବରେ ଯେ । ୯ ।

ଝଙ୍କି ଚରଣେ କନକ ହଂସକ ନିନାଦ ।
କାମିନୀଙ୍କ ହିୟାମାନରେ ନ ମାଉଇ ନାଦ ଯେ । ୧୦ ।
କର୍ଣ୍ଣେ ଶୁଣି ହୁଅଥିଲେ ଛନଛନ ମନ ।
କଲେ ଗମନ ପ୍ରଧାନପ ପତଙ୍ଗ ଯେସନ ଯେ । ୧୧ ।
କବନ୍ଧ ପରାଏ ବ୍ରୀଡ଼ା ଲପନରୁ ଗଲା ।
କୃତାର୍ଥ ହୋଇଣ ପ୍ରେମ—ନଦୀ ଉଚ୍ଛୁଳିଲା ଯେ । ୧୨ ।
କରନ୍ତି ଗମନ କୃଷ୍ଣ—ଦର୍ଶନରେ ହେଳ ।
କାନ୍ତ ସୁତ ବନ୍ଧୁ ଲଜ୍ଜା ତେଜିଲେ ସକଳ ଯେ । ୧୩ ।
କୃଷ୍ଣଦର୍ଶନରେ ବାଳୀ ହୋଇଲେ ଆନନ୍ଦ ।
କଳାକର ଦର୍ଶନରେ ଯେମନ୍ତ କୁମୁଦ ଯେ । ୧୪ ।
କଲେ ଦୂର ବସ୍ତ୍ରଲାପ ସାଥିକ ଗମନ ।
କନ୍ୟାସ୍ତମ୍ଭ ପ୍ରାଏ କାନ୍ତ ହେଣ ଚନ୍ଦ୍ରଚନ୍ଦ୍ର ଯେ । ୧୫ ।
କାମବାଣୁସରେ ରୋହିତ ପରାଏ ହୋଇ ।
କରୁଣ ମମତା ବାଳୀ ପଡ଼ିଲେ ଝସାଇ ଯେ । ୧୬ ।
କନ୍ଦନ ଦର୍ଶନେ ଶୁଏ କନ୍ଦନ ଯେମନ୍ତ ।
କୃଷ୍ଣ ଦର୍ଶନରେ ବାଳୀ ହୋଇଲେ ସେମନ୍ତ ଯେ । ୧୭ ।
କେ ବୋଲେ ଏ ନଟବର ଅଟେ କଳାବତୀ ।
କଟାକ୍ଷମାନଙ୍କେ ମୋହୁଛନ୍ତି ଗନ୍ଧବତୀ ଯେ । ୧୮ ।
କେ ବୋଲେ ବାଞ୍ଛା-କଳପ-ବିଟପ ଅଟନ୍ତି ।
କାମୀ କାମିନୀଙ୍କ ବାଞ୍ଛା ପୂର୍ଣ୍ଣ କରୁଛନ୍ତି ଯେ । ୧୯ ।
କୁମ୍ଭକାର କୀଟପ୍ରାଏ ଜାଣନ୍ତି ମନ୍ତ୍ର ।
କାହାକୁ ମାର କାହାକୁ କରନ୍ତି ଉଦ୍ଧାର ଯେ । ୨୦ ।
କେ ବୋଲଇ ଶୁଣ ସୁସଖୀ କର ମୋର ବୋଲ ।
କାଳୀକାନ୍ତ ଶିରେ ବନ୍ଧି କମଳ କମଳ ଯେ । ୨୧ ।

କର ସାରଙ୍ଗ ସାରଙ୍ଗ ବେନିକ ଯୁଗଳ ।
କୃତ୍ତିବାସ ଶ୍ରୀଅଙ୍ଗରେ ନେଇ ସଖୀ ବୋଲ ଯେ । ୨୨ ।
କାଶୀପତିଙ୍କ ଉକତ କର ମାଗ ବର ।
କୁଞ୍ଜବିନୋଦଅ ନଟବର ହେଉ ବର ଯେ । ୨୩ ।
କହେ ପ୍ରାଜ୍ଞ ନାରୀ ଶୁଣି ଆଳୀ କହିବାର ।
କଲୁ ଯାହା ବାଞ୍ଛା ମନ ଦ୍ରବିଲ ମୋହର ଯେ । ୨୪ ।
କି କହିବି ଏ କାଳକୁ ସରିଲ ବୟସ ।
କରନ୍ତୁ ବନମାଳୀ ସଙ୍ଗତେ କ୍ରୀଡ଼ା ରସ ଯେ । ୨୫ ।
କରି ପରିରମ୍ଭ ମୁଖେ ପରିରମ୍ଭ ଦେଇ ।
କେଳି କରନ୍ତୁ ଅଙ୍କରେ ପଲଙ୍କେ ବସାଇ ଯେ । ୨୬ ।
କି କହିବି ମନ ମୋର ହେଉଅଛି ଯାହା ।
କୁଞ୍ଜବିନୋଦଅ କୃଷ୍ଣ ଜାଣନ୍ତିନି ତାହା ଯେ । ୨୭ ।
କି ଶୋଭା କଣ୍ଠିହୃଦୟୁ ଅନା ଆରେ ବାଳୀ ।
କର୍ପୂର ଚନ୍ଦନ ମୃଗମଦ ଛନ୍ତି ବୋଲି ଯେ । ୨୮ ।
କରିବ ଯା ହୃଦରେ ଲଗାଇ ଆଲିଙ୍ଗନ ।
କମ୍ବୁଧରସ୍ତୁତିଚାପ ହୋଇବ ଖଣ୍ଡନ ଯେ । ୨୯ ।
କରିଥାନ୍ତା ବିହି ଯେବେ କିଶୋରି ବୟସ ।
କରି ବ୍ରୀଡ଼ା ଦୂର ମୁଁ ଧରନ୍ତି ପୀତବାସ ଯେ । ୩୦ ।
କହୁଣ ପ୍ରାଜ୍ଞ କାମିନୀ ତୃଣା ହେଲ ପୂଣ ।
କର୍ଣ୍ଣେ ଶୁଣି ଭ୍ରମଅଙ୍ଗୀ ଭ୍ରମ କଲେ ମନ ଯେ । ୩୧ ।
କେ ବୋଲଇ ଝାସ ଦେବା ବିଷ୍ଣୁପଦୀଣୀରେ ।
କେ ବୋଲେ ହରଗଉରୀ ମନାଇ ସେବାରେ ଯେ । ୩୨ ।
କେ ବୋଲେ କଳ୍ପବଟରେ କଲ୍ପଣା କରିବା ।
କୃପାନିଧି ଅଙ୍ଗ ସଖୀ ଯେମନ୍ତେ ଲଭିବା ଗୋ । ୩୩ ।

କହୁ କହୁ କୃଷ୍ଣ ପଛେ ଅଛନ୍ତ ଗୋଡ଼ାଇ ।
କରନ୍ତ ମଥୁରା ଭଜେ ନାଗର କହ୍ନାଇ ଯେ । ୩୪ ।
କୃଷ୍ଣ ଭଜେ ବନମାଳୀ ଅଗ୍ରତ ଦୁଆରେ ।
କ୍ରୋଧେ ବନମାଳୀରିପୁ ଅଛଇ ସେଠାରେ ଯେ । ୩୫ ।
କହନ୍ତ ଯନ୍ତାବଦନ ଅନାଇ ଗୋପାଳ ।
କାଢ଼ ବନମାଳୀ ଦ୍ୱାରୁ ଉରନ୍ତ ଗୋପାଳ ଯେ । ୩୬ ।
କହେ ଶମ୍ବର ସମର କରଯାଅ ହରି ।
କର୍ପା କହୁଛ ଏ ବାଣୀ ଲଜ୍ଜାକୁ ନ ଡର ଯେ । ୩୭ ।
କଲ ନାଶ ଅଷ୍ଟମଲ୍ଲ କହୁଛ ଏମନ୍ତ ।
କ ଛାର ଏ କୁବଳୟା କେଡ଼େ ବଳବନ୍ତ ଯେ । ୩୮ ।
କୃଷ୍ଣ କହନ୍ତ ହେ ଯନ୍ତା କହ ବହେଳନ ।
କରିଛୁ କି ବନ୍ଧନନ କରିବାକୁ ମନ ହେ । ୩୯ ।
କୁବଳୟା କଶ୍ୱର କନ୍ଧରେ ଅଛୁ ଚଢ଼ି ।
କର ଅବଲମ୍ବ ଥିଲେ ଝିଙ୍କନ୍ତ ତୋ ଦାଢ଼ି ରେ । ୪୦ ।
କୃଷ୍ଣ ବୋଲନ୍ତ କଟାଣ ସଙ୍ଗେ କଟାଣ ।
କରିଅଛୁ ବାଞ୍ଛା ଏହା ଲଙ୍ଘିବାକୁ ମନ ଯେ । ୪୧ ।
କୃଷ୍ଣବାଣୀ ଶୁଣି ଯନ୍ତା ମନେ ହେଲା ଖଙ୍ଗ ।
କସ୍ଥଳବଦନ ଗଜ ଚିପିଲା ମାତଙ୍ଗ ଯେ । ୪୨ ।
କହେ ଧର ଧର ବୋଲି ମାରି ଅଙ୍କୁଶକୁ ।
କ୍ରୋଧଭରେ ଧାଇଁ ହରି ହରି ଉପରକୁ ଯେ । ୪୩ ।
କରିଛି ସାହସ ହରି ହରି ମାରିବାକୁ ।
କେବେ ବସ୍ତୁରଇ ଯିବ ହରିଭୁବନକୁ ଯେ । ୪୪ ।
କୋଟିବ୍ରହ୍ମାଣ୍ଡ ଯାହାର ରୋମକେ ଅଛଇ ।
କୃଷ୍ଣ ବୋଲିବା ମାତ୍ରକେ କାଳ ନ ଛୁଇଁଇ ଯେ । ୪୫ ।

କରୁଅଛୁ ତାହା ସଙ୍ଗେ ମୂର୍ଖପଣେ ରଣ ।
କରଇ ନାହିଁ ବସ୍ତୁର ଲଭିବ ମରଣ ଯେ । ୪୬ ।
କଟେ ଇନ୍ଦ୍ରଜାଲ ମାୟା କଲେ ମାୟାଧର ।
କରନ୍ତ ନବଳ ପ୍ରାଏ ଗତ କପଟର ଯେ । ୪୭ ।
ଉଦ୍ଧେ ମାହୁନ୍ତ ନବଳ ହେଲ ମାର ମାର ।
କସ୍ତି ମାରନ୍ତେ ଶୂନ୍ୟ ହୋଇଲେ ମାୟାଧର ଯେ । ୪୮ ॥
କଲେ ଯୁଞ୍ଜଜନମାନେ ନେଜ ଥନଥନ ।
କେ ବୋଲେ ଏ ପାପପୁରେ ନ ଥିବା ବହନ ଯେ । ୪୯ ।
କହଇ ଆଲୀକ ଆଲୀ ଶୁଣ ମୋ ବଚନ ।
କରି ସଲେକନ ଏଥେ ଦୁଃଖ ଆମ୍ଭ ମନ ଯେ । ୫୦ ।
କେମନ୍ତ ହୋଇ ବଞ୍ଚିବ ଏହା ଗର୍ଭଧାରୀ ।
କରନ୍ତ ରୋଦନ ମଧୁପୁର ନର ନାରୀ ଯେ । ୫୧ ।
କଲେ କୃପା ପ୍ରାଣୀଙ୍କ ସକଳ ଦେଖି ହରି ।
କସ୍ତି ଆଗେ ଭସ୍ମ ହେଲେ ଯେସନେ କେଶରୀ ଯେ । ୫୨ ।
କରେ ଧରି ଲଙ୍ଗୂଳ ବୁଲାଇ ଅନ୍ତରୀଳେ ।
କଶ୍ରୁଡ଼ିଲେ ନେଇ ବନପତିଦ୍ୱାର ତଳେ ଯେ । ୫୩ ।
କଷିବର ପ୍ରାଣ ଅବନୀରେ ପଡ଼ି ଗଲା ।
କୃଷ୍ଣ ଅଙ୍ଗରେ ଯାଇଣ ତକ୍ଷଣେ ପଶିଲା ଯେ । ୫୪ ।
କନବଲ୍ୟ ମୂକତିକ ଲଭିଲା ଅଲ୍ପରେ ।
କଲେ ତପସ୍ୟା ନ ମିଳେ କୋଟିଏ କଲ୍ପରେ ଯେ । ୫୫ ।
କସ୍ତୀରଦନ ମାଇଲେ ଯନ୍ତ୍ର ବସଙ୍ଗରେ ।
କଞ୍ଚିତେ ପସିଣ ଗଲା ନୟନବାଟରେ ଯେ । ୫୬ ।
କରେ ଦନ୍ତୀଦନ୍ତ ଧରି ଉଜେ ଦଇତାରି ।
କତ ଦେଲା ଦଣ୍ଡପାଣି ନାମକୁ ବସ୍ତୁରି ଯେ । ୫୭ ।

କୃଷ୍ଣ ମଥୁରାଦାଣ୍ଡରେ ବିଜେ କରି ଯାନ୍ତି ।
କୁସୁମ ବରଷି ଦେବେ ସ୍ତୁତି କରୁଛନ୍ତି ଯେ । ୫୮ ।
କୃପାନିଧି ରଙ୍ଗସଭାତଳେ ପରବେଶ ।
କାମିନୀମାନଙ୍କୁ କାନ୍ତ ଅନଙ୍ଗ ପୁରୁଷ ଯେ । ୫୯ ।
କୃଷ୍ଣଙ୍କୁ ଚାଣୂର କହେ ପାରୁଶକୁ ଯାଇ
କର ମାଲଯୁଦ୍ଧ ରାଜା ଅଛନ୍ତି ଅଣାଇ ହେ । ୬୦ ।
କୃଷ୍ଣ କହନ୍ତି ଆମ୍ଭର ଯୁଦ୍ଧ ଖେଳିବାର ।
କପାଁ କହୁ ଏ ବଚନ କରି ଅବେଭାର ଯେ । ୬୧ ।
କହି ପରୁଷ ବଚନ କୃଷ୍ଣଙ୍କୁ ଧରିଲା ।
କାମପାଳ ସଙ୍ଗେ ମୁଷ୍ଟିକର ଯୁଦ୍ଧ ହେଲା ଯେ । ୬୨ ।
କରୁଛନ୍ତି ମାଲଯୁଦ୍ଧ ବିଚିତ୍ର ବିଧାନ ।
କହନ୍ତି ଅନନ୍ତା ରଖ ରଖ ଜନାର୍ଦ୍ଦନ ହେ । ୬୩ ।
କୁଟିଳ ଅସୁରେ ନ ଜାଣନ୍ତି କୃଷ୍ଣ ବଳ ।
କାବାବ୍ ଭିତରେ କାହିଁ ଲୋଡ଼ୁଛନ୍ତି ଥଳ ଯେ । ୬୪ ।
କରୁଛନ୍ତି ମାଲଯୁଦ୍ଧ ଅତ୍ୟନ୍ତ ପ୍ରବଳ ।
କୃଷ୍ଣଙ୍କୁ ଅନାଇ ନାରୀ ହୁଅନ୍ତି ବିକଳ ଯେ । ୬୫ ।
କ୍ରୋଧେ ତାତ ମାତ କହେ ରକ୍ଷା ହେଉ ସୁତ ।
କାଳୀକାନ୍ତ ବରାଙ୍ଗେ ଢାଳିବୁ ପଞ୍ଚାମୃତ ଯେ । ୬୬ ।
କାଶ୍ୟପୀଦେବଙ୍କ ମୁଖେ ଦେବୁଁ ମିଷ୍ଟା ଅନ୍ନ ।
କରାଇବୁ ମିହଉପସ୍ୱଗେ ଗୋରୁଦାନ ଯେ । ୬୭ ।
କହୁଁ ବେଳ ଜନନେତ୍ରୁଁ ବହେ ଅଶ୍ରୁଜଳ ।
କୃଷ୍ଣ ନ ସହିଲେ ତାତ ଜନନୀ ବିକଳ ଯେ । ୬୮ ।
କୁଧରେ ଅଶନ ପ୍ରାଏ ପ୍ରହାରିଲେ ମୁଥ ।
କଣ୍ଠଉଲେ ପ୍ରାଣ ହାରି ମଲ୍ଲା ଦଇତ ଯେ । ୬୯ ।

କାମପାଳ ଦେଖିଣ ହୋଇଲେ କୋପଭର ।
କ୍ରୋଧେ ମୁଷ୍ଟିକହୃଦରେ ପ୍ରହାରିଲେ ଲତ ଯେ । ୭୦ ।
କାମପାଳହସ୍ତରେ ମୁଷ୍ଟିକ ପ୍ରାଣ ଗଲା ।
କଳୁଷ ପକାଇ ମୂଢ଼ ନର୍କାଣ ଲଭିଲା ଯେ । ୭୧ ।
କଂସ ଗୃହିଁ କ୍ରୋଧରେ ହୋଇଲା ଥରଥର ।
କରେ କୃପାଣ ଧଇଲା ଦୃମିଳାକୁମର ଯେ । ୭୨ ।
କଲେ ମଞ୍ଚାପରେ ଢଳେ ବେନି ସହୋଦର ।
କୃଷ୍ଣଙ୍କୁ ଅନାଇ କଣ୍ଠ ଶୁଖିଲା କଂସର ଯେ । ୭୩ ।
କଳେବରୁ ପ୍ରାଣ ଗଲା କୃଷ୍ଣମୁଖ ଗୃହିଁ ।
କେଶ ଧରି ଭୂବରେ ପଡ଼ିଲେ ଖବଗ୍ରାହୀ ଯେ । ୭୪ ।
କୁମ୍ଭକାର ସ୍ୱାର୍ଥ ପ୍ରାଏ ମାରଣ ଭାରିଲେ ।
କନକସିଂହାସନେ ଅଜାଙ୍କୁ ରାଜା କଲେ ଯେ । ୭୫ ।
କଜ୍ଜ୍ୱଳଭଞ୍ଜନ ଅଟେ ପଙ୍କଭଞ୍ଜନ ।
କୁବୁଜାଭଞ୍ଜନ କର ମୋ କଷ୍ଟ ଭଞ୍ଜନ ଯେ । ୭୬ ।
କହେ କୃଷ୍ଣ କୃଷ୍ଣ ରକ୍ଷା କର କୃଷ୍ଣକର ।
କଳ୍ପବୃକ୍ଷ ମାନସ ହେବ ଦାସୀ ବଧ୍ୱଜାର ହେ । ୭୭ ।



# ତ୍ରିଂଶ ଛାନ୍ଦ



## ରାଗ—ଅବକାଶ କାମୋଦୀ

କଉଣପମଣି ହତ ଶୁଣି । କଲେ ରୋଦନ କଂସରମଣୀ ।
କୋଳରେ ଧରିଣ ମୃତ କଳେବର କରୁଛନ୍ତି ଶୋକ ଗୁଣି ଗୁଣି ସେ ।
କାନ୍ତାମଣି । କାନ୍ତ କଲା ଉପକାର ଗାଇ ପୁଣି ସେ । ୧ ।

କହେ ଜ୍ୟେଷ୍ଠ ରାଣୀ ଅନା ସଖି । କଳେବରେ ଶସ୍ତ୍ରଘାତ ନାହିଁ ।
କେ ବୋଲେ ପୂତନା ମାଇଲା ପରାଏ କଣ୍ଠେ ମାଇଲେ ହବଗ୍ରାସ୍ତି ସେ ।
କହି କହି । କରୁଅଛନ୍ତି ରୋଦନ ଚନ୍ଦ୍ରମୁଖୀ ସେ । ୨ ।

କେ ବୋଲଇ ଧାତା କି ସର୍ଜିଲା । କପାଇଁ ଏଡ଼େ ଅବଧି କଲା ।
କିଶୋରବୟସେ ବିଧବା କରାଇ କି ଯଶ ଏଥିରେ ଅରଜିଲା ସେ ।
କେ ବୋଲଇ । କଲେ କୂଟ ଦେବଗଣେ କଂସ ପାଇଁ ସେ । ୩ ।

କର୍ଣ୍ଣେ ମାଇଙ୍କ ରୋଦନ ଶୁଣି । କରୁଣାସାଗର କମ୍ବୁପାଣି ।
କାଢ଼ିଲପରାଏ ହୋଇ ବଂଶୀଧାରୀ କେତେବେ ମାଇଙ୍କି ବୋଧ କରି ସେ ।
କର ଧରି । କଦର୍ଥନା ହୋଇ କହୁଛନ୍ତି ହରି ସେ । ୪ ।

କରି ପ୍ରତିଆଶା ଥିଥିଲି । କନ୍ଥି ସୁଖ ଦେଖି ନ ପାରିଲି ।
କଙ୍କଣ ନୟନ କଙ୍କଣ ହରଣ କି ଯୋଗରେ ଥସି ମୁଁ ଦେଖିଲି ଗୋ ।
କିସ କହୁ । କରୁଥାଇ ମାମୁ ମୋତେ କି ସେନେହ ଗୋ । ୫ ।

କୂଟେ ମାତା ପିତା ବନ୍ଦୀ କଲା । କାରାଗୃହେ ନେଇ ଖୋଳିଲା ।
କୀର୍ତ୍ତିକହଵ ମାଈଁ ଜନମ କାଳରେ କଂସଡରେ ପିତା ଘେନଗଲା ଗୋ ।
କପୋଳରେ । କେହି ନ ଜାଣନ୍ତି ନେଲା କ୍ଷଣଦାରେ ଗୋ । ୬ ।

କର୍ମେ ନନ୍ଦଘରେ ଲୁଚ୍ଚୁଇଲ । କୃଚ୍ଛେ ମାମୁ ଦୂତ ବରଗିଲ ।
କାଳକୂଟ ଦେଇ ବେଢ ପୟୋଧରେ କ ଧେଇ୍ନହେ ପୂତନା ସଙ୍ଖୋଳିଲ ସେ
କେତେ ମତେ । କେତେ ସୁର ପେଶୁଥାଇ କ ଗୁପତେ ସେ । ୭ ।
କହୁ ମାଈଙ୍କୁ ପ୍ରବୋଧ କଲେ । କଂସ ଶବଦାହ କରାଇଲେ ।
କହାଇ ଜନକଜନନୀ ଶାଙ୍କୋଳ କୃଷ୍ଣ ନନ୍ଦକୁ ପ୍ରବୋଧ କଲେ ସେ ।
କୃପାବ୍ଧି । କହୁ ସୁବଳସୁଦାମା ମନ ବୋଧି ସେ । ୮ ।
କହୁନ୍ତ ସଖାଙ୍କୁ ନନ୍ଦବାଳ । କରିଥିବ ରକ୍ଷା ଶାପମୂଳ ।
କ୍ରୀଡ଼ାନନ୍ଦକେତନ କରଣ ଯତନ କରୁଥିବ ବୋଧ ଗୋପୀକୁଳ ସେ ।
କହୁ କହୁ । କଲେ ସଖାଙ୍କୁ ବୋଧ କଳାକହ୍ନାଇ ସେ । ୯ ।
କଲେ ଗୋପକୁ ଗମନ ପୋଏ । କାମପାଳ ସଙ୍ଗେ ଦେବରାଏ ।
କରୁଛନ୍ତି ଲୀଳା ମଥୁରାନଗରେ କହୁଲେ ବହୁତ ପଦ ହୋଏ ହେ ।
କୋବିଦେ ହେ । କୃଷ୍ଣଲୀଳା ଅନ୍ତ କରି କହୁ ନୋହେ ହେ । ୧୦ ।
କେତେଦିନ ଅନ୍ତେ ବଂଶୀଧାରୀ । କୁବୁଜାଙ୍କ ପୁରେ ବିଜେ କରି ।
କ ସ୍ନେହେ ପୁର ମଣ୍ଡିଛି ଘନ୍ତୁଅରା କୁବେରଭୁବନ ଲୁହେ ସରି ହେ ।
କ ଶୋଭନ । କାନ୍ଥେ ଅଛନ୍ତି ରତିଙ୍କ ପ୍ରତିମାମାନ ସେ । ୧୧ ।
କର୍ପୂର ଚନ୍ଦନ ଅଙ୍ଗନରେ । କରିଛି ସିଞ୍ଚନ ଅମ୍ବୁନରେ ।
କସ୍ତୂରଦନ ପଲଙ୍କେ ତୁଳୀ ଶେଯ କୁସୁମ ପକାଇ ଯତନରେ ସେ ।
କରି ଧ୍ୟାନ । କୃଷ୍ଣରସରେ ନିମଗ୍ନ କରି ମନ ସେ । ୧୨ ।
କରିଅଛି ଆଶା ଦେଇ ମନ । କୁଜ ଜନ ହେଲ ପଦ୍ମ ପୂର୍ଣ ।
କନକପାତ୍ରରେ ସୁବାସ ଚନ୍ଦନ କରିଅଛି ମେଳ ଚନ୍ଦ୍ରଚୂଡ଼ ସେ ।
କୃଷ୍ଣ ପାଇଁ । କଲେ ବିଜଏ ତହିଁକି ଭବଗ୍ରାହୀ ସେ । ୧୩ ।
କଳାକରେ ଚନ୍ଦ୍ରମଣି ପ୍ରାଏ । କଲେବର ଦ୍ରବ ବୋହୁଯାଏ ।
କମଳ ଦର୍ଶନେ କମଳ ପସରଏ କଞ୍ଜ ଥାନନ ଆନନ୍ଦ ହୋଏ ସେ ।
କ ତପସ୍ୟା । କରି କୃଷ୍ଣଚରଣ କାମିନୀ ଧୋଏ ସେ । ୧୪ ।

କାତ୍ୟାୟିନୀ କାନ୍ତ ସଙ୍ଗିବାର । କି ସ୍ନେହେ ଉତ୍ତମାଙ୍ଗରେ ଧରି ।
କରେ ସଙ୍ଗିବାର ମୋକ୍ଷ ନିନ୍ଦ ପୁଣି କୃଷ୍ଣକୃପାରୁ ପାଇଲା ନାରୀ ସେ ।
କରି ପାନ । କେଡ଼େ ଆନନ୍ଦ ହୋଇଲା ସଖୀମନ ସେ । ୧୫ ।

କୁବୁଜାପୁରେ ରହିଲେ ହରି । କହୁ ଉଦ୍ଧବ ମେଲାଣି କରି ।
କଳାକରକରେ କ୍ଷଣଦାପରାଏ କେଡ଼େ ଉଜ୍ଜ୍ୱଳ ଦଶନ୍ଧି ପୁଣି ସେ ।
କମ୍ବୁଧାରୀ । କରିଛନ୍ତି ବିଜଏ ସନ୍ଧିରେ ହରି ସେ । ୧୬ ।

କୃଷ୍ଣଙ୍କୁ କୋଳ କରିଣ ନେଇ । କି ସ୍ନେହରେ ପଲଙ୍କେ ବସାଇ ।
କରି ପରିରମ୍ଭ ମୁଖେ ଦେଇ ଚୁମ୍ବ କେଳିର ବିଧାନ ଆରମ୍ଭଇ ସେ ।
କଣ୍ଠମୁଣ୍ଡି । କୃଷ୍ଣ ମନ କଞ୍ଜନରସରେ ମୋହି ସେ । ୧୭ ।

କୁବୁଜାପୁରେ ଆନନ୍ଦେ ହରି । କେତେଦିନ ରହି ବଂଶୀଧାରୀ ।
କାମନାକୁ ପୂର୍ଣ୍ଣ କରି ତା ମୋହନ କଲେ ବିଜଏ କୁଞ୍ଜବିହାରୀ ସେ ।
କରି ଧ୍ୟାନ । କୃଷ୍ଣ ମନେ ପଡ଼ିଲା ରାଧାଙ୍କ ଗୁଣ ସେ । ୧୮ ।

କୁଞ୍ଜବନ କେଳିନିକେତନ । କାଳିନ୍ଦୀକୂଳ ତମାଳବନ ।
କେତେବେଳେ ହୃଦେଁ କୋହିଲା ଅନ୍ତରେ କୁମୁଦକନ୍ଦିନୀ ଭାବମାନ ସେ ।
କଲେ ଚିନ୍ତା । କଳି କିଶୋରକାଳିଲ ବିଚ୍ଛେଦ ଧାତା ସେ । ୧୯ ।

କୁଜ ଉଜନକରି କୁଜାବର । କରିଛନ୍ତି ପାଷାଣକୁ ନର ।
କାଠମଞ୍ଜୁଷ ଯା ଅଙ୍ଗରେ ପାଲଟିଲା କି ଗୁରୁ ଅଟେ ପାତକ ଗୁରୁ ହେ ।
କୋବିଦେ ହେ । କର ଲକ୍ଷ୍ୟ ପାପୀପାବନ ପାଦରୁ ହେ । ୨୦ ।

କର ଯୋଡ଼ି କହେ କୃଷ୍ଣକର । କୋବିଦଙ୍କ ମୋର ନମସ୍କାର ।
କଥରେ ବାସୁମ ଏ କୁଞ୍ଜବିହାର କଲୁଷକୁ ଅଟେ ବୈଶ୍ୱାନର ହେ ।
କୋବିଦେ ହେ । କର୍ଣ୍ଣେ ଶୁଣିଣ ଅଘ ବିନାଶ କର ହେ । ୨୧ ।



# ଏକତ୍ରିଂଶ ଛାନ୍ଦ



ରାଗ—କଳାକାନ୍ତ ବାଣୀ

କମଳନୟନ କୃଷ୍ଣ ମଥୁରାରେ ଥାଇ ।
କରନ୍ତି ଶଙ୍କା ରାଧିକା ଗୁଣମାନ ଗାଇ । କଞ୍ଜନୟନୀ ରେ । ୧ ।
କହ୍ନି ତେଜୁଥିବ ମୋର ଚନ୍ଦ୍ରାନନଗୋରୀ ।
କଞ୍ଜନ କଳପଡ଼ାଭ ତନୁ ହେବ ସାରି । କଞ୍ଜନୟନୀ ରେ । ୨ ।
କି କଲା ବିଧାତା ମୋତେ ତାହାକୁ କି କଲା ।
କପାଇଁ ବେତଣ୍ଡ ନଟିଲରେ ଗାର ଦେଲା । କଞ୍ଜନୟନୀ ରେ । ୩ ।
କମଳବାନ୍ଧବସୁତ ପରେ ପାଣି ଦେଇ ।
କରୁଥିବ ଶଙ୍କା ଗନ୍ଧବଣିକ ଅନାଇ । କଞ୍ଜନୟନୀ ରେ । ୪ ।
କବରୀ ଫିଟିଣ ଚର୍ମଦେଶେ ପଡ଼ୁଥିବ ।
କଜ୍ଜଳବର୍ଣ୍ଣନେ ନେଇ ଅଶୋକ ଧରିବ । କଞ୍ଜନୟନୀ ରେ । ୫ ।
କରୁଣ ଅନ୍ତର କରି ଶିର ମୋଡ଼ିହାର ।
କରୁଥିବ ମୋ ନାମକୁ ହୃଦେ ଜପାମାଳ । କଞ୍ଜନୟନୀ ରେ । ୬ ।
କରୁଥିବ କି ବିଚାର ବସି ସୁନ୍ଦରମୁହାଁ ।
କୋମଳାଙ୍ଗୀ କୃଶଦଶା ବିରହରେ ବୋହି । କଞ୍ଜନୟନୀରେ । ୭ ।
କାମବାଣସରେ ବାତଯାନ ସ୍ଥାଏ ହୋଇ ।
କୁରଙ୍ଗୀ ପରାଏ ଝୁରୁଥିବ ପ୍ରାଣସହୀ । କଞ୍ଜନୟନୀ ରେ । ୮ ।
କଳାକରକୁ ନିନ୍ଦଇ ଯେବଣ ଆନନ ।
କରୁଣ ବିରସ ବସିଥିବ ପ୍ରାଣଧନ । କଞ୍ଜନୟନୀ ରେ । ୯ ।

କିଞ୍ଚିତ ଅନ୍ତର ହେଲେ ବ୍ରଜଧାଇ ଯାନ୍ତା ।
କେ ହୋଇବ ଏତେ କାଳ ହେଲା ତାକୁ ଯାନ୍ତା । କଞ୍ଜନୟନୀ ରେ ॥
କମ୍ପୁଥିବ କଞ୍ଜନମାର୍ଗଣେ କଳେବର ।
କେତେବେଳେ ନଖାଙ୍କିତ ହୋଇବ ଶରୀର । କଞ୍ଜନୟନୀ ରେ ॥
କରନ୍ତା ନାହିଁ ବେବଣ୍ଡ ଯେବେ ଭିନ୍ନ ଭିନ୍ନ ।
ତାହାଙ୍କ ପ୍ରାଣବଲ୍ଲଭ ହୁଅନ୍ତା ମୋ ଭିନ୍ନ । କଞ୍ଜନୟନୀ ରେ । ୧୨ ।
କୁସୁମମାଳକୁ କେଶ ପରେ ନ ଦେଇଣ ।
କରବନ୍ଧ ଚେନ୍ଦ୍ୟା ରମା କର୍ପୂର ଚନ୍ଦନ । କଞ୍ଜନୟନୀ ରେ । ୧୩ ।
କମଳଅରତି-ଧ୍ୱଜ-କାନ୍ତ-ଶିରି-ଧାରୀ ।
କରଇ ଯେମନ୍ତ ମନ ପଙ୍କିଳରେ ହରି । କଞ୍ଜନୟନୀ ରେ । ୧୪ ।
କଳଧଉତ ବରଣୀ ସଦନ ଯେପରି ।
କରଣ ବାହାରୁଥିବ କାନ୍ତିସ୍ୱରଗୋରୀ । କଞ୍ଜନୟନୀ ରେ । ୧୫ ।
କହନ୍ତୁ କହ୍ନାଇ ମୋର ଜୀବର ଜୀବନ ।
କନ୍ଦର୍ପକେଳିଲାଳସୀ ହୃଦୟ ଚନ୍ଦନ । କଞ୍ଜନୟନୀ ରେ । ୧୬ ।
କାମକଳ୍ପଲତାକୁ ରଙ୍ଗାକ୍ଷୀ ଭୃଙ୍ଗକେଶୀ ।
କଣ୍ଠୀରବଅରିଗମନୀ ପିକଭାଷୀ । କଞ୍ଜନୟନୀ ରେ । ୧୭ ।
କି ଅଭାଗ୍ୟରୁ ଅଇଲ ତାହାକୁ ଉପେକ୍ଷି ।
କି କରୁଥିବ ମୋହୋ ଶରଦଚନ୍ଦ୍ରମୁଖୀ । କଞ୍ଜନୟନୀ ରେ ।୧୮।
କେ ଯାଇ କହନ୍ତା ତାକୁ ମୋହର ବାରତା ।
କରନ୍ତା ଧରମଣ୍ଡନା ଦୂର ମନୁ ଚିନ୍ତା । କଞ୍ଜନୟନୀ ରେ । ୧୯ ।
କଳାକର ଦର୍ଶନରେ ଚକୋର ଯେସନ ।
କମଳଦର୍ଶନେ ମୀନ କହିଁ ବଞ୍ଚେ ଧନ । କଞ୍ଜନୟନୀ ରେ । ୨୦ ।
କୃତ୍ତିବାସ ଅସ୍ତ୍ର ହୃଦୟ ଦହୁଥିବ ।
କେମନ୍ତେ କିଶୋରଅଙ୍ଗୀ ଏ ଦଶା ସହିବ । କଞ୍ଜନୟନୀ ରେ । ୨୧ ।

କାମିନୀକୁଳମଣ୍ଡନ ମୋ ଜୀବ ଜୀବନ ।
କେମନ୍ତେ ପାସୋରି ଯିବ ମୋ ହୃଦୁ ତା ଗୁଣ । କଞ୍ଜନୟନୀ ରେ ।
କୋମଳଦଧିଜଅଙ୍ଗୀ ବାଣୀ ସୁଧାଭୂନ ।
କାମତାପ ନାଶିବାକୁ ସେ ଧଁରଚନ୍ଦନ । କଞ୍ଜନୟନୀ ରେ । ୧୩ ।
କମଳରେ ଷଟ୍‌ପଦ ପରାଏ ମୋର ମନ ।
କନକଗାନ୍ଧୀରୂପକୁ କରୁଥାଇ ଧାନ । କଞ୍ଜନୟନୀ ରେ । ୧୪ ।
କେ ଅବା ଜାଣିବ ତାର ବଚନଗୂଢ଼ତ୍ୱ ।
କଟାକ୍ଷରେ ସୁହୁଁ ଥାଇ କେତେ ଭଙ୍ଗୀ କରି । କଞ୍ଜନୟନୀ ରେ । ୧୫ ।
କୃତାର୍ଥ ହୁଅଇ ସ୍ୱହିଁ ମୋହୋର ବଦନ ।
କୋଳେ ଯେବେ ପରିରମ୍ଭ ଦଏ ପ୍ରାଣଧନ । କଞ୍ଜନୟନୀ ରେ । ୧୬ ।
କ୍ରୀଡ଼ାକାଳେ ବ୍ରୀଡ଼ା ନ ରଖଇ ପ୍ରାଣଧନ ।
କରୁଥାଇ ପରିରମ୍ଭ ଯୁବତୀରତନ । କଞ୍ଜନୟନୀ ରେ । ୧୭ ।
କହୁଁ କହୁଁ ପଡ଼ୁନେଇଁ ଅଶ୍ରୁ ବାହାରିଲା ।
କୁଞ୍ଜବନଲୀଳା ଭାବ ହୃଦୟ ଦ୍ରବିଲ । କଞ୍ଜନୟନ ଯେ । ୧୮ ।
କହେ କୃଷ୍ଣକର ଧାଇ ଶ୍ରୀ ପଦ୍ମପଦ୍ମୁଭ ।
କୃଷ୍ଣପ୍ରେମାମୃତ ମଲୁ ନୋହୁ ମୋ ଅନ୍ତର । କଞ୍ଜନୟନ ହେ । ୧୯ ।



# ବତ୍ରିଶ ଛାନ୍ଦ



ରାଗ—ଲଳିତକାମୋଦୀ

କଳାକରମୁଖୀ ଗୋପୀଙ୍କ ଭାବନା ଚିନ୍ତଣ ଶଶୀବଦନ ।
କରନ୍ତି ଭାବନା ବ୍ରଜଲୀଳାମାନ କଞ୍ଜନୟନକୁ ବନ ଯେ
କରୁଅଛନ୍ତି ମୁଞ୍ଜନ । କଞ୍ଜନେତ୍ରୀମାନଙ୍କର ଗୁଣ ଯେ । ୧ ।

କହନ୍ତି ଶ୍ରୀକୃଷ୍ଣ କେତେ ସଖୋଣିବ ସୁବଲୋଚନାଙ୍କ ଗୁଣ ।
କେବୁ ପ୍ରାଏ ଝସକେତୁ ଘୋଟିଥିବ ମୋହେ ଚନ୍ଦ୍ରେଦକୁ ପୁଣ୍ଣ ଯେ ।
କରି ମନରେ ଅନ୍ତରା । କରୁଥିବେ ପିୟୁଷଖୀ ଶଶ୍ତା ଯେ । ୨ ।

କଳାକର କଳା କ୍ଷୀଣ ହେଲା ପ୍ରାଏ କ୍ଷୀଣ ହେବନ ଶରୀର ।
କବଣ ଭାବନା ଦୁଃଖୀ ହୋଇଥିବେ ଲାବଣ୍ୟନଧି ମୋହର ଯେ ।
କୃତ୍ତିବାସରିପୁ ରିପୁ । କରି ଦଗ୍ଧିବନ ତାଙ୍କ ବପୁ ଯେ । ୩ ।

କଳକଣ୍ଠବାଣୀ କର୍ଣ୍ଣରେ ଶୁଣିଣ ଚଉ ଚମକି ଉଠିବ ।
କୁସୁମ ସୁବାସ ନ ଘେନନ୍ତେ କେଶ ବେଶ ମଳିନ ଦଶିବ ଯେ ।
କାନ୍ତାମଣି ବୃନ୍ଦାବତୀ । କିଞ୍ଚି ଧରିଥିବେ ତାଙ୍କ ଧୃତି ଯେ । ୪ ।

କଞ୍ଜନୟନୀ ଲଳିତା ରଙ୍ଗଦେବୀ ଲୀଳାବତୀ ଶଶୀରେଖା ।
କୃଷ୍ଣପ୍ରିୟା ଚନ୍ଦ୍ରା ଧନିଷ୍ଠା ଶ୍ୟାମଳା ଗୃରୁକୁନ୍ତଳା ବିଶାଖା ଯେ ।
କରି ମୋ ନାମକୁ ଧ୍ୟାନ । କରୁଥିବେ ମୋ ଗୁଣ ଗାୟନ ଯେ । ୫ ।

କାଞ୍ଚନଲତା ଚିତ୍ରା ପ୍ରେମମଞ୍ଜରୀ ସୁମେଧା ସେ ପ୍ରେମାବତୀ ।
କି କହିବି ହୃଦ ଦଗ୍ଧ ହୋଇଅଛି ତାଙ୍କ ଗୁଣମାନ ଚିନ୍ତି ଯେ ।
କଞ୍ଜନୟନ ଶ୍ରୀପତି । କେତେବେଳେ ସନ୍ତାପ କରନ୍ତି ଯେ । ୬ ।

କିଶୋରୀ ଧନିଷ୍ଠା ଶ୍ରୀମତୀ ଶ୍ୟାମଳା ଚନ୍ଦ୍ରାଳସୀ ମଦକଳା ।
କାନ୍ତିସ୍ୱରଗୋରୀ ଶ୍ୟାମା ଶଶୀରେଖା ହରିପ୍ରିୟା ଚନ୍ଦ୍ରକଳା ଯେ ।
କାହିଁ ବଞ୍ଚୁଥିବେ ବନ । କଞ୍ଜସମ୍ଭବ କି କଲା ପୁଣ ଯେ । ୭ ।
କାନ୍ତାବିଚ୍ଛେଦ କାନ୍ତା ଦେହ ସହିବ ଯାହା ହେଉଅଛି ମନ ।
କଞ୍ଜନେତ୍ରୀ କିଶୋରୀ ଯୁବତୀ କହଣ ମନ ଦହଇ ମଦନ ଯେ ।
ଜାଣିଥିଲେ ଯିବେ ମୋତେ । କାହିଁ ମୁରୁଛିବ ମୁହିଁ ଶୁଣି ଯେ ।
କରିଥାନ୍ତି ନୀଳ ଅମ୍ବୁଜେ ଶିରଧା ମୋ ନାମକୁ ଧ୍ୟାନ କରି । ୮ ।
କଳା ଘନାଘନ ଦେଖି ଆନନ୍ଦିତ ହେଉଥାନ୍ତି ବ୍ରଜନାରୀ ଯେ ।
କରି ମୋ ନାମକୁ ଧ୍ୟାନ । କଉତୁକେ ବଞ୍ଚୁଥାନ୍ତି ବନ ଯେ । ୯ ।
କରିଥାନ୍ତି ପ୍ରାଣ ଢକା ମୋ ନାମରେ ସକଳ ବ୍ରଜନାଗରୀ ।
କନ୍ୟା ସନ୍ଧ୍ୟାକାଳେ କୁଞ୍ଜ ଅଗ୍ରନରେ ଥାନ୍ତି ମୋତେ ଅନୁସରି ଯେ ।
କାହିଁ ବଞ୍ଚୁଥିବେ ବନ । କୃପାନିଧାନୀ ସେ ମୋ ଜୀବନ ଯେ । ୧୦ ।
କରିଥାନ୍ତି ପ୍ରାଣ ଢକା ମୋ ନାମରେ ସକଳ ବ୍ରଜନାଗରୀ ।
ଜାଣିଥିଲେ ସ୍ନେହଧନ ଦେଇ ମୋତେ ବନ୍ଦୀ କଲି ଏତେ ସବୁ ଯେ ।
କୃଶୋଦରୀ କୋମଳାଙ୍ଗୀ । କାହିଁ ମୁରୁଛିବ ତାଙ୍କ ଭଙ୍ଗୀ ଯେ । ୧୧ ।
କୃଷ୍ଣପ୍ରେମ ଲୋଭ ଯୋଗୁ ଲାଗି ରାତ୍ର ହେଉଥିବ ଛନଛନ ।
କାମଭୂତଗ୍ରସ୍ତ ହୋଇବନ ରାତ୍ର କଥାପ୍ରସଙ୍ଗ ଯେସନ ଯେ ।
କହୁଥିବେ ବଚନକୁ । କେହି ନ ଯାଇ କୁଞ୍ଜବନକୁ ଯେ । ୧୨ ।
କୋଟିନାଗର ଯାତ ହୋଏ ନାଗରନାଗରୀ ବିଚ୍ଛେଦମାନ ।
କେ ତାହା ସହିବ କିଶୋର ବୟସେ କହନ୍ତି ବ୍ରଜମୋହନ ଯେ ।
କୁମୁଦିନୀ ବଧୂ ବନା । କୃଷ୍ଣବିରହେ ବ୍ରଜଅଙ୍ଗନା ଯେ । ୧୩ ।

---

୯ । ୧—ନାମକୁ—ରୂପକୁ ।
୧୦ । ୧— ନାମରେ—ଭାବରେ ।
୧୧ । ୧—ନାମରେ—ଭାବରେ ।

କମଳ ଭୃଙ୍ଗ ସଙ୍ଗରଙ୍ଗ ଦେଖିଣ ମନ ହେବ ଛନଛନ ।
କଞ୍ଜନୟନରେ ଦହ୍ନ ହେଉଥିବ କଳାବନ୍ତୀଙ୍କ ଜୀବନ ଯେ ।
କଞ୍ଜ ଭୂଷାରେ ଯେମନ୍ତ । କଞ୍ଜନେତ୍ରୀ ବିରହ ତେମନ୍ତ ଯେ ।୧୪ ।

କରୁଥିବେ ଧୂନ ପ୍ରଦୋଷେ ସଜନୀ ବିଷଭଞ୍ଜ ନାମମାନ ।
କେବେ ଦେବାଦେବୀଠାରେ କେତେ ବଳୀ ଯାଚୁଥିବେ
ନାରୀଗଣ ଯେ
କମଳପଲ୍ଲବେ ଶୋଇ । କଲେବରେ ଉଶୀର ଲଗାଇ ଯେ । ୧୫ ।

କଳାକରକୁ ରୁଷଗଣ ବେଢ଼ିଲ ପ୍ରାଏ ବେଢ଼ି ସଖୀଗଣ ।
କରି ଅପଲକ ଗୃହୁଁ ଥିବେ ବାଳୀ କେତେ ଅତଙ୍କ ହୋଇଣ ଯେ ।
କଇରବନନ୍ଦନାକୁ । କେହୁ ଡାକୁଥିବେ ପ୍ରକାର୍ଣ୍ଣକୁ ଯେ । ୧୬ ।

କେହୁ ମାନସରେ ଯାରଙ୍କ ମେଗଇ ବୋଳୁଥିବେ ଶ୍ରୀଅଙ୍ଗରେ ।
କେହୁ ଆଳୀ ବ୍ୟଜନକୁ କରେ ଧରି ବଞ୍ଚୁଥିବେ ଧୀରେ ଧୀରେ ଯେ ।
କେହ୍ନୁ ହିଞ୍ଚୁଥିବେ ବନ । କେ ଡାକିବେ ଶଖ ଭୂଷାପନ ଯେ । ୧୭ ।

କୁମରୀ ଅଗରେ ଶ୍ରୁତିପାଠ କଲା ପ୍ରାଏ ସଖୀ ଉପଘ୍ନ ।
କଳାକରମୁଖୀ ଯୁଖ ନ ଲଭିଣ ବିରହେ ଚଳୁ ଅସ୍ଥିର ଯେ ।
କରୁଥିବେ ମୋତେ ଧ୍ୟାନ । କରି ଶକ୍ରା ମୋହୋ ଗୁଣମାନ ଯେ ।

କରିଥାଇ ଆଶା ପିପାସା ରୀତିକ ବନଦଠାରେ ଯେମନ୍ତ ।
କାମକଳାବତୀ ଖଞ୍ଜନୟନୀ ମୋ ଗୁଣ ଗୁଣି ତେମନ୍ତ ଯେ ।
କି ଚିନ୍ତୁଥିବେ ଚିତ୍ତେ । କର୍ମା କଲା ରତ୍ନଗର୍ଭ ଏତେ ଯେ । ୧୯ ।

କଳାକରଭାନୁ ଚଣ୍ଡଭାନୁ ପରି ଲାଗୁଥିବ ଅମ୍ପଦେ ।
କଳକଣ୍ଠବାଣୀ କଳକଣ୍ଠବାଣୀ ପ୍ରାଏ ଲଗିବ ଶ୍ରବଣେ ଯେ ।
କଳକଣ୍ଠଗମନାକୁ । କୃଷ୍ଣଚରଣେ ଦେଇ ମନକୁ ଯେ । ୨୦ ।

ଜାମକଳାବନ୍ତ ପୁରୁଷ ହୋଇଣ କଳାବନ୍ତୀକ ଅନ୍ତର ।
ତଲେ କ ବୋଲିବେ ରସପୁରନ୍ଦରମାନେ ବୋଲନ୍ତି ନାଗର ଯେ ।
ତହିବାକୁ ଜଣା ଏହି । କହି ଚିନ୍ତା କଲେ ସବଗ୍ରାହୀ ଯେ । ୧୧ ।
ତମଳନୟନ ସାତ୍ୟକ ପେଷିଣ ଉଦ୍ଧବଙ୍କୁ ଅଣାଇଲେ । ,,
କୋମଳ ବଚନ କହି କୃପାନିଧି ଗୋପକୁ ଯାଅ ବୋଇଲେ ଯେ ।
କୁଶଳକୁ କହି ମୋର । କର ବୋଧ ଜନନୀ ପିଅର ଯେ । ୧୨ ।
ତହିବ ସୁଧା ପ୍ରେମା ଗୋପେନ୍ଦ୍ର ଗୋପରେ ଅଛନ୍ତି ଯେତେ ।
କଞ୍ଜନୟନୀ ମୋ ବିଗ୍ରହ ଅଟନ୍ତି ମୁଁ ତାଙ୍କ ପ୍ରାଣ ନିରତେ ଗୋ ।
କେବେ ନ ମଣିବ ଯାନ । କର ବୋଧ ଯାଇ ଗୋପୀଗଣ ଗୋ । ୧୩ ।
କୃଷ୍ଣବାଣୀ ଶୁଣି କୁରୁର କୁମର ଶତାଙ୍ଗେ ବିଜେ ସତ୍ୱର ।
କରିବ ଗୋପୀଙ୍କି ଦର୍ଶନ ବୋଲିଣ ଆନନ୍ଦ ହେଲା ମନର ଯେ ।
ଛାଡିକେଲୁ ରଥ ବାହି । କୃଷ୍ଣପ୍ରେମେ ନେତ୍ରୁଁ ଧାର ବୋହି ଯେ । ୧୪ ।
କରନ୍ତି ଯେଉଁ ଗୋପୀଙ୍କ ପାଦ ଚିନ୍ତା ହୃଦପଦ୍ମେ ବ୍ରହ୍ମଜ୍ଞାନୀ ।
କଣ୍ଠସମ୍ଭବ ବିରୂପାକ୍ଷ ଗନ୍ଧର୍ବ ଅଛନ୍ତି ଯେତେକ ମୁନି ଯେ ।
କେ ନ ପାଇ ପାଦରଜ । କୃଷ୍ଣକୃପାରୁ ମିଳିବ ଆଜ ଯେ । ୧୫ ।
କହି ହେଲା ଘନବୃଷ୍ଟି ପ୍ରାଏ ଛନ୍ଦୁ ନେତ୍ରୁ ଖସେ ଘନଫୁଲ ।
କୃଷ୍ଣକୀର୍ତ୍ତନରେ କଣ୍ଠ ଗଦଗଦ କୃଷ୍ଣଭାବେ ହୋଇ ଭୋଳ ଯେ ।
କେତେ ମଙ୍ଗଳ ଆଗରେ । କେହୁ କହିବ ଭାବ ମନରେ ଯେ । ୧୬ ।
କୁରୁର କୁମର ଗୋପେ ପ୍ରବେଶ ହେଲେ କୃଷ୍ଣ ଆଜ୍ଞା ଘେନି ।
କଲେ ବନ୍ଦ୍ରବର ନନ୍ଦ ରାଜାଙ୍କର ବନପଥଦ୍ୱାରେ ପୁଣି ଯେ ।
କୋଟିନିଧି ଧରାପତ । କଲେ ଯଶୋଦା ନନ୍ଦ ଚେତନ୍ତ ଯେ । ୧୭ ।
କୃଷ୍ଣଦୂତ ଆସନରେ ବିଜେ କରି କୃଷ୍ଣବାରତା କହିଲେ ।
କରାଇ ନନ୍ଦ ଯଶୋଦାଙ୍କୁ ଆନନ୍ଦ ଅମୃତ ମଣୋହି କଲେ ଯେ ।
କଣାପଲିଙ୍କେ ଶୟନ । କଲେ ଉଠି ପ୍ରାତୁ ନିତ୍ୟକର୍ମ ଯେ । ୧୮ ।

ଏତେଶୋଗ୍ରୀ ଗୋପୀଙ୍କ ପାଶେ ପରବେଶ ହୋଇ କଲେ ଦରଶନ ।
କେ କହିବ ଗୋପୀ ଆନନ୍ଦକୁ ଯେତ ଯାହା ହେଲେ ନାରୀଗଣ ଯେ ।
କଲେ ସନ୍ତାପ ଅନ୍ତର । କଞ୍ଜ ଦେଖି ଯେସନ୍ତେ ଡନକର ଯେ । ୨୯ ।
ଏହେ କୃଷ୍ଣକର ଉଦ୍ଧବ ଗୋପୀଙ୍କ ସ୍ତବ ହୃଦପଦ୍ମେ ଗୁଣି ।
କଣ୍ଠ ଗଦଗଦ ହୋଇଣ ଆନନ୍ଦ ବଢ଼ିଲକ ସୁଖଶ୍ରେଣୀ ଯେ ।
କୃଷ୍ଣଦୂତ ଗୋପୀଙ୍କବାର୍ତ୍ତା କଥା ଶୁଣି କୃତାର୍ଥ ଶରୀର ଯେ । ୩୦ ।



# ତେତ୍ରିଶ ଛାନ୍ଦ



ରାଗ—କାମୋଦୀ

କୃଷ୍ଣଦୂତଙ୍କୁ ବେଢ଼ି ସବୁ ଗୋପିକା । କୁଶଳ ପଚାରନ୍ତି ବ୍ରଜକାମିନୀ ଯେ । କୃଷ୍ଣ ଜାମପାଳଙ୍କ ବାରତା କହ । କୃଷ୍ଣସନ୍ତାପ ଦେହୁଁ ଦଅ ଛଡ଼ାଇ ଯେ । ୧ ।

କହ କ୍ରୂର ଅକ୍ରୂର କୁଶଳ କଥା । କରାଇଲା ଆମ୍ଭଙ୍କୁ ଏତେ ବ୍ୟବସ୍ଥା ଯେ । କହନ୍ତି ମଦାଳସୀ ଶୁଣ ଉଦ୍ଧବ । କଂସ ମରଣ ଦେଲା ଏ ପରାଭବ ଯେ । ୨ ।

କହନ୍ତି ବୃନ୍ଦା ଆହେ ଗୋବର୍ଦ୍ଧନଧର । କହ କୁଶଳକଥା କୁବୁଜାଙ୍କର ଯେ । କୃଷ୍ଣ ପାଇଲେ ତହିଁ କେମନ୍ତ ଭାବ । କର୍ଣ୍ଣରେ ଶୁଣିବାକୁ ଅଛଇ ଲାଭ ଯେ । ୩ ।

କୃଷ୍ଣପ୍ରିୟା ବୋଲନ୍ତି ତାହା ନ କହ । କହିଲେ ନ ସହଇ ଆମ୍ଭ ବିରହ ଯେ । କହ ଖଞ୍ଜନନୟନୀ କମଳମୁଖୀ । କହଇ ଉଦ୍ଧବଙ୍କୁ ହୋଇଣ ଦୁଃଖୀ ଯେ । ୪ ।

କି କଲା ବିହି ଧନ ଦେଖାଇ ନେଲା । କମଳତୃଷ୍ଣା ପ୍ରାଏ ଆଶା ମାଇଲା ଯେ । କୃଷ୍ଣପ୍ରିୟା ବୋଲନ୍ତି ଶୁଣ ଉଦ୍ଧବ । କଳା ଲୋକଙ୍କ ପ୍ରୀତି ଅଟଇ ଅଥିର ଯେ । ୫ ।

କମଳରେ ମିଳନ୍ତି ପ୍ରାଏ ମିଳଣ । କଲେ ଅନ୍ତର ହୋଇ ଅନ୍ୟେ ମୋହନ ଯେ । କେତେ କେତେ ଯୁବତୀମାନଙ୍କୁ ଚାହିଁ । କରିଥିଲେ ଯଶକୁ ଉଦୟେ ହରି ଯେ । ୬ ।

ଜଳେ ନିମ୍ନ ହୁଅ ହରକ ଗୃହିଁ । କଂସନିଧନ ଅନ୍ତେ ଆସିବ ମୁହିଁ ଗୋ । କରିଥିବ ନିମ୍ନ ଅମୃତେ ସଖି । କହିଣ ଗଲେ କୃଷ୍ଣ ଆଶା ଲଗାଇ ଗୋ । ୭ ।

କରେ ଲଗାଇ ବିଷବୃକ୍ଷକୁ ନାଶ । କରନ୍ତି ନାହିଁ ଅନ୍ୟେ ଗୋବିନ୍ଦଦାସ ହେ । କାକୋଦର ପୋଷିଣ ନ କରି ବଧ । କଲେ ହେଜ ପରିଏ କଲଙ୍କ ଶଧ ଯେ । ୮ ।

କୁଳକୁ ଛଡ଼ାଇଣ ଅଣିଲେ ଧରି । କରି ଅନ୍ତର ଗଲେ ମଧୁନଗରୀ ଯେ । କମଳକରେ କୁଜ ପଦ୍ମିନୀ କଲେ । କମଳମୁଖୀ ଭାବ ପାସୋରି ଦେଲେ ଯେ । ୯ ।

କହନ୍ତି ପ୍ରେମା ଉଦ୍ଧବଙ୍କୁ ସଧୀରେ । କରିଥିଲୁ ଖଣ୍ଡ ତପସ୍ୟା ପୂର୍ବରେ ଯେ । କୃଷ୍ଣ-ଅଳି ପ୍ରାଏ ପୀରତି କଲେ । କୁବୁଜା ସଙ୍ଗତରେ ସାଇ ରହିଲେ ଯେ । ୧୦ ।

କେହୁ ବାଣ୍ଟିବ ବଡ଼ ଲୋକଙ୍କ ଗୁଣ । କଳେ ଜାଣୁ ଜାଣୁ ଦୂଷଣ ଭୂଷଣ ଯେ । କୃତ୍ତିବାସ କରନ୍ତି ବୃଷ ଆସନ । କୁଣ୍ଡଳୀରେ ଶୟନ ଶ୍ରୀ ଭଗବାନ ଯେ । ୧୧ ।

କୁବୁଜାପ୍ରାଣନାଥ ଆନ ଆମ୍ଭଙ୍କୁ । କରି ଉଦ୍ଧାର କହୁଅଛୁ ତୁମ୍ଭଙ୍କୁ ଯେ । କଳେବରକୁ ଶର ମାରି କଞ୍ଚନ । କରେ ସଗରସୁତ ପ୍ରାଏ ଦହନ ଯେ । ୧୨ ।

କରି ଭଗୀରଥୀଙ୍କ ପ୍ରାଏ ଗମନ । କୃଷ୍ଣଗଙ୍ଗା ବୁହାଅ ଲକ୍ଷ୍ୟ ଦହନ ଯେ । କର୍ଣ୍ଣେ ଗୋପୀଙ୍କ ବାଣୀ ଶୁଣି ଉଦ୍ଧବ । ବୋଲନ୍ତି ଧନ୍ୟ ଧନ୍ୟ ଏହାଙ୍କ ଭାବ ଯେ । ୧୩ ।

ଜାଣିଛନ୍ତି ଭାବରେ ଗୋପଅଙ୍ଗନା । କପାଁ ନ ଅସି ମୋତେ ପେଷିଲେ ହରି ଯେ । କହୁଛନ୍ତି ଉଦ୍ଧବ ଶୁଣ ଗୁଆଳୀ । କରିବେ ନାହିଁ ଭିନ୍ନ ଶ୍ରୀ ବନମାଳୀ ଯେ । ୧୪ ।

କୃପାନିଧାନ କୃପା କରି ଆସିବେ । କାମନାକୁ ତୁମ୍ଭର ପୂର୍ଣ୍ଣ
କରିବେ ଯେ । କରନ୍ତି ସର୍ବ ଘଟେ ଯେହ୍ନେ ବିହାର । କୁବୁଜା ଗନ୍ଧ
ଦେଇ ହେଲା ସୁନ୍ଦର ଯେ । ୧୫ ।

କରିଛ ପଦ୍ମଗଣ୍ଡେ ଗଣ୍ଡେ ଚୁମ୍ବନ । କେ କହିବ ତୁମ୍ଭର
ତପସ୍ୟାମାନ ଯେ । କଳ୍ପ କଳ୍ପାନ୍ତେ ଯୋଗୀନ ପାନ୍ତି ଯାକୁ । କଉଁ
ଭାଗ୍ୟରୁ କୋଳେ ଧରିଲ ତାକୁ ଯେ । ୧୬ ।

କୃଷ୍ଣର ତୁମ୍ଭଠାରେ ଯେତେ ସୁଦୟା । କେ ଅବା ତପ କରି
ଲଭିବ ତାହା ଯେ । କଉଁ ଅମରଗଣେ ତୁମ୍ଭଙ୍କୁ ସରି । କେତେ
ତପସ୍ୟା କଲ ଗୋପ ଆସ୍ତ୍ରୀ ଯେ । ୧୭ ।

କହନ୍ତି କୃଷ୍ଣଦୂତ ସମସ୍ତେ ବସ । କହିବ ଯାହା କହିଛନ୍ତି
ସନ୍ଦେଶ ଯେ । କମଳନୟନୀ ରାଧା ଗୋପୀଙ୍କି ଘେନ । କୃଷ୍ଣଦୂତଙ୍କୁ
ବେଢ଼ି ବସିଲେ ପୁଣି ଯେ । ୧୮ ।

କୃଷ୍ଣପ୍ରିୟା ସାରଣୀ ଭଦ୍ରା କୁମୁଦା । କାଞ୍ଚନଲତା ତ୍ରିୟା
ସଙ୍ଗତେ ବୃନ୍ଦା ଯେ । କୁରଙ୍ଗୀନୟନୀ ପ୍ରେମା ରସମଞ୍ଜରୀ । କୃଷ୍ଣଦୂତ
ସମ୍ମୁଖେ ଏତେ ନାଗରୀ ଯେ । ୧୯ ।

କୋକିଳା ଲୀଳାବତୀ ମେଧା ଲଳିତା । କଲେ ଦକ୍ଷିଣ ଦିଗେ
ବସେ ବନିତା ଯେ । କୁନ୍ଦନଅଙ୍ଗୀ ହରପ୍ରିୟା ବିଶାଖା । କଲେ
ଉତ୍ତରେ ବସେ ଏତେ ନାୟିକା ଯେ । ୨୦ ।

କୁନ୍ତଳା ଶକୁନ୍ତଳା ଚନ୍ଦ୍ରକୁନ୍ତଳା । କଲେ ପଶ୍ଚିମେ ବସେ
ଏତେ ଅବଳା ଯେ । କହନ୍ତି କୃଷ୍ଣଦୂତ ଶୁଣ ଉଦନ୍ତ । କର୍ଣ୍ଣ ଦେଇ
ଶୁଣନ୍ତି ଗୋପୀ ସମସ୍ତ ଯେ । ୨୧ ।

କହନ୍ତି ବୃନ୍ଦା କହ ଗୋବର୍ଦ୍ଧନଗୁର । କେତେ ଦିନେ ଆସିବେ ମୁରଲୀଧର ଯେ । କହନ୍ତୁ ଆଶା ଯେବେ ସ୍ତବକ ପର । କଲେ ନବଘନ କଟାଁ କୃଷ୍ଣଚନ୍ଦ୍ରାଶ୍ରେ ଯେ । ୧୨ ।

କଳନ୍ଦକୁ ନ ଦେଖି କଳନ୍ଦବନ । କରଇ ଯଙ୍ଗ ଲୁପେ ଦରସ ମନ ଯେ । କୃଷ୍ଣ ଗଲେ ଦିନରୁ ମଲୁଛୁଁ ଝୁରି । କୁଣ୍ଡିବାସ-ଥଗତ ଦେଲାଣି ସାରି ଯେ । ୧୩ ।

କହଣ ସତ୍ୟ ନ ଆସିଲେ ନାଗର । କୁବୁଜା ଯେବେ ତାଙ୍କ ଦେଲା ମନ୍ତ୍ର ଯେ । କଳାକରବଦନ ସେ ଚିନ୍ତାମଣି । କଣ୍ଠରେ ଦେଇଗଲେ ଏ ଚିନ୍ତାମଣି ଯେ । ୧୪ ।

କୁସୁମଲଟ ବରଲକ୍ଷ ପୀରତ । କଲେ ଭୋଗ ଅନ୍ତରେ ନ ଛୁଡ଼େ ମତ ଯେ । କମଲନେତ୍ର ଶୋଭେ ଝୁରଇ ମନେ । କିବା ସଉଦାମିନୀ ଝାମ୍ପଇ ଘନେ ଯେ । ୧୫ ।

କୁଞ୍ଜ ଅସୁନେ ଦିନେ ମାଗିଲେ ଘଟ । କରି ସେ ଭାବ ଚିନ୍ତା ଯାଉଛୁ ଘଟ ଯେ । କର ଉପରେ ସାନୁଯାନ ବସାଇ । କମଲଧର-ଗଣ୍ଡ ଦେଲେ ଛଡ଼ାଇ ଯେ । ୧୬ ।

କୃଷ୍ଣଙ୍କୁ ଆଣି ଆମ୍ଭ ସନ୍ତାପ ନାଶ । କଲା କହାଇ ତୁମ୍ଭ ଅଟେ ଦାସ ଯେ । କର୍ଣ୍ଣରେ ଶୁଣି ଗୋପୀମାନଙ୍କ ଭାବ । କଲେକ ନେତ୍ର ଅନଥନ ଉଦ୍ଧବ ଯେ । ୧୭ ।

କହନ୍ତେ ଉଦ୍ଧବ ନିଶ୍ଚେ ଆସିବେ ହରି । କର ଚିନ୍ତାକୁ ଦୂର ଗୋପଆଶ୍ରିତ ଯେ । କରଣ ଜପାମାଳ ନାମ ତୁମ୍ଭର । କେବେହେଁ ମନୁ ତାଙ୍କ ନୋହେ ଅନ୍ତର ଯେ । ୧୮ ।

କହୁଅଛନ୍ତି କହ ଗୋପୀମାନଙ୍କୁ । କଣଦେବେ ନାହିଁ ଚିନ୍ତା ଯିବ ଗୋପକୁ ଯେ । କର୍ଣ୍ଣେ ଶୁଣି ଗୋପୀଏ ଆନନ୍ଦ ହେଲେ । କୃଷ୍ଣଙ୍କୁ ଆଣ ବୋଲି ମେଲଣି ଦେଲେ ଯେ । ୨୯ ।

କଣ୍ଠମଣ୍ଡଣୀ ମାଳା ଶ୍ରୀମତୀ ଦେଲେ । କଣ୍ଠେ ଯେନି ଉଦ୍ଧବ କୃତାର୍ଥ ହେଲେ ଯେ । କୃଷ୍ଣ ପାଶୁଣେ ମଥୁରାରେ ପ୍ରବେଶ । କମଳନୟନ ଦେଖି ହେଲେ ସନ୍ତୋଷ ଯେ । ୩୦ ।

କହଇ କୃଷ୍ଣଙ୍କର ରାଧାଚରଣ । କରଣ ଧ୍ୟାନ ମୋର ପ୍ରାଣଜୀବନ ଯେ । କଳାକରବଦନ ମାଗୁଛି ଏତେ । କୃତାର୍ଥ-ଗତିବର ଦଅନ୍ତ ମୋତେ ଯେ । ୩୧ ।



## ଚଉତ୍ରିଂଶ ଛାନ୍ଦ



### ରାଗ—ଗୈରି

କୃପାଳୁ ମଧୁସୂଦନ ଉଦ୍ଧବଙ୍କୁ ଆଲିଙ୍ଗନ
କରି ପଚାରନ୍ତି ଗୋପୀଙ୍କର କୁଶଳ ।
କହ ହେ ଭକତବର ଯାଇଥିଲ ବ୍ରଜପୁର,
କି କରୁଅଛନ୍ତି ବ୍ରଜାଙ୍ଗନା ସକଳ ।
କହିଁ ସଖୀ ବଞ୍ଚନ୍ତି କେଉଁ ଦନ । କହ କମଳଗମନାଙ୍କ ବାରତାମାନ । ୧ ।

କହ ନନ୍ଦ ଯଶୋଦାର କୁଶଳ ଯେତେ ସଖାର
କେଳିକଦମ୍ବର କୁଞ୍ଜ ଯମୁନାତୀର ।
କହ ଭଲ ସମସ୍ତର ଛନ୍ତି ଯେତେକ ବ୍ରଜର
କହ ଉଦ୍ଧବ ମାୟାକୁ କରିଣ ଦୂର ।
କ୍ରୀଡ଼ା-ନିକେତନ ମନ୍ଦର । କେମନ୍ତ ଯତନେ ଛନ୍ତି କହ ହେ ବୀର । ୨ ।

କମଳନୟନବାଣୀ କର୍ଣ୍ଣରେ ଉଦ୍ଧବ ଶୁଣି
କଣ୍ଠ ଗଦଗଦ ନେତ୍ର ଗଳେ କମଳ ।
କରି ଅଙ୍ଗ ଥରଥର କହେ ଯୋଡ଼ି ବେନି କର
କି କହିବି ନାଥ ଗୋପୀଙ୍କର କୁଶଳ ।
କରି ତୁମ୍ଭ ନାମକୁ ଧ୍ୟାନ । କଞ୍ଜନୟନକୁ ବହି ଯାଉଛି ଦିନ । ୩ ।

କର୍ଣ୍ଣେ ଶୁଣ ବନମାଳୀ ବନମାଳୀ ପ୍ରାଏ ବାଳୀ
କରି ତୁମ୍ଭ ନାମ ମାଳ ଜପନ୍ତି ବାଳୀ ।

ଜବନ୍ତ ପ୍ରଦୋଷେ ଧାନ    ଜର କୃପା ବୃନ୍ଦାବନ
କଞ୍ଜନ ନାଶନ ଜର ଶଶୀମଣ୍ଡଳ ।
ଜାଳୀକାନ୍ତ କରୁଣା କର । ଜୋଧଅଗ୍ନି କାମାନଳ ଲିଭୁ ହୃଦର । ୪ ।

କରୁଣାସାଗର ହରି    ଧନ୍ୟ ସେ ବ୍ରଜନାଗରୀ
କେ କହିବ ମୁଖରେ ତପସ୍ୟା ତାଙ୍କର ।
କରୁଣା କରି ମୋଠାରେ    ପେଶିଲ ବ୍ରଜନଗରେ
କଲି ଭାଗ୍ୟରେ ଦର୍ଶନ ତାଙ୍କ ପୟର ।
କୃପା କର ବଂଶୀବଦନ । କରି କୁଞ୍ଜେ ନିକେତନ ଯାଉ ମୋ'ଦିନ ।୫।

କହି ତାଙ୍କ ପରିକର    ଥିବ ଗୋପୀଙ୍କ ସଙ୍ଗର
କେ କହିବ ମଧୁପୁରେ ଥାଇ ଶ୍ରୀଧର ।
କରିଣ ତାଙ୍କ ବେଭାର    ରହିବ ତାଙ୍କ ସଙ୍ଗର
କହାଇବ ସେବ ତାଙ୍କୁ ସତ ବାସର ।
କରି ତାଙ୍କ ବେଶ ଭୂଷଣ । କରିଣ ପ୍ରେମଭକ୍ତିରେ ନେବ ମୋ ଦିନ ।୬।

କହିଣ ବେନି ନୟନ-    କଣରେ ରହିଲା ବନ
କମ୍ପି ପଳପୁଷ୍ଟ ହୁଏ ହେଲା ଶରୀର ।
କଣ୍ଠ ହେଲା ଗଦଗଦ    ଘୁମରି ଗୋପୀଙ୍କ ପଦ
କରି ଆଲିଙ୍ଗନ ପଶୁରନ୍ତି ଶ୍ରୀଧର ।
କି କହୁଥନ୍ତି ଗୋପୀଏ । କହ ମୋ ଆଗେ ସନ୍ତାପ ହୋଇବ କ୍ଷୟ ।୭।

କହୁଁ ଶୁଣ ଦୀନବନ୍ଧୁ    ଦୀନ ହୋଇ ବ୍ରଜବଧୂ
କରନ୍ତି ସନ୍ତାପ ତୁମ୍ଭ ନାମରେ ଧ୍ୟାନ ।
କହନ୍ତେ ଗୋପୀଙ୍କ କଥା    ଲାଗଇ ହୃଦୟେ ବ୍ୟଥା,
କେତେ ଅଶୋଷ୍ଣ ଦଶଇ ବୃନ୍ଦାକାନନ ।
ଜାନକୀକାନ୍ତ ବଜବାଳକ । କୃଷ୍ଣ କୃଷ୍ଣ ବୋଲି ନେନ୍ତୁ ଗଢଲ ଲୋଚକ ।୮।

କମଳଧର କମଳ ନ ମୁଣ୍ଡ୍ଲେ କ୍ଷିତିତଳ
କୋପେ ନ ଦଅନ୍ତି ଜଳ କୃଶ ସକଳ ।
କାହ୍ନାର ମନ ହରଷ ଲୁବ୍ଧଇ ହେ ପୀତବାସ
କୃଷ୍ଣ କୃଷ୍ଣ ବୋଲି ହେଉଛନ୍ତି ବିକଳ ।
କର ତୁମ୍ଭ ନାମକୁ ଧ୍ୟାନ । କଷ୍ଟେ ବରଜବନିତା ବଞ୍ଚନ୍ତି ଦିନ । ୯ ।

କୁସୁମଗନ୍ଧ ସୁବାସ ନାନା ଅଳଙ୍କାର ବେଶ
କରି ଦୂର ବସିଛନ୍ତି ହୋଇ ବିରସ ।
କୁନ୍ତଳ ନ କରି ବେଣ ନ ପିନ୍ଧନ୍ତି ଝୀନ ବାସ
କରନ୍ତି ନାହିଁ ଉତ୍ତମ ଭୋଜନ ଗ୍ରାସ ।
କର୍ଣ୍ଣେ ନ ଶୁଣନ୍ତି କହିଲେ । କଣ୍ଠ ଉଷିଲା କପିତ୍ଥ ପ୍ରାଏ ସକଳେ । ୧୦ ।

କାନ୍ଦ ପଡ଼ନ୍ତି ରସାରେ ସ୍ନେହ ନାହିଁ ସୁବେଣରେ
କାଳରନ୍ଧ୍ର ଅନ୍ତେ ଯେହ୍ନେ ଦଣେ କାନନ ।
କଲେ ଦୂର ବନମାଳୀ କମଳରୁ ବନମାଳୀ
କେମନ୍ତ ହୋଇ ବଞ୍ଚିବ ତାଙ୍କ ଜୀବନ ।
କଞ୍ଜନେତ୍ରୀ ହୋଇ ଚେତନ । କରୁଛନ୍ତି ବନମାଳୀ ପରାଏ ଧ୍ୟାନ ।୧୧।

କୁଧର ବର୍ହପୀଞ୍ଛାନ ହେଲେ ଦଶନ୍ତି ଯେସନ
କରଣ ବେଶ ଅନ୍ତର ବରଜବାଳୀ ।
କାନ୍ତହୀନ ବନମାଳୀ ପରାଏ ମନକୁ ଆଳୀ
କରି ବସିଛନ୍ତି ସଦନରେ ଗୁଆଳୀ ।
କପାଁ ବନମାଳୀ ନଞ୍ଛିଲେ । କରଣ ନିସ୍ତୁମ ବନମାଳୀଙ୍କି ଗଲେ । ୧୨ ।

କାଟସ୍ତ ଶଙ୍ଖାର ମାଳୀ ତାମ୍ବୁଲବଳ୍ଲୀ ତାମ୍ବୁଳୀ
ଗୋପକୁ ତେଜ୍ୟା କରଣ ଏମାନେ ଗଲେ ।

ଜନକଗଡ଼ା ବନ୍ଧାଣୀ     କେତେ ନ ରହିଲେ ପୁଣି
କରି ବାସ ଅନ୍ୟ ଅନ୍ୟ ଦେଶେ ରହିଲେ ।
ଜୟ ବଜେ ଗୋପପୁରକୁ । କର ଯୋଡ଼ି କହୁଛନ୍ତି ଗୋପୀ କୃଷ୍ଣଙ୍କୁ ॥

କହୁଛି ହେ ଯଦୁନନ୍ଦନ     ଗୋପେ ଦେଖିଲ ଯେତେ
କୁଞ୍ଜକାନନେ କୋମଳ ଚନ୍ଦନ ନାହିଁ ।
ତାହାରେ କମଳ ଦଳ-     ମାନ ନାହିଁ ନନ୍ଦବାଳ
କୁଞ୍ଚିତ ଏ ଗନ୍ଧବେଣୀ ମିଳଇ ନାହିଁ ।
ଜୟ ଶବ୍ଦ ଶୁଣନ୍ତି ଗୋପୀ । କଞ୍ଚନ ବରଣେ ତନୁ ହୁଅଇ ତାପୀ ।୧୪।

କଳକଣ୍ଠର ହୁଙ୍କାର     ଶୁଣି କାମ ଅହଙ୍କାର
କର୍ଣ୍ଣକୁହର ମୁଦନ୍ତି ଗୋପକାମିନୀ ।
କୃଷ୍ଣବଲ୍ଲୀ ନଥିଲି ମଲ୍ଲୀ     ମରୁଆ ଗଙ୍ଗଶିଉଳୀ
ବିକାଶିଣ ଝଡ଼ି ଲୋତକ ଝରନ୍ତି ଅବନୀ ।
କଞ୍ଜନେତ୍ରୀ ନୁହନ୍ତି ବେଶ । କ କହିବ ଆନନ୍ଦ ଗୋପ-ସନ୍ଦେଶ ।୧୫।

କହଇଁ ହେ ଯଦୁନନ୍ଦନ     କର୍ଣ୍ଣେ ଶୁଣି ଦେବ ହସ୍ତ
କଲ୍ଲୋଳ ଠେକଇ ଭାନୁସୁତା ତହିଁରେ ।
କୂଳକୁ ଠେକଇ ପାଣି     ଶୁଣ ହେ ମୁରଲୀପାଣି
କରନ୍ତି ରୋଦନ ଗୋପୀ ନୟନନୀରେ ।
ଜମଳ ସଙ୍ଗତେ ଜନତା । କରିବାରୁ ମେଳ ବଢ଼େ ଭାନୁର ସୁତା ।୧୬।

କୁଞ୍ଜବନ କଥାମାନ     କ ସମ୍ଭବ ଜନାର୍ଦ୍ଦନ
କମ୍ପୁଅଛି କଲେବର ମନେ ପଡ଼ିଲେ ।
କର୍ଣ୍ଣରେ ଶୁଣି ଗୋବିନ୍ଦ     ବୁଜି ନେତ୍ର-ଅରବିନ୍ଦ
କୁମୁଦନନ୍ଦନୀ-ଭାବ ଛାଡ଼ିଲେ ଭୋଳେ ।
ତହିଁ ବନ୍ଧୁ କରିବ ଭେଟ । କଲେ ମେଲାଣି ଉଦ୍ଧବ ନନ୍ଦର ଗୃହ ।୧୭।

କଞ୍ଜନେତ୍ର କଞ୍ଜପାଦେ ସୁଜନେ ଭଜ ଆନନ୍ଦେ
କଳିମଳ ନାଶ ନେତ୍ର ଗଙ୍ଗ ଜମଳ ।
କରି ପ୍ରେମଭକ୍ତିରସ ଗୋପିକା ଅଙ୍ଗରେ ମିଶ
କର ତେଜ୍ୟା ଆନ ଦେବାଦେବୀ ସକଳ ।
କର୍ଣ୍ଣେ ଏଡ଼ୁ ରସକୁ ପାନ । କର ବ୍ରଜଉପାସକ ଭକତ ଜନ । ୮ ।

କାୟା ଅଟଇ ଅଶର କୃଷ୍ଣ ପାଦେ ଆଶ୍ରେ କର
କାଦମ୍ବିନୀ ବିଦ୍ୟୁ (ତ୍) ପ୍ରାଏ ଏ ଧନଜନ ।
କେହ୍ନ କାହ୍ନା ସଙ୍ଗତରେ ନ ଯିବେ କାଳବଳରେ
କର ଦୃଢ଼ ଭଜ କୃପାବ୍ଧି ଚରଣ ।
କର ସଂସାରରେ ଦୟା । କାମ କ୍ରୋଧ ଲୋଭ ମୋହ ତେଜଣ ମାୟା । ୯ ।

କରବଂଶେ ଜନ୍ମ ମୋର ଅନାଙ୍କ ନାମ ଫକୀର
କକେଲ ମୋ ଚକ୍ରଧର ହେ ସୁଙ୍କର ।
କାଶୀକରଙ୍କ କୁମର ନାମ ମୋର କୃଷ୍ଣକର
କୈଳାସବାସିନୀ କାଳୀ ଇଷ୍ଟ ମୋହର ।
କଣ୍ଣେ ବନେ ଗଣେଶ ଆସି । କୃଷ୍ଣଭବାନୀ କହିଲେ କହ୍ନାରେ ବସି ।୧୦।

କଲି ତହ୍ନ ତପ୍ରଜନ୍ମ କୁସଙ୍ଗରେ ନେଲି ଦିନ
କହ୍ଣଡରେ ସାଧୁ ସଙ୍ଗେ ବସିଲି ନାହିଁ ।
କୋବଦଙ୍କ ମୁଖୁଁ ବାଣୀ ଶ୍ରୁତିପଥେ ଥିଲି ଶୁଣି
କୃଷ୍ଣ ଭଜଲେ ଶମନ ଦଣ୍ଡଇ ନାହିଁ ।
କରଛନ୍ତି ଆଜ୍ଞା ଶ୍ରୀହରି । କଞ୍ଜନାଥସୁତ ଅଛୁ ନିୟମ କରି । ୧୧ ।

---

୧୧ । ୩ ୁଲୁ—୨ଛ ।

କୁଟିଳ ହୃଦକୁ ବିଷ   ଅଟଇ ଏ କୃଷ୍ଣରସ
ଗୋବିଦ କର୍ଣ୍ଣପୀୟୂଷ କଲୁଷ ନାଶ ।
କୁକୃଟୀ ନକ୍ଷତ୍ରମାଳ   କୁରେଣୁ ସିନ୍ଧୁ କଲ୍ଲୋଳ
ଗଣିବାକୁ ସଂଖ୍ୟା କେହି ଛନ୍ତି ମନୁଷ୍ୟ ।
କୃଷ୍ଣ ମହିମା ଅକଥନ । କହିବା ସାମର୍ଥ୍ୟ କେହି ନାହାନ୍ତି ଜନ । ୨୨

କୁଞ୍ଜବନ ବିନୋଦିଆ   କେଳିକଦମ୍ବ ମୂଳିଆ
ନେତ୍ରକଳାପ ଚୂଳିଆ ଗୁଞ୍ଜାମାଳିଆ ।
କାଳୀଶିରନୃତ୍ୟକର   କାନ୍ତାପିନ୍ଧାବାସ ସ୍ନେର
କରରେ ମୁରଳୀଧର ବନମାଳିଆ ।
କୃପାନ୍ତୁ ଜଳଦକାଳିଆ । ଭବ ଉଦ୍ଧାରଣ ବ୍ରଜସଙ୍ଗମେଳିଆ । ୨୩ ।

କହେ ଦାସ କୃଷ୍ଣକର   ଗୋବିନ୍ଦଙ୍କୁ ଯୋଡ଼ି କର
କର ଦୋଷ କ୍ଷମା ମୋର ନ କର ହାସ ।
କୃଷ୍ଣପଦ ପାଦେ ରସ   କଳୁଷ ହେଉ ବିନାଶ
କମଳନୟନା ରାଧାପାଦେ ବିଶ୍ୱାସ ।
ଜଳେ ହୋଏ ବୈକୁଣ୍ଠେ ଥାନ । କୁଞ୍ଜବିହାର ଏ ଭକ୍ତମାନଙ୍କ ଧନ ॥

ସମାପ୍ତ

Printed by V. Kar. U. S. Press, Cuttack.

# ଘଣ୍ଟାପଥ



## ( କୁଞ୍ଜବିହାର-ବ୍ୟାଖ୍ୟା ମୁଖବନ୍ଧରେ ଦେଖ । )

## ପ୍ରଥମ ଛାନ୍ଦ

'କୁଞ୍ଜବିହାର' ମହାକାବ୍ୟର କବି ମଙ୍ଗଳାଚରଣରେ ନିଜ କାବ୍ୟପ୍ରଣୟନ ଉଦ୍ଦେଶ୍ୟ ବ୍ୟକ୍ତ କରିଅଛନ୍ତି । ଅଲଙ୍କାରଶାସ୍ତ୍ରରେ ଲିଖିତ ଅଛି. "କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାରବିଦେ ଶିବେ-ତରକ୍ଷତୟେ । ସଦ୍ୟଃପରନିର୍ବୃତୟେ କାନ୍ତାସମ୍ମିତତୟୋପଦେଶଯୁଜେ ।" ଅର୍ଥାତ୍ (୧) ଯଶ, (୨) ଅର୍ଥ, (୩) ବ୍ୟବହାରଜ୍ଞାନ, (୪) ଅମଙ୍ଗଳ—ନିବାରଣ, (୫) ସଦ୍ୟ ଆନନ୍ଦ ଉପଭୋଗ ଓ (୬) କାନ୍ତାପରି ପ୍ରିୟ ଉପଦେଶ ପ୍ରଦାନ ଏହି ଛଅ ଉଦ୍ଦେଶ୍ୟରେ କାବ୍ୟ ଲେଖାଯାଏ । କୃଷ୍ଣନାମ ଗ୍ରହଣ କରି ବିମଳ ଆନନ୍ଦଉପଭୋଗ ଓ ପାପନିବାରଣ କବି କୃଷ୍ଣକରଙ୍କ ଏହି କାବ୍ୟ ପ୍ରଣୟନର ଉଦ୍ଦେଶ୍ୟ । ଆଶୀର୍ବଚନ, ନମସ୍କ୍ରିୟା ବା ବସ୍ତୁନିର୍ଦ୍ଦେଶପୂର୍ବକ କାବ୍ୟ ଆରମ୍ଭ କରାଯାଏ । କବି ପ୍ରଥମେ "ଯଜ୍ଞରେ ପ୍ରଥମେ ପୂଜ୍ୟ" "ବିଦ୍ୟାଧିପତି" "ବିଘ୍ନହାରୀ" ଗଣେଶଙ୍କୁ ପ୍ରାର୍ଥନା କରୁଛନ୍ତି । କାବ୍ୟର ପ୍ରଥମ ଶ୍ଳୋକରେ ମହାକାବ୍ୟର ଧ୍ରୁବ ଲକ୍ଷଣ ପରିସ୍ଫୁଟ ହୋଇଅଛି । ଏହି ଛାନ୍ଦର ଆଦ୍ୟ ଓ ଯାନ୍ତ ଅକ୍ଷର "କ" ।

୧ । 'କରୁଣାକର ଗଣେଶ'—ଗ୍ରନ୍ଥର ପ୍ରାରମ୍ଭରେ ଏହା ଅତି ଉତ୍କର୍ଷ ପ୍ରଖ୍ୟାପକ । ହେ କରୁଣାକର (କରୁଣାର ଖଣି) ଗଣେଶ ବମ୍ୱା ହେ ଗଣେଶ ! କରୁଣା କରନ୍ତୁ । ଗଣେଶ—ଗଣମାନଙ୍କର ଈଶ (ପ୍ରଭୁ), ଶିବଙ୍କ

ଅନୁଚରମାନଙ୍କୁ ଗଣ କୁହାଯାଏ, ଗଣେଶ ସେମାନଙ୍କର ପ୍ରଭୁ ବା ଶ୍ରେଷ୍ଠ । କଣ୍ଠେ ବସ ପଦ ଫୁରୁ—ଏହା କବିଙ୍କର ବିନୟ ପ୍ରଦର୍ଶନ । ଯାଉଛି ମୋ' ଯାଚକ—ଏହା କବିଙ୍କର ଉଦ୍ଦେଶ୍ୟ ପ୍ରକାଶକ ।

୨ । ଦର ବିନାଶକ—ଦର (ଭୟ—ବିପଦ) ବିନାଶକାରୀ । କଣ୍ଠ ଅନଳ—ପାର୍ବତୀଙ୍କର ଦୁଇ ପୁତ୍ର କାର୍ତ୍ତିକ ଓ ଗଣେଶ; ଏମାନେ ତାଙ୍କ ଜନ୍ମକାଳ ପୁଅ ନୁହନ୍ତି । କାର୍ତ୍ତିକ—କୃତ୍ତିକାମାନଙ୍କର ପୁତ୍ର । ପାର୍ବତୀ ଗର୍ଭପ୍ରସବ କଷ୍ଟରୁ ନିଷ୍କୃତିଲାଭ କରିବା ସକାଶେ ବର ପ୍ରାର୍ଥନା କରିଥିଲେ । ଶିବ ତାଙ୍କ ବର ପୂରଣ କରିଥିଲେ । ସୁତରାଂ ପାର୍ବତୀ ନିଜ ଦେହରୁ ମଳ ଛଡ଼ାଇ ଗୋଟିଏ ପୁତୁଳା ନିର୍ମାଣ କଲେ ଏବଂ ତାକୁ ଜୀବଦାନ ଦେଇ ଶିବଙ୍କର ଦ୍ୱାର ଜଗିବାକୁ ଆଦେଶ କଲେ । ଗଣେଶ କାହାରିକୁ ଯିବା ଆସିବାକୁ ଦେଲେ ନାହିଁ । ସୁତରାଂ କ୍ରୋଧରେ ଶିବ ତାଙ୍କର ଶିରଚ୍ଛେଦନ କରିଇଲେ । ପାର୍ବତୀ ଶୋକରେ ଅଧୀର ହୋଇ ପଡ଼ିଲେ । ଶିବ ସମସ୍ତ ବୃତ୍ତାନ୍ତ ଜାଣି ଅନୁଚରମାନଙ୍କୁ ଆଦେଶ କଲେ, "ଯେ ଦକ୍ଷିଣକୁ ମୁଣ୍ଡ କରି ଶୋଇଥିବ, ତାହାର ମୁଣ୍ଡ କାଟି ଆଣିବ ।" ଅନୁଚରମାନେ ବୁଲି ବୁଲି ଗୋଟିଏ ହସ୍ତୀକୁ ପାଇଲେ, ତାହାର ମୁଣ୍ଡ କାଟି ଆଣି ଶିବଙ୍କୁ ଦେଲେ । ଶିବ ସେହି ମୁଣ୍ଡ ଗଣେଶଙ୍କର ଗଣ୍ଡିରେ ଯୋଗ କଲେ । ସେହିଦିନୁ ଗଣେଶଙ୍କର ହସ୍ତୀମୁଣ୍ଡ ଦେଖା । ମୋଠାରେ—ମୋ' ବିଷୟରେ ( ଅଧିକରଣେ ସପ୍ତମୀ ) । ସୁବରଦାୟକ—ଶ୍ରେଷ୍ଠବର (ମୁକ୍ତିର ପନ୍ଥା, କୃଷ୍ଣଗାଥା ଗାନ ଶକ୍ତି) ପ୍ରଦାତା ହୁଅ ।

୩ । ନାଗରାଜ—ସର୍ପଶ୍ରେଷ୍ଠ, ବାସୁକି । ଶୋଭକ—ଶୋଭାକାରୀ, ଶୋଭାବର୍ଦ୍ଧକ । ଭୂଦେବେ—ବ୍ରାହ୍ମଣମାନେ । ପୂଜକ—ପୂଜନ ବା ପୂଜା ଅର୍ଥରେ ବ୍ୟବହୃତ । ଯଜ୍ଞେ ଅଗେ ଯା ପୂଜକ—ଯଜ୍ଞାଦି ମଙ୍ଗଳ

କାର୍ଯ୍ୟରେ ଗଣେଶଙ୍କର ପୂଜା ପ୍ରଥମେ ହୁଏ, କଳସ ସ୍ଥାପନ ସଙ୍ଗେ କଳସରେ ଗଣେଶଙ୍କର ଆବାହନ ଓ ସଂସ୍ଥାପନ କରାଯାଏ ।

୪ । କୃତ୍ତିବାସନନ୍ଦନ—କୃତ୍ତିବାସ (ଶିବ) ଙ୍କର ଆନନ୍ଦବର୍ଦ୍ଧକ ବା ପୁତ୍ର । ଶରୀର ସ୍ଥୂଳକ—ଯାହାର ଶରୀର ମୋଟା । (କୃତ୍ତି—ହସ୍ତୀଚର୍ମ, ବାସ—ବସ୍ତ୍ର; ହସ୍ତୀଚର୍ମ ଯେ ପିନ୍ଧିଥାନ୍ତି. ମହାଦେବ ଗଜାସୁରକୁ ବଧ କରି ତାହାର ଚର୍ମକୁ ବସ୍ତ୍ରରୂପରେ ବ୍ୟବହାର କରିଥିଲେ) ।

୫ । ପାରିଜାତକ--ଦେବମନ୍ଦାର ଫୁଲର ମାଳ ।

୬ । ବାଲଚନ୍ଦ୍ର—ଗଜାନନ, ଗଣେଶ (କୁମୁଦାକର) । ଚନ୍ଦ୍ର ଆନନକ—ଚନ୍ଦ୍ର ( ଦୀପ୍ତିମାନ୍ ) ମୁଖଶାଳୀ । ଚନ୍ଦ୍ର ଆନନଙ୍କ ବାଲଚନ୍ଦ୍ର —ଦୀପ୍ତିମାନ୍ ମୁଖଶାଳୀ ଗଣେଶ ।

୭ । କରେ ଦେଲେ ସୁଧାଲଡ଼ୁ - ଶିବ ଥରେ କାର୍ତ୍ତିକ ଓ ଗଣେଶଙ୍କ ମଧ୍ୟରେ ବୁଦ୍ଧିଗତ ପରୀକ୍ଷା କଲେ । ସୁଧାଲଡ଼ୁ ତହିଁର ପଣ ହେଲା । ଶିବ କହିଲେ, "ଯେ ପୃଥିବୀକୁ ବେଷ୍ଟନ କରି ଆଗେ ଆସିବେ, ସେ ଏହି ସୁଧାଲଡ଼ୁ ପାଇବ । କାର୍ତ୍ତିକଙ୍କର ମୟୂରବାହନ । ସେ ମନ ଗର୍ବରେ ଗଲେ, ମନେକଲେ ମୂଷିକବାହନ ଗଣେଶ ଯାଇ ପାରିବେ ନାହିଁ । ଗଣେଶ ଶିବଙ୍କୁ ମାତ୍ର ପ୍ରଦକ୍ଷିଣ କରି କହିଲେ, "ପିତଃ, ଆପଣଙ୍କ ଶରୀରରେ ମାଳ ମାଳ ବ୍ରହ୍ମାଣ୍ଡ ଅଛି । ମୁଁ ଆପଣଙ୍କୁ ପ୍ରଦକ୍ଷିଣ କରି, ସେ ସମସ୍ତ ପ୍ରଦକ୍ଷିଣ କରି ସାରିଅଛି । ଅତଏବ ମୋର ସୁଧାଲଡ଼ୁ ପ୍ରାପ୍ୟ ।" ଶିବ ସନ୍ତୁଷ୍ଟ ହୋଇ ସୁଧାଲଡ଼ୁ ପ୍ରଦାନ କଲେ । କାର୍ତ୍ତିକ ଆସି ଦେଖିଲେ, ସୁଧାଲଡ଼ୁ ଗଣେଶଙ୍କ ହାତରେ ଅଛି । ଶିବ ଗଣେଶଙ୍କର ବୁଦ୍ଧିର ପ୍ରଶଂସା କଲେ ଏବଂ କାର୍ତ୍ତିକଙ୍କର ବଳ ପ୍ରଶଂସା କରି ତାଙ୍କୁ ବୋଧ କଲେ ।

୧୧ । ବୋଧବ—ଓକଃ ( ବେଦ୍ୟ ସ୍ଥାନର ) ବଦ (ଜ୍ଞାତା) । ବୋଧବ—ଚତୁରଙ୍କ । କୃଷ୍ଣପାଦରେ ମନ ଏକ କର—ମନକୁ ଏକ କର, ଏକାଗ୍ରଚିତ୍ତ ହୁଅ ।

୧୨ । ମଙ୍ଗଳାଚରଣରେ ଗଣେଶଙ୍କର ସ୍ତୁତି ସମାପନ କରି, ବର୍ତ୍ତମାନ କାବ୍ୟର ନାୟକ ମହାପ୍ରଭୁ ଶ୍ରୀକୃଷ୍ଣଙ୍କର ସ୍ତୁତି ଆରମ୍ଭ କରୁ ଅଛନ୍ତି । ରଥାଙ୍ଗଧାରକ—ରଥାଙ୍ଗ (ଚକ୍ର) ଧାରକ, ଚକ୍ରଧର—କୃଷ୍ଣଙ୍କୁ ଦେଖିଲେହିଁ ମୁକ୍ତି ମିଳେ ।

୧୩ । ନୀଳାପର୍ବତ—ନୀଳାଚଳ, ପୁରୀ; ଅଧୁନା ଯେଉଁ ସ୍ଥାନରେ ପୁରୀ ଦେଉଳ ଅଛି, ସେ ସ୍ଥାନରେ ପୂର୍ବେ ନୀଳାଚଳ ବୋଲି ଏକ ପର୍ବତ ଥିଲା ।

୧୪ । କଳ୍ପତରୁ—ବାଞ୍ଛାପୂର୍ତ୍ତିକାରୀ ସ୍ୱର୍ଗର ବୃକ୍ଷ ବିଶେଷ । ଚିନ୍ତାମଣି—ଏହି ମଣି ଧାରଣ କଲେ ଚିନ୍ତାମାତ୍ରେ ଇପ୍ସିତ ବସ୍ତୁଲାଭ ଘଟେ । ଅନ୍ଧକୁ ଲୋଚନଦାୟକ—ଗୋପରେ ଅନ୍ଧର ପୁଅ ସଙ୍ଗେ ଖେଳିବା ବେଳେ ଶ୍ରୀକୃଷ୍ଣ ତାକୁ ଧୂଳିରେ ଧୂସର କଲେ । ପିଲା ଯାଇ କାନ୍ଦି କାନ୍ଦି ପିତା ଆଗେ କହିଲା । ଏକମାତ୍ର ପୁତ୍ରର କ୍ରନ୍ଦନ ଶୁଣି ପିତା ସହି ନ ପାରି କୃଷ୍ଣଙ୍କୁ ନାନା କଟୁକଥା କହିଲା । କୃଷ୍ଣ ଅନ୍ଧର ପୁତ୍ର-ବାତ୍ସଲ୍ୟରେ କରୁଣାପରବଶ ହୋଇ କହିଲେ, "ଅନ୍ଧ ଦେଖ, ଧୂଳି ମାରିଛୁ କି ?" ଅନ୍ଧର ଚକ୍ଷୁରୁ ଦିଶିଲା । ସେ କୃଷ୍ଣଙ୍କୁ ଚିହ୍ନି ପାରି ସ୍ତୁତି କଲା ।

୧୫ । କୌମୋଦକୀ—କୃଷ୍ଣଙ୍କ ଗଦା; "କୌମୋଦକୀ ମୋଦୟନ୍ତିମ୍ୱୃତେଚଃ" (ମାଘ) । କମଳତାରକ—ଉଜ୍ଜ୍ୱଳ ପଦ୍ମଯୁକ୍ତ, (କମଳ—ପଦ୍ମ) (ତାରକ—ଉଜ୍ଜ୍ୱଳ); ଅଥବା କମଳ (ମୃଗ)ର ତାରକ (ତ୍ରାଣକାରୀ କର୍ତ୍ତା) । କରୁଣା ଚନ୍ଦନରୁ ଅଧିକ ଶୀତଳ ବା ସୁଖପ୍ରଦ । (ବ୍ୟାଧର କବଳରୁ ମୃଗର ଉଦ୍ଧାର କମ୍ବଦନ୍ତୀ ଅନୁସନ୍ଧେୟ) ।

୧୬ । କୌସ୍ତୁଭ ମଣି—ସମୁଦ୍ରମନ୍ଥନରୁ ଜାତ ଶ୍ରେଷ୍ଠ ଉତ୍କୃଷ୍ଟ ମଣି । କଷ୍ଟ ଉଦ୍ଧାରକ—ଜଳରେ ନକ୍ରମୁଖରୁ କଷ୍ଣର ଉଦ୍ଧାର କଥା ପ୍ରସିଦ୍ଧ; 'ଗଜରାଜଙ୍କୁ ଜଳେ, ତ୍ରାହି ତ୍ରାସିବା ବେଳେ, ତାରଣ ଭଣ ଭାବଗ୍ରାହୀ,'' କୃପାସିନ୍ଧୁ ଜଣାଣ ।

୧୭ । ଲୁବ୍ଧକତାରକ—ଜାତ୍ରାଣବରର ମୁକ୍ତିଦାତା, ଜାସ୍ୱ ମୃଗର କର୍ଣ୍ଣ ମଣି କୃଷ୍ଣଙ୍କ ପାଦକୁ ଶର ଯୋଗେ ବନ୍ଧନ୍ତ । କୃଷ୍ଣଙ୍କ ଆଦେଶରେ ତାର ମୁକ୍ତି ହେଲା । ବୃନ୍ଦାବାସ ବ୍ରହ୍ମା ଗର୍ବ ବନାଶକାରକ—ବତ୍ସା ହରଣରେ ବ୍ରହ୍ମାଙ୍କର ଏବଂ ମୋହନୀ ରୂପରେ ଶିବଙ୍କର ଗର୍ବ ବନାଶ କରିଥିଲେ ।

୧୮ । ଚୋଳପାଇଁ······କନକ—ଶବରଣୀର ଗୋପଦାଣ୍ଡରେ ଚୋଳ ବିକିବା ଏବଂ କୃଷ୍ଣଙ୍କ କର ଲାଗି ଚୋଳ ସୁନା ହେବା କଥା ପ୍ରସିଦ୍ଧ । କନକ—ସୁନା ।

୧୯ । ବସ୍ତୁଷ୍ଠ—ମସ୍ତକସ୍ତିତ ମୁକୁଟ । ବସ୍ତ୍ରକ······ପାଦକ—ଇନ୍ଦ୍ର ପାଦତଳେ ପଡ଼ନ୍ତି । ପାଦକ—ପାଦରେ । ନ ସ୍ନେହ ଗୋପୀ·· ପୀୟୂଷକ—ଗୋପୀମୁଖ ମଧୁରେ ତାଙ୍କର ନ ଅନୁରାଗ ଥାଏ ।

୨୧ । ଅଣିମାଦ—ଅଷ୍ଟୈଶ୍ୱର୍ଯ୍ୟ, ଯଥା—ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଇଶିତ୍ୱ, ବଶିତ୍ୱ, କାମାବସାୟିତା । ଭୋଗ—ମନୁଷ୍ୟର ଭୋଗ୍ୟ ବସ୍ତୁ, ଅଥଚ ତାହା ମୁଁ କାମନା କରେ ନା; ଆପଣଙ୍କ କାମକୀର୍ତ୍ତନ ଛଡ଼ା ମୋହର ଅନ୍ୟ କିଛି ଲାଳସା ନାହିଁ ।

ଏହି ପଦ ଓ ଏହା ପରବର୍ତ୍ତୀ ପଦରେ ଦବ କଜର ନିଷ୍କାମ ଭକ୍ତି ଓ ଦାସ୍ୟଭାବ ତଥା ଏହି କାବ୍ୟରଚନାର ଉଦ୍ଦେଶ୍ୟ ବଡ଼ ସୁନ୍ଦର ଭାବରେ ପରିସ୍ଫୁଟ କରିଅଛନ୍ତି ।

୨୩ । ଆଜ୍ୟ—ଯଜ୍ଞ ଘୃତ । ମେଷଭାନୁ—ମେଷମାସର ସୂର୍ଯ୍ୟ । ତରଳକାରକ—ଯେ ତରଳ କରେ । ତୁଳନା :—ଆଜ୍ୟ—ଭକ୍ତହୃଦ; ଗ୍ରୀଷ୍ମକାଳର ପ୍ରଚଣ୍ଡ ସୂର୍ଯ୍ୟ-ତାବ୍‌ୟ ।

୨୪ । କୃଷ୍ଣପକ୍ଷର ଅମା ଅନ୍ଧାର ନାଶ କରୁଥିବା କୋଟିଏ ଚନ୍ଦ୍ରପରି ଦେବ । ଅଘକନାଶକ—ପାପଖଣ୍ଡନକାରୀ ।

୨୫ । ଗୋପିକାଭକ୍ତେ—ଗୋପୀରୂପ ଭକ୍ତମାନେ, ଅମ୍ଭ ଗୋପୀମାନଙ୍କ ପ୍ରତି ଭକ୍ତିଯୁକ୍ତ ପାଠକେ ହୃଦରେ ପଦକ ରୂପେ ଧାରଣ କରିବେ ।

୨୬ । କୃଷ୍ଣଚରିତ ବର୍ଣ୍ଣନା କରିବାକୁ ଯାଇ କବିମାନେ ବର୍ଣ୍ଣନା ସକାଶେ ଉପଯୁକ୍ତ ବିଷୟ ପାନ୍ତି, ସୁତରାଂ କବିତା ପୁଷ୍ଟ ହୁଏ । ପୁଣି, ସେହି ବର୍ଣ୍ଣନାଦ୍ୱାରା ସେମାନଙ୍କ ଚରିତ୍ର ନିର୍ମଳ ହୁଏ । ଏଣୁ ଉଭୟ ଅର୍ଥରେ କୃଷ୍ଣ କବିମାନଙ୍କର କୃତାର୍ଥଗତି ଅଟନ୍ତି ।

୨୭ । ନେତ୍ରକର୍ଣ୍ଣିରାଏ—ନେତ୍ର କର୍ଣ୍ଣ ଯାହାର (ସର୍ପ) ସେମାନଙ୍କର ରାଏ (ରାଜା) ଯେ ବାସୁକି । ଅନ୍ତକ—ଶେଷ । ସହସ୍ର ମୁଖ ଧରି ବାସୁକି ସ୍ତବ । ଶେଷ କରି ପାରି ନାହାନ୍ତି ।

୨୮ । କପର୍ଦ୍ଦୀ—କପର୍ଦ୍ଦ ( ଜଟା ), ଧାରଣ କରିଅଛନ୍ତି ଯେ, ଶିବ ।

୨୯ । ଗୋଲୋକ ବୈକୁଣ୍ଠ—ବୈକୁଣ୍ଠ ଦୁଇ ଭାଗରେ ବିଭକ୍ତ, ଗୋଲୋକ ଓ ମହାବିଷ୍ଣୁପୁର । ଗୋଲୋକରେ ଶ୍ରୀକୃଷ୍ଣ ମାଧୁର୍ଯ୍ୟମୟ ଏବଂ ମହାବିଷ୍ଣୁପୁରରେ ଐଶ୍ୱର୍ଯ୍ୟମୟ ।

୩୦ । କୈବଲ୍ୟ—କେବଳର ଭାବ, ପରମାତ୍ମା ସହିତ ଆତ୍ମାର ଏକତ୍ୱ; ମୁକ୍ତି ।



## ଦ୍ୱିତୀୟ ସ୍କନ୍ଧ

୧ । କମଳନୟନ କଥା—କୃଷ୍ଣକଥା । କଳାକର—ଚନ୍ଦ୍ର । ଚନ୍ଦ୍ରଙ୍କର ଷୋଡ଼ଶ କଳା ଅଛି, ସୁତରାଂ ସେ କଳାକର । ସ୍ମୃତି ଶାସ୍ତ୍ର ମତରେ ଚନ୍ଦ୍ରଙ୍କର ୧୬ କଳା ଯଥା—

ଅମାଦ ପୌର୍ଣ୍ଣମାସ୍ୟନ୍ତାଃ ପ୍ରୋକ୍ତାଃ ଯାଃ ଶଶିନଃ କଳାଃ ।
ଈଥୟସ୍ତାଃ ସମାଖ୍ୟାତାଃ ଷୋଡ଼ଶୈବ ବରାନନେ ॥

ତନ୍ତ୍ରଶାସ୍ତ୍ର ମତରେ ଯଥା—ଅମୃତା ମାନଦା, ପୂଷା, ତୁଷ୍ଟି, ପୁଷ୍ଟି ରତି, ଧୃତି, ଶଶିନୀ, ଚନ୍ଦ୍ରିକା, କାନ୍ତି, ଜ୍ୟୋତ୍ସ୍ନା, ଶ୍ରୀ, ପ୍ରୀତି, ଅଙ୍ଗଦା, ପୂର୍ଣ୍ଣା, ପୂର୍ଣ୍ଣାମୃତା ।

ଦେବତାମାନେ ଚନ୍ଦ୍ରର ୧୫ କଳା (ଅମୃତ) ଭକ୍ଷଣ କରନ୍ତି । ତେଣୁ ଚନ୍ଦ୍ର କୃଷ୍ଣପକ୍ଷରେ କ୍ରମେ ହ୍ରାସ ହୁଏ । ଅମାବସ୍ୟା ଦିନ ଯେ କଳା ଅବଶିଷ୍ଟ ଥାଏ, ତାହା ଦୁଇ ଭାଗ ହୁଏ ; ଏକ ଭାଗ ପିତୃଗଣ ଭକ୍ଷଣ କରନ୍ତି । ଅବଶିଷ୍ଟ ଏକ ଭାଗ ଦେଇ ଚନ୍ଦ୍ର ଲତାଗୁଳ୍ମକୁ ପ୍ରସ୍ଥାନ କରିଥାନ୍ତି ଏବ ତହୁଁରେ ସୂର୍ଯ୍ୟଙ୍କ ଶରୀରକୁ ପ୍ରସ୍ଥାନ କରି ସେଠାରେ ପୂର୍ଣ୍ଣକଳା ପ୍ରାପ୍ତ ହୁଅନ୍ତି । କରେ—କିରଣଦ୍ୱାରା । କଳାକର (ଚନ୍ଦ୍ର) କିରଣ ଯୋଗେ ଯେପରି ଅନ୍ଧାର ନାଶ କରେ, କୃଷ୍ଣ କଥାରେ ପାପ ସେହିପରି ନଷ୍ଟ ହୁଏ ।

୨ । କମଳସମ୍ଭବ—ପଦ୍ମଜାତ, ବ୍ରହ୍ମା । ମାୟାସ୍ତବନ—ମାୟା ଗାଇ ।

କୃତ୍ତିବାସଠାରେ କହୁ.....ସିନ୍ଧୁରେ—ଦେ ଦେବେ (ଦେବତାମାନେ), ଶିବଙ୍କଠାରେ ( ଏ କଥା ) କହୁ (ବିଷ୍ଣୁଙ୍କଠାରେ ଗୁହାରି କରିବା ସକାଶେ) କ୍ଷୀରସିନ୍ଧୁକୁ ଚଳ 'ଗମନ କରି । -

୩ । ନାଗର—ଭଦ୍ର, ତୀକ୍ଷ୍ଣବୁଦ୍ଧି ଅର୍ଥାତ୍ ବିଷ୍ଣୁ । ନାଗରେ—ସର୍ପରେ, ବାସୁକି ଉପରେ । ଶୟନ କରି—ଶୋଇଛନ୍ତି । କମଳକରେ—ପଦ୍ମପରି ସୁନ୍ଦର ହସ୍ତରେ । ଦର—ଶଙ୍ଖ । ଅରି— ଚକ୍ର । ପୁଣ୍ୟଜନ—ଅସୁର ।

୪ । କାଶ୍ୟପୀ—ପୃଥିବୀ । ପରଶୁରାମ ପୃଥିବୀକୁ ନିଃକ୍ଷତ୍ରିୟ କରି ତାହା କଶ୍ୟପଙ୍କୁ ଦାନ କରିଥିଲେ । ସୁତରାଂ ପୃଥିବୀକୁ କାଶ୍ୟପୀ (କଶ୍ୟପଙ୍କୁ ଦେୟା) କୁହାଯାଏ ।

୫ । କାବୃନ୍ଦ— ଅତିକାତର । କୈବର୍ତ୍ତତାରଣ—ଧୀବରର ମୁକ୍ତିଦାତା, ରାମାବତାରରେ ଧୀବର ପ୍ରଭୁଙ୍କ ପାଦ ଧୋଇ ମୁକ୍ତି ପାଇଲା । କରରେ ପତିତପାବନ ବ୍ରତ—ପତିତମାନଙ୍କୁ ପବିତ୍ର କରିବା ବ୍ରତ ଧାରଣ କରିଛନ୍ତି । କେଡ଼େ ଶୋଭା··· ·ପାବନ—ଆପଣଙ୍କର କେଡ଼େ ସୁନ୍ଦର ପତିତପାବନ ବାନା ଉଡ଼େ !

୬ । ନନ୍ଦରେ—ନନ୍ଦରେ, ଶୋଇ କରି । ଦର—ଭୟ । ତେଜ୍ୟା—ତ୍ୟାଗ, ପରିତ୍ୟାଗ । ନନ୍ଦରେ—ଆନନ୍ଦରେ, ନିର୍ଭୟରେ । ରାସ—କ୍ରୀଡ଼ା, ରାସକ୍ରୀଡ଼ା ।

୭ । ଭଦ୍ରବାଣୀ— ବିଷ୍ଣୁଙ୍କ କଥା । କୋଟିଏ ସାରଙ୍ଗ ରୂପ—କାମ ସଂସାର ମଧ୍ୟରେ ସୁନ୍ଦର, କାନ୍ତ କୃଷ୍ଣ କୋଟିଏ କାମର ରୂପ ଧାରଣ କଲେ ।

୮ । ଭାଜନ—ଯୋଗ୍ୟତା ବା ଯୋଗ୍ୟ ବ୍ୟକ୍ତି । କଇମୁଦୀ—କୌମୋଦକୀ, ବିଷ୍ଣୁଙ୍କ ଗଦା । ସାରଙ୍ଗ—ପଦ୍ମ ଓ ଶଙ୍ଖ । ଦେବାଧିରାଜେ—ଦେବମାନଙ୍କର ଅଧିରାଜ ।

୯ । ସୁରଶ୍ରେଷ୍ଠ—ବ୍ରହ୍ମା । ଧାତା—ବ୍ରହ୍ମା । ସହସ୍ରାକ୍ଷ—ଇନ୍ଦ୍ର ।

୧୦ । ଜନ୍ମକୁଳ—ଜାତ ହୋଇଥିବା କୁଳ, ଜାତ ବଂଶ । ଫାଶ—ବନ୍ଧନ, ଫାନ୍ଦ, ବନ୍ଦୀକର୍ତ୍ତ, ଶତ୍ରୁ । କଂସ ଜାତକୁଳର ଶତ୍ରୁ ଅଟେ,

ସେ ପୁଣି ଯେପରି ଗର୍ବ ( ଦେବଙ୍କର ଗର୍ବ ) ବିନାଶ କରିବ ନାହିଁ; ଅସୁର [କଂସ] ଯଦି କୁବଳୟର [ଗର୍ବବିନାଶ ପାଇଁ] କରେ, ତେବେ ଇନ୍ଦ୍ର କଂସ ମସ୍ତକରେ ବଜ୍ର ପ୍ରହାର କରନ୍ତୁ; ସେ ଏଥିରେ ମନରେ କିଛି ସଂଶୟ ନ ରଖିବ ।

୧୧ । ସ୍ୱାରାଗ—ଇନ୍ଦ୍ରଙ୍କ ବଜ୍ର । ନିର୍ଜର—ଦେବତାମାନେ ।

୧୨ । ହର—ଶିବ । ବେଦବର—ବ୍ରହ୍ମା । କମଳନୟନ—ହେ ପଦ୍ମାକ୍ଷ । କମଳାବର—ହେ ଲକ୍ଷ୍ମୀପତି । କଷ୍ଟସରିତ—କଷ୍ଟରୂପକ ନଦୀ ।

୧୩ । ସତ୍ୟବାକ୍ୟ—ଆପଣଙ୍କ ନିଜ ପ୍ରତିଜ୍ଞା ବାକ୍ୟର ସତ୍ୟରକ୍ଷା କର । ରତ୍ନଗର୍ଭା—ପୃଥିବୀ ।

୧୪ । କଳାକର [ଚନ୍ଦ୍ର] ବୃଷରାଶିରେ [ମେଷ ବୃଷାଦି ଦ୍ୱାଦଶ-ରାଶିରୁ ଏକ ରାଶିରେ] ଉଦେ [ଉଦୟ ହୋଇଥିଲେ]

୧୫ । କମ୍ବୁ—ଶଙ୍ଖ । ଶୋଭିବନ—ଏହା ହିନ୍ଦୀ ଶୋଭାବନ ଶବ୍ଦର ଅପଭ୍ରଂଶ, ସୁନ୍ଦର, ଶୋଭାଯୁକ୍ତ । କମଳକରେ—କରପଦ୍ମରେ । ଯାତୁଧାନ—ରାକ୍ଷସ, କଂସ । କଉସ୍ତୁଭ—କୌସ୍ତୁଭ, ବିଷ୍ଣୁଙ୍କ ଧୃତ ମଣି । କୃଷ୍ଣଙ୍କର ବର୍ଣ୍ଣ କଳା, ସେଥିରେ ପୀତବସନ ଅଛି; ସୁତରାଂ ସେହି ବସନର କାନ୍ତି ମେଘ ଦେହରେ ଥିବା ବିଜୁଳିର କାନ୍ତିକୁ ବିନାଶ କରୁଅଛି ।

୧୬ । କମଳହୃଦରେ—ପଦ୍ମପରି ସୁନ୍ଦର ବକ୍ଷରେ । ଶ୍ରୀବତ୍ସ ଚିହ୍ନ—ଭକ୍ତ ଶ୍ରୀବତ୍ସ ନାମକ ବ୍ରାହ୍ମଣର ପାଦଚିହ୍ନ । ମକରଧ୍ୱଜ—କାମ, କାମଦେବଙ୍କର ଧ୍ୱଜ ମକର ଚିହ୍ନିତ ।

୧୮ । ବିଷ୍ଣୁପଦୀ—ଗଙ୍ଗା । କୃତ୍ତିବାସଙ୍କୁ [ ଶିବଙ୍କୁ ] ପଞ୍ଚାମୃତ ଦ୍ୱାରା ଅର୍ଚ୍ଚନା କଲେ । ପଞ୍ଚାମୃତ [ଯଥା ଦଧି, ଘୃତ, ମଧୁ, ଜଳ ଓ ଖଣ୍ଡ ପଞ୍ଚ ଅମୃତ ଅର୍ଥାତ୍ ପୃଥିବୀର ପଞ୍ଚ ଶ୍ରେଷ୍ଠ ଦ୍ରବ୍ୟର ସମ୍ମିଶ୍ରଣ] ଯୋଗେ ପୂଜା କଲେ ।

ଦେବକୀଙ୍କର ପ୍ରସବ କ୍ରିୟା ବେଳେ କୌଣସି ଧାତ୍ରୀ ନିକଟରେ ନ ଥିଲେ । ସୁତରାଂ ସ୍ୱୟଂ ବସୁଦେବଙ୍କୁ ଧାତ୍ରୀକ୍ରିୟା କରିବାକୁ ହୋଇ-ଥିଲା । ତେବେ ସେ ଉତ୍ସର୍ଗଣ କରିବେ କପରି ? ଆଗେ କାଯ୍ୟଶୁଦ୍ଧି ଦରକାର । ସ୍ନାନ କରିବେ କେଉଁଠି ? ସେ ଯେ ବନ୍ଦୀଗୃହରେ । ତେଣୁ ଧ୍ୟାନରେ ବସ୍ତୁପଦୀ [ଗଙ୍ଗା]ରେ ମନ୍ତ୍ରସ୍ନାନ କଲେ । ତା ପରେ ମାନସ କଲେ । କଣ ମାନସ କଲେ ? ମା କାଳି, ବାଳକକୁ ରକ୍ଷା କର । କଂସ ଦୁଷ୍ଟ ଛଅଟି ବାଳକ ବଧ କରିଅଛି, ଏହାକୁ ଯେପରି ନ ପାରେ । ତେବେ କଣ କରିବ ? କୋଟିଏ ଧେନୁ ଦେବ । ଧେନୁ କାହିଁ ? ଉତ୍ସର୍ଗଣ କରି ଦେଉଛି, ପରେ ଦେବ ଉତ୍ସର୍ଗଣ—ମାନସିକ ଉତ୍ସର୍ଗ, ପ୍ରତିଗ୍ରହୀତା କମା ଦେୟ ବସ୍ତୁର ଅଭାବରେ ତାହାର ଭାବ କଳ୍ପନା କରି ଯେଉଁ ମାନସିକ ଦାନ କରାଯାଏ] । ଆଉ କଣ କରିବ ? କୃତ୍ତିବାସଙ୍କୁ ପଞ୍ଚାମୃତରେ ପୂଜା କରିବ । ଏତିକ ? ନା, କୋଟିଏ ବ୍ରାହ୍ମଣଙ୍କୁ ଖୁଆଇବ । ଆଉ ତୁମ ପାଇଁ କଣ କରିବ ? ତୁମର ଯେ ଅତି ପ୍ରିୟବସ୍ତୁ ମନ୍ଦାର ଫୁଲର ମାଳା ତୁମ୍ଭ କଣ୍ଠରେ ଲମ୍ୱାଇବ ।

୧୯ । ଯଦୁବୀର—ବସୁଦେବ । ପୂର୍ଣ୍ଣୟନନ—ଅସୁର । ନିବାର—ନିବାରଣ । ନିକର—ତତ୍ତ୍ୱକଥା, ସାର କଥା ।

୨୦ । ସ୍ୱଇ—ତାକ । ଚିତ୍ରସେନ—ଗନ୍ଧର୍ବମାନଙ୍କର ରାଜା । ବୈଜୟନ୍ତୀ—ଆଜାନୁଲମ୍ବିତ ପଞ୍ଚବର୍ଣ୍ଣ ମାଳା, ବିଷ୍ଣୁଙ୍କ ମାଳା ।

୨୧ । ସୁରବାଣୀ—ଦେବତାମାନଙ୍କର କଥା । ଗନ୍ଧର୍ବ—ଚିତ୍ରସେନ । ନିଚେତ—ଚେତାଶୂନ୍ୟ, ସୁପ୍ତ । କାଳନିଦ୍ରା—ମୃତ୍ୟୁବତ୍ ନିଦ୍ରା, ମଲାପରି ଶୋଇଥିଲେ ।

୨୨ । ଚେତାଇ—ବିଶେଷ ସାବଧାନ କରାଇ, ନିଖାର ନିଖାର । କାତ୍ୟାୟନୀ—ଶକ୍ତି, ଦୁର୍ଗା । କନ୍ୟା ପ୍ରତିଦାନ—କନ୍ୟା ବଦଳ । ତହିଁର—ସେଠାରେ ।

୨୩ । ତ୍ରିଦଶ—ଦେବତା । କପୋଷ୍ଣ—କପଡ଼ା ଅର୍ଥରେ ବ୍ୟବହୃତ । ଗଢ଼ରେ—ଶୃଙ୍ଖଳ ହୋଇ, ଖେଳ । କୁଳ ଯଦୁଶ୍ରେଷ୍ଠ—ଯଦୁବଂଶ ଶ୍ରେଷ୍ଠ ଉଗ୍ରସେନ କଂସର ପିତା ।

ଇନ୍ଦ୍ରଙ୍କର କେହି ଭୃତ୍ୟ ବଦ୍ୟାଧର କୌଣସି ଅପରାଧରେ ଅଭିଶପ୍ତ ହୋଇ ପୃଥିବୀରେ ଦାନବ ବେଶରେ ଅବତୀର୍ଣ୍ଣ ହେଲେ । ସେ ଦ୍ରୁମିଳା ନାମ ଧରି ସୌରଭ ଦେଶର ରାଜା ହେଲେ । ଏକଦା ସେ ଗୋମତୀ ତୀରରେ ମଥୁରା ପାଟମହିଷୀ ଇନ୍ଦୁମତୀଙ୍କୁ ପୁଷ୍ପବତୀ ଅବସ୍ଥାରେ ଦେଖି କାମମୁଗ୍ଧ ହେଲେ ଏବଂ ଉଗ୍ରସେନଙ୍କ ରୂପ ଧାରଣ କରି କପଟରେ ତାଙ୍କ ସହବାସ କଲେ । ଏହି ସହବାସ ଫଳରେ କଂସ ଜାତ ହେଲେ ।

୨୪ । କରେ—ହସ୍ତରେ । କରେ—କରୁଅଛୁ । କବନ୍ଧ—ଜଳ । କବନ୍ଧବନ୍ଧ—ଜଳବନ୍ଧ । ତମକ ଜଳ ହେଲୁ, ତହିଁର ଚାରିପାଖରେ ଧଇର୍ଯ୍ୟ [ଧୈର୍ଯ୍ୟ] ରୂପକ ବନ୍ଧ ରହୁଲା ନାହିଁ ।

୨୫ । ଦରଅରତଦ—ଶଙ୍ଖ ଚକ୍ର ଗଦା । "ଗଦାର ଖଡ୍ଗ ପଦ୍ମଧୃକ୍" (ବିଷ୍ଣୁଧ୍ୟାନ] "ବିଷ୍ଣୁଂ ବନ୍ଦେ ଦରକମଲ-କୌମୋଦକୀ-ଚକ୍ରପାଣିଂ" ।

୨୬ । ପିତାଙ୍କୁ—ଉଗ୍ରସେନଙ୍କୁ । ନିର୍ଭସ୍ମ କର—ପିତାଇ ବସ୍ତ୍ର ହର କର । ତୋତେ ମଥୁରାର ରାଜା କଲି, ଏହା କହି ତାଙ୍କ ଗଳାରେ ମାଳା ଦେଲେ । ଉଗ୍ରସେନର ଏହି ରେଟ ସସ୍ଥିତ ଭାଗବତରେ ନାହିଁ । ଓଡ଼ିଆ ଭାଷାର କାବ୍ୟ ଓ ଗ୍ରନ୍ଥମାନଙ୍କରେ ଦେଖାଯାଏ ।

୨୮ । କାଳନ୍ଦୀ—କଳନ୍ଦପର୍ବତରୁ ଜାତା ନଦୀ, ଯମୁନା । କେତନ—ଚିହ୍ନ । ମକର - କୁମ୍ଭୀର । କେତନ ମକର—ମକରରୂପ ଚିହ୍ନଧାରୀ । ତବଦ—ସ୍ତବ୍ଧର ଅପଭ୍ରଂଶ ।

୨୯ । ଜାତ୍ଯାଜୀବ—ନଟ, ନାଟୁଆ ଖେଳା । ଦେବ ବାଲବକ ବାଟରେ ବାଇ—ବସୁଦେବଙ୍କ ଯିବା ବାଟରେ ଜଳ ବାଇବନ୍ଧ ନିର୍ମାଣ କଲ୍ମ ।

୩୦ । ମଧୂପୁର—ମଥୁରା । ଲୁହା ଲୁହା—ଶିଶୁର ଶବ୍ଦ ।

୩୧ । ରଷକଶ୍ରେଣୀ—ପ୍ରହସ୍ତିବୃନ୍ଦ । ଅଲ୍ପସ୍ତଳ—ଅଲ୍ପବୟସ୍କ । ଅଖୁଅର—ମୂଷାର ଶତ୍ରୁ, ବିରାଡ଼ି ।

୩୪ । କାଳୀରୂପେ—ଦୁର୍ଗାରୂପ ଧରି ମହିଷାସୁର ପ୍ରଭୃତିଙ୍କୁ ବଧ କରିଥିଲେ । କଂସବେଳେ—କଂସ ସମୟରେ, କଂସଦ୍ୱାରା । କୌଣପ-ଅସୁର ।

୩୫ । ଅନଙ୍ଗ—ଅକାଶ । ହରିପରେ—ସିଂହପୃଷ୍ଠରେ । ଦରଧରପୂ ମିତ୍ର—ଦରଧରପୂ ( ଶଙ୍ଖାସୁର ) ତାହାର ମିତ୍ର ଯେ ଶଙ୍ଖ । କରେ—ହସ୍ତରେ ।

୩୭ । ନିଶାଚରଗଣେ—ପୂତଣା, ଶକଟା, ବକ, ଅଘା ଆଦି ଅସୁରଙ୍କୁ । ଅଭତ—ବ୍ୟାକୁଳ । କୁବଳଚକ୍ର—କୁମ୍ଭାରଚକ, କୁବଳ 'କୁଲାଳ'ଶବ୍ଦଜ । କୁଲାଳ—କୁମ୍ଭାର, "ବ୍ରହ୍ମା ଯେନ କୁଲାଳବନ୍ନିୟମିତୋ ବ୍ରହ୍ମାଣ୍ଡ ଭାଣ୍ଡୋଦରେ" ।

୩୮ । ଅଷ୍ଟମଲ୍ଲ—ସୁନାମା,ନ୍ୟଗ୍ରୋଧ,କଙ୍କ,ସଙ୍କୁ, ସୁହୃ, ରାଷ୍ଟ୍ରପାଳ, ସୃଷ୍ଟି, ତୁଷ୍ଟିପାଳ ।

୪୩ । କୃଷ୍ଣ ଓ ବଳରାମ ଦୁଇ ତୀର୍ଥ ହେଲେ, ସେମାନଙ୍କ ଯୋଗେ କଳିର ପାପ ଧ୍ୱଂସ ହେବ ।

---

## ତୃତୀୟ ଛାନ୍ଦ

୧ । ଚନ୍ଦ୍ରବଦନୀ ( ଗୋପୀମାନେ ) କୃଷ୍ଣଙ୍କ ଜନ୍ମ ଓ ନନ୍ଦଙ୍କ ହୋଳ ଶୁଅଣି କରିବା ବାର୍ତ୍ତା ଶୁଣିଲେ ।

୨ । ଅଷ୍ଟ ଅପସରା—ରମ୍ଭା, ମେନକା, ତିଳୋତ୍ତମା, ଉର୍ବଶୀ, ଘୃତାଚୀ ଆଦି, ( ସଂସ୍କୃତ ଭାଗବତ, ଦଶମସ୍କନ୍ଧ, ପୂର୍ବାର୍ଦ୍ଧ, ତୃତୀୟ ଅଧ୍ୟାୟ, ୭ମ ପଦ୍ୟରେ ଏହି ବିଷୟ ଦେଖ] ।

୨ । କଲ୍ୟାଣ ବଚନ—କୃଷ୍ଣ ଜନ୍ମ ଶୁଭବାର୍ତ୍ତା । ବହୁ କଲ୍ୟାଣ ବଚନ ଚହଲ—ସ୍ନେହ ଶୁଭ ସଂବାଦ ବହୁ ବହୁ (କହନ୍ତେ) ଚହଲ (ବଡ଼ ଗୋଳମାଳ ) ହେଲା । ସେହି ଚହଲ ଶୁଣି ଗୋପୀଗଣ ବାହାର ହେଲେ ।

୧୦ । କମଲ—ଦଧି ।

୧୧ । ବାହାର—ବାହୁକୁ । ବାହାର ହେଲା—ବାହାଉଛି । କୋଡ଼ରେ ଧରିଥିବା ଶିଶୁକୁ ବାହୁରେ ଧରି ବାହାଉଛି । ଅଥବା କୋଡ଼ରୁ ଶିଶୁକୁ ବାହାର କରି ଦେଇ ବାହାରିଲା ।

୧୨ । ବରଲବ୍ଧ—ଚମ୍ପା । ବରଲବ୍ଧ ଅଙ୍ଗୀ—ଯାହାର ଅଙ୍ଗ ଚମ୍ପାପରି । ବରବର୍ଣ୍ଣିନୀ—ହଳଦୀ ।

୧୩ । ଦେବମଣି—ଶିବ, ତାଙ୍କ ଅରାତି—କାମ । ଦେବମଣି ଅରାତିକାଣ୍ଡ—କାମଶର । ଦୁଲୁକଲା—କମ୍ପିଲା ।

୧୭ । କମ୍ପା—ଭୟ । ତ୍ରପା—ଲଜ୍ଜା । କମ୍ପାତ୍ରପା—ଲାଜଭୟ । ନାଗ—ହସ୍ତୀ । ନାଗରାଜ—ହସ୍ତୀଶ୍ରେଷ୍ଠ । ନାଗରାଜଗତି—ଶ୍ରେଷ୍ଠ ହସ୍ତୀର ଖୁଲପରି ଗତି ।

୧୮ । ଶମ୍ଭର—ମେଘ (ଶବ୍ଦମାଳା) । ଷଣକାନ୍ତ—ବଜ୍ରଳ ।

୧୯ । କୃଷ୍ଣ—କନ୍ଦର୍ପ । ନିର୍ମାଣ—ଜନ୍ମ, ଗଠନ, ବିସ୍ତାର । କୃଷ୍ଣ ନିର୍ମାଣ—କନ୍ଦର୍ପ ବାଧା ରୂପକ ବାତ ବା ପବନ ।

୨୦ । ସାରଙ୍ଗ—କେଶ । ସାରଙ୍ଗ—ଫୁଲ ।

୨୧ । ସାରଙ୍ଗ—ଚନ୍ଦ୍ର । ଦେବତା—ରାହୁ ଦେବତା । ଉରୁ—ଉରରୁ । କର୍ମେ—ଭାଗ୍ୟକୁ । ଗଳପଡ଼ିଲେ—ଖସି ପଡ଼ିଲେ, ମୁକ୍ତ-ହେଲେ । କଳରୁ—ପାଟରୁ । ( ଉତ୍ପ୍ରେକ୍ଷା ଅଳଙ୍କାର ) ।

୨୦, ୨୧ । ସ୍ତ୍ରୀମାନଙ୍କର କେଶରୁ ଫୁଲ ଖସି ପଡ଼ିଲା । କବି ଉତ୍ପ୍ରେକ୍ଷା କରି କହୁଛନ୍ତି, ରାହୁଙ୍କ ପାଟିରୁ ଚନ୍ଦ୍ର ଖସି ପଡ଼ିଲେ କି ?

୨୨ । କାନ୍ତାକଦମ୍ବ—ସ୍ତ୍ରୀସମୂହ । ଗୋପ ସ୍ତ୍ରୀମାନେ ଏକମେଳ ହୋଇ କୃଷ୍ଣ ଦର୍ଶନ କଲେ ଏବଂ ଯାଇ ରାଧାଙ୍କୁ କହୁଲେ ।

୨୩ । କୁନ୍ଦଲତା—ଗୋପ ସ୍ତ୍ରୀ ବିଶେଷ ।

୨୪ । ଶିବ—ଶୁଭ, ଭଦ୍ର, ମଙ୍ଗଳ କଥା ।

୨୫ । ଠାକୁରାଣୀ—ରାଧା । କଣ୍ଠ କୁଣ୍ଠିତ [Blunt ] ସ୍ତମ୍ଭିତ, (ବାକ୍ଷାବ୍ଲ ) ହେଲା ।

୨୬ । କଳେବରକଦମ୍ବ-ଦେହରୂପ କଦମ୍ବଫୁଲ । କୋରକତ-କୋରକ ବା କେଶର ଉଦ୍ଗତ ହେଲା । କଦମ୍ବଫୁଲରେ କେଶର ଉଦ୍ଗତ ହେଲା; ଶରୀରର ଲୋମମାନ ଠାକୁରି ଉଠିଲା । ବାମଅଙ୍ଗ ନୃତ୍ୟ କଲା, ମଙ୍ଗଳ ସୂଚନା ।

୨୮ । ପ୍ରେମା—ସଖୀ ବିଶେଷ । ପ୍ରେମଗିର—ପ୍ରେମପୂର୍ଣ୍ଣ କଥା । ଅନାକୂଳ ବିଧ୍ଧ—ପ୍ରଥମ ଦର୍ଶନ ବିଧ୍ଧ । ସମ୍ଭାର—ସାମଗ୍ରୀ, ସମୂହ ।

୩୦ । କଲ୍ୟାଣ ଥାଳ – ସୁନାର ଥାଳରେ । ସୁଧାଚୁନ—ଅମୃତ ।

୩୧ । ମଙ୍ଗଳ (ଶୁଭ) ସେମାନଙ୍କର ଅଗରେ ରହୁଲେ । କନ୍ୟା ଗୃହସମୂହ—ଯଥା, ଗୋପକନ୍ୟା, ମୁନିକନ୍ୟା, ବେଦକନ୍ୟା ଓ ଦେବକନ୍ୟା ।

୩୨ । ଅଗ୍ରସର—ଗୋପ ସ୍ତ୍ରୀ । ମଛଦାସୀ—ଧୀବର ସ୍ତ୍ରୀ । ମଛ —ମାଛ (ମଦ୍—ଜଳରେ ହୃଷ୍ଟ ହେବା + ଶ); ମଛ ବିସ୍ତାର—ମାଛ ପସରା ମେଳ ।

୩୪ । କୁମ୍ଭୀ—ହସ୍ତୀ । କୁମ୍ଭସ୍ତନା—କୁମ୍ଭପରି ସ୍ତନ ଯାହାର କୁମ୍ଭେ—କୁମ୍ଭରେ, ମାଠିଆରେ । ଜୀବନ—ଜଳ ।

୩୬ । କୁଳନକୁଳ—ଗ୍ରାମପାଳତ ନେଉଳ ।

୩୧ । ଭାନୁଦୁଲାଳୀ—ଭାନୁର ଝିଅ, ରାଧା ।

୪୦ । ଦ୍ୱୀପର ଶୁଭପାଶେ ଶୁଭ କନ୍ୟା ରହିଲେ (୫୧ ପଦ ଦେଖ) । ଯେଉଁମାନେ ମତରେ ମଙ୍ଗଳ ବନ୍ଧ କଲେ । ଦେବକନ୍ୟା ଦେବମତରେ, ମୁନିକନ୍ୟା ମୁନିମତରେ, ବେଦକନ୍ୟା ବେଦମତରେ ଓ ବ୍ରଜାଙ୍ଗନା ମାନବମତରେ ମଙ୍ଗଳବନ୍ଧ କଲେ ।

୪୪ । ନାଗବଲ୍ଲୀ ପାନ । ଲଳିତା—ଗୋପୀ ବିଶେଷ ।

୪୫ । ଅଦରଶ—ଆଦର୍ଶ, ଦର୍ପଣ । ଚନ୍ଦ୍ରାଭା—ଚନ୍ଦ୍ରପ୍ରଭା, ଗୋପୀ ବିଶେଷ, ଚନ୍ଦ୍ରଭାନୁଙ୍କ କନ୍ୟା ।

୪୬ । ବିଶାଖା—ଗୋପୀ ବିଶେଷ ।

୪୭ । କଲ୍ୟାଣକୁମ୍ଭ—ସ୍ୱର୍ଣ୍ଣକୁମ୍ଭ । ରଙ୍ଗଦେବୀ—ସଖୀବିଶେଷ,

୪୮ । ରବା—ବାଦ୍ୟଯନ୍ତ୍ର ବିଶେଷ ।

୪୯ । ସପ୍ତସ୍ୱର—ସା ର ଗା ମା ପା ଧା ନି । ବୀଣାବଚନୀ—ବୀଣା ସ୍ୱର ପରି ଯାହାର କଥା ମଧୁର ।

୫୦ । ଅନଙ୍ଗମଞ୍ଜରୀ—ଗୋପୀ ବିଶେଷ । ମଞ୍ଜରୀ—ଭ୍ରମର । କରେ ମଞ୍ଜରୀ—ଭ୍ରମର ଗୁଞ୍ଜନ କରେ । କାଳିନ୍ଦୀ—ଗୋପୀ ବିଶେଷ, ବାଦନ—ବଜାଇବା । ଖଞ୍ଜରୀ—ଖଞ୍ଜଣୀ ।

୫୧ । ରଙ୍ଗ ଭଙ୍ଗୀ—ସୁନ୍ଦର ଭାବରେ ।

୫୨ । ଘନ—ତାଳ ।

୫୩ । ମେଧା ସୁମେଧା—ଦୁଇ ଗୋପୀ । ଘନଚନ୍ଦନ—କର୍ପୂର ମିଶ୍ରିତ ଚନ୍ଦନ ।

୫୪ । କାମକଳା—ଗୋପୀ ବିଶେଷ । ପଦ୍ମଲଙ୍କା—ପଦ୍ମଡାଳ, ପଦ୍ମଫୁଲର ଗୁଞ୍ଜୁଡ଼ା । ଜୟଦେବ କୃତ୍ୟ—ଗୀତଗୋବିନ୍ଦ ।

୫୫ । ପ୍ରବୀଣ୍ଡକ—ଭ୍ରମର ।

୫୯ । ଶେଷ—ସହସ୍ର ଫଣା, ଅନନ୍ତ, ନାଗ ।

୬୬ । ଅଙ୍କଜଜ—ମୃଗ । ବାରଣ—ଦୂର । ବାରଣ—ହସ୍ତୀ, କୁମ୍ଭୀର କବଳରୁ ହସ୍ତୀକୁ ରକ୍ଷା କଲେ ।

୬୩ । ଦହନ—ଅଗ୍ନି ।

୬୪ । ତ୍ରପା—ଲଜ୍ଜା । ବସନ ଦେଇ ଦ୍ରୌପଦୀଙ୍କର ଲଜ୍ଜା ନାଶ କଲେ । ଗୋପୀମାନଙ୍କର ବସନ ନେଇ ଲଜ୍ଜା କରାଇଲେ ।

୬୫ । ବଳିକି ପାତାଳକୁ ନେଲେ । ରତ୍ନାକର (ସମୁଦ୍ର)ମଧ୍ୟରେ ଭୁବନ (ବାସ) କଲେ ।

୬୬ । ଶିବଙ୍କୁ ବିଷପାନ କରାଇଲେ—ସମୁଦ୍ର ମନ୍ଥନବେଳେ ବିଷ ଜାତ ହେବାରୁ ବିଷ୍ଣୁ ଛଳନା କରି ତାହା ଶିବଙ୍କୁ ପାନ କରାଇଲେ, ତେଣୁ ଶିବଙ୍କ କଣ୍ଠ ନୀଳ ପଡ଼ିଗଲା ।

୬୭ । ଇନ୍ଦ୍ର—ବିବାଦରେ ଗୋବର୍ଦ୍ଧନ ଗିରି ଟେକିଲେ, ରାମ ଅବତାରରେ ଗିରିଦ୍ୱାରା ସମୁଦ୍ର ବାନ୍ଧିଲେ ।

୬୯ । ହିରଣ୍ୟ—ହିରଣ୍ୟ ଅସୁର । ହିରଣ୍ୟ—ସୁନା । କିରାତ —ଶବର । ଶବରଣୀକୁ ସୁନା ଦେଲେ ।

୭୦ । ଦଧିଜ—ଲକ୍ଷ୍ମୀ । ତାଣ୍ଡବ—ନୃତ୍ୟ ।

୭୧ । ହରିଚନ୍ଦନ—କୁଙ୍କୁମ । କୁବୁଜାର କୁଜ ଉଜ ( ହରଣ ) କଲେ ।

୭୨ । ଜରାସନ୍ଧର ବନ୍ଦୀଘରୁ ରାଜାମାନଙ୍କୁ ଉଦ୍ଧାର କଲେ । କଦମ୍ବ—ସମୂହ ।

୭୩ । କରେ ( ହସ୍ତରେ ) କରିଦ୍ୱିଜ ( ହସ୍ତୀର ଦାନ୍ତ ) ଉପାଡ଼ି ଧରି କରିପାଳରେ ( କରିପାଳକୁ ) କପାଳରେ ମାରି ବିନାଶ କଲେ ।

୨୪ । କଥାପ୍ରସଙ୍ଗ—କଥାର ବିଷୟ (କଲେ) । ଦମ୍ଭା କଥା-ପ୍ରସଙ୍ଗ—ବିଷବୈଦ୍ୟ ଅର୍ଥାତ୍ କୃଷ୍ଣ କଥାକୁ ବିଷବୈଦ୍ୟ କଲେ, କାଳ-ରୂପକ ରୋଗ ଅଙ୍ଗ ଛୁଇଁ ପାରେ ନାହିଁ । ଅଥବା, କଥାପ୍ରସଙ୍ଗ—ବାତୁଳ, କୃଷ୍ଣ କଥାକୁ ସର୍ବଦା ତୁଣ୍ଡରେ ନେଲେ ।

୨୫ । ଦରଅରୁ—ଷଣ୍ଢଚକ୍ର ।



## ଚତୁର୍ଥ ଛାନ୍ଦ

୧ । ଅନୁକୂଳ—ଅନୁକୂଳ ଯାତ୍ରା ।

୨ । ବୃଷଦଂଶ—ବିରାଡ଼ି । ମୃଷଧୂଳ—ମୂଷଣଦ । ଅନଙ୍ଗ—ଆକାଶ । କାକୋଦର—ସର୍ପ । ଗଢ଼କରେ—ରଙ୍ଗିଯାଏ । ଶୀଘ୍ରଗଢ଼—ଦ୍ରୁତବେଗରେ । ଦକ୍ଷ—ଦକ୍ଷିଣ, ଶ୍ରେଷ୍ଠକମ ।

୪ । କାମଧନୁଲ୍ଲତା—କାମଦେବ ଯେ ଅନଙ୍ଗର ଧନୁକୁ ବଳ ମୋଦ୍ଦାମୁ । ଶମ୍ବରବାଲୀ—ଅପ୍ସରା । ଯୋଗୀ ଯୋଗଭଙ୍ଗ—ଯୋଗୀ-ମାନଙ୍କର ଯୋଗ ଭାଙ୍ଗିବା ।

୫ । ସୁମନେ—ଫୁଲରେ । ଅଭ୍ର—ଦୀପ୍ତିମାନ୍ । ଗର୍ଭକ—ଖୋସାର ଫୁଲମାଳ । କବରୀ—ଖୋସା । ପ୍ରକୋଷ୍ଠ—ଖୋସାର କୋଠରୀ କୋଠରୀ ପରି ଦେଖାଉଥିବା ବିଭାଗ ।

୬ । ନାଗବଲ୍ଲୀ ଭଙ୍ଗ—ପାନଭଙ୍ଗ ।

୭ । ଭୁଜଙ୍ଗ—ସ୍ୱର୍ଣ୍ଣ ଅଳଙ୍କାର ବିଶେଷ । ଗୋପୀବନ୍ଧୁ—ବିଦ୍ରୁମ । କଟକ—ହସ୍ତୀର ଗଣ୍ଡଦେଶ (ଏଠାରେ) ସାଧାରଣ ଗଣ୍ଡ ଅର୍ଥରେ ବ୍ୟବହୃତ । କଣ୍ଠମଣି—ଗଜମୋତି ।

୮ । ତାଟଙ୍କ ଭ୍ରମର—ତାଟଙ୍କ (କର୍ଣ୍ଣଭୂଷଣ) ରୂପକ ଭ୍ରମରୀ । ଏଠାରେ କବିକଳ୍ପନା ଅତି ବିଚିତ୍ର :—ଭ୍ରମରୀ ପୁଷ୍ପ ଭ୍ରମରେ କାନକୁ

ତାଙ୍କରୂପେ ଅଣସ୍ତ କରନ୍ତି । ସେହି କାଳରେ ଲାବଣ୍ୟ, ମଧୁ ସମସ୍ତ ବର୍ଦ୍ଧିତ । ଅଣ୍ଡାସା—ଗୋପ ସ୍ତ୍ରୀ । ବାରନାରୀ—ବେଶ୍ୟା ।

୧୦ । କ୍ଷୀରୋଦନନ୍ଦନୀ—କ୍ଷୀର ସମୁଦ୍ରର ଝିଅ, ଲକ୍ଷ୍ମୀ । ରତ୍ନ—କାମଦେବଙ୍କ ସ୍ତ୍ରୀ । ଭାବାଜୀ—ବଳ୍କଶ୍ରୀ ଭାମିନୀ ଅର୍ଥରେ ବ୍ୟବହୃତ ।

୧୧ । କଟାକ୍ଷରେ ସ୍ତମ୍ଭନ ଓ ମୋହନ କରିବା ଶକ୍ତି ବା ମନ୍ତ୍ର ଋଷି । ମାୟାନାରୀ—କପଟରେ ନାରୀ-ରୂପଧାରୀ ଅସୁର ।

୧୨ । ବ୍ରଜରାଜପୁରୀ—ବ୍ରଜପୁରର (ଗୋପର) ରାଜା ନନ୍ଦଙ୍କର ଗୃହ ।

୧୪ । ସ୍ୱାରୁ—ଯଶୋଦା । କହୁକ କଥା—ପ୍ରୀତିପ୍ରମୁଖ କଥା । ମହାମେରୁ—ଅତ୍ୟନ୍ତ ବଳୀୟାନ୍, ଶ୍ରୀକୃଷ୍ଣ । କାଶୀଶ—ଶିବଙ୍କ । ଅଶୀ—ବର । କର୍ମକୁ—ଶିବଙ୍କ ବର ଦେଇଥିବା ଫଳକୁ ( ବିସ୍ତୃତ ବିବରଣ ସକାଶେ ୩ୟ ଛାନ୍ଦ ୬୬ ପଦର ଟୀକା ଦେଖ ) । ଶମ୍ବରୀ—ଅସୁରୀ । ଜୀବାର—ଅଜଣା । କି ଜୀବାର—ତାଙ୍କୁ କି ଅଜଣା ? ଖେଡ଼ଘର—ଖେଳଘର ।

୧୫ । ସାରଙ୍ଗ—ସ୍ତନ । ସାରଙ୍ଗରେ—ପୃଥିବୀରେ । "ସାରଙ୍ଗଃ କର୍ପୂରେ ଚନ୍ଦ୍ରେ ଭୃଙ୍ଗେ କାମେ ମତଙ୍ଗଜେ" (ଶବ୍ଦମାଳା) ।

୧୬ । କୃଷ୍ଣ ଅରାତିକୁ—କୃଷ୍ଣଙ୍କ ଶତ୍ରୁ ହୋଇଥିବା ଯୋଗୁଁ ।

୧୭ । ଚଉଖଳ—ବନାପନା । କପିଳା—ପିଙ୍ଗଳା ଗାଈ ।

୧୮ । ଘନ—କସ୍ତୁରୀ । ଘନଲୋକ—ଅକାଶର ଯେଉଁ ଭାଗରେ ମେଘ ଗମନାଗମନ କରେ ( ଅକାଶ ) । ଶକଟା—ଶକଟାସୁର ।

୧୯ । ତୃଣାବର୍ତ୍ତ—ତୃଣାସୁର । କପଟକୁ ( କପଟୀ ଅସୁରକୁ ) କୃଷ୍ଣ କଲେ—"ଶଠେ ଶାଠ୍ୟ" ବିଧାନ କଲେ । ବନମାଳୀଶ୍ରେଷ୍ଠ—ଋଷିଶ୍ରେଷ୍ଠ ( ଗର୍ଗ ) ।

୨୦ । ଋଷି ରାମକୃଷ୍ଣ ନାମ ଦେବାରୁ ସେହି ନାମ ଭବ ଏଠାରେ ଗ୍ରହଣ କଲେ । ସୁତରାଂ ଭବ କୃତାର୍ଥ ହେଲେ ! ଶବ୍ଦଗ୍ରହ—କର୍ଣ୍ଣ ।

୨୧ । ବନ୍ଦୀ—ଭାଟ, ସ୍ତୁତିଗାୟକ । ଜଏକାର—ସ୍ତୁତିଗାନ ବନ୍ଦୀଙ୍କୁ ଉଦ୍ଧାର କଲେ—କାରାରୁ ମୁକ୍ତ କଲେ । ଅପୂଜା ଦେବତା—ଯେଉଁ ଦେବତା କେବେ ପୂଜା ପାନ୍ତି ନାହିଁ । ସାଧାରଣତଃ ଅନେକ ଛୋଟ ଛୋଟ ମନ୍ଦିରରେ ପୂଜା ହୁଏ ନାହିଁ; କିନ୍ତୁ କୃଷ୍ଣଙ୍କ ଜନ୍ମରେ ପୂଜାର ଏତେ ଆଧିକ୍ୟ ହୋଇଥିଲା ଯେ କୌଣସି ମନ୍ଦିର ଛାଡ଼ ହୋଇ ନ ଥିଲା ।

୨୨ । ପୂର୍ଣ୍ଣିମାସୀ—ଦୁର୍ଗା । କଞ୍ଜକରେ—ପଦ୍ମକରେ, କର-ପଦ୍ମରେ । ଲଟା—ଡାଲା, ଗୃଟୁଡ଼ା । କଞ୍ଜଲଟା—ପଦ୍ମପୂର୍ଣ୍ଣ ଡାଲା ।

୨୩ । କମଳ—ଜଳ । ଷେମ—ମଙ୍ଗଳ ।

୨୪ । ବାସରେ—ଗୃହକୁ । କାର୍ପୂଣ୍ୟ—ବଳାତ, ଦାନ । ପୁହାଣିବିଧାନ—ପୁଷ୍ପବର୍ଗର ବନ୍ଦାପନା ବିଧି ।

୨୫ । କାଶୀ—ଶିବ ।

୨୬ । ହର ( ବ୍ରହ୍ମା ) ହର ( ଶିବ ) ହରିକୁଳମଣି—( ସର୍ପକୁଳ ଶ୍ରେଷ୍ଠ ଯେ ଅନନ୍ତ ) ହରି ମଣି ( ହରି ଯେ ବିଷ୍ଣୁ ରୂପକ ମଣିକୁ ) ଚିନ୍ତା କଲେ । ହରିମଣି ( ହରିରୂପକ ମଣିକୁ ) ଆଣି କଣ୍ଠଦେଶରେ କଲେ ( ରଖିଲେ ) କାଳମଣି ( ଯମ ) କ ଭରି ପାଇବ । ଅଦ୍ଧିତେ (ଅଳ୍ପରେ) କାଳ ( ମୃତ୍ୟୁ ) ଜିଣି କୈବଲ୍ୟ ( ମୁକ୍ତି ) ଲଭିବ ।

୨୯ । ଧରାଧର ( ଶ୍ରୀକୃଷ୍ଣ ) ଧରା ( ପର୍ବତ ) ଧରି ପବଧର ( ଇନ୍ଦ୍ର )ଙ୍କର ଗର୍ବ ଚୂର କଲେ । ପାଷାଣରେ ପାଦ ଦେଇ ନର-କଳେବର ( ଅହଲ୍ୟା ) କଲେ । କମ୍ବୁଧର—ଶଙ୍ଖହସ୍ତ । କମ୍ବୁକଣ୍ଠକ—ଶଙ୍ଖଛେଦ ( ପୁତ୍ର ) ।

୩୦ । ସୌହୃତ—"ସୌହୃତୋ ବାନରେ ବଣାଗ୍ରେ ମଯ୍ୟେ ବାଣେ ମୃଗେ ମୀନେ" ( ଶବ୍ଦମାଳା ) । ଯେ କାନ୍ତା ବୋଲରେ କରେ ସୌହୃତ ( ଶର ) ଯେଣ୍ଣ କପଃ ସୌହୃତ ( ମାୟାମୃଗ )କୁ ସୌହୃତରେ ( ଶରଦ୍ୱାରା ) ହତ କଲେ ।



## ପଞ୍ଚମ ଛାନ୍ଦ

୧ । କଞ୍ଜସମ୍ଭବ—ବ୍ରହ୍ମା । ଭବ—ଶିବ । କାଳଦଣ୍ଡ—ଯମଦଣ୍ଡ ।

୨ । ଜନ୍ମ କୃତାର୍ଥ ହେବ । ମୁକ୍ତିରେ ( ଭ୍ରମର ) କବେତକ ( ଗୃହ ) ହେବ । କପର୍ଦ୍ଦିଧାର୍ଯ୍ୟ—ଶିବଙ୍କଦ୍ୱାରା ଧୃତ । ହର—ଚନ୍ଦ୍ର । ହରଭାନୁ—ଚନ୍ଦ୍ରକିରଣ ।

୩ । ମଞ୍ଜୀର—ନୂପୁର । ପଞ୍ଜର—ପିଞ୍ଜରା । ଫଳାଶନ—ଶୁଆ ।

୪ । ପକ୍ଷାଦର—ପୂର୍ଣ୍ଣିମାଚନ୍ଦ୍ର ।

୫ । କଳାକରରେ ( ଚନ୍ଦ୍ରରେ ) ଚଢ଼ ( କଳଙ୍କ ) ଅଛି, ସେହି କଳଙ୍କକୁ ଦେଖି ଶ୍ରୀ ମୁଖରୁ ଚଢ଼ । ଅର୍ଥାତ୍ ଚନ୍ଦରେ ଯେବେ କଳଙ୍କ ନ ଥାଆନ୍ତା. କୃଷ୍ଣଙ୍କର ଶ୍ରୀମୁଖ ଚଢ଼ି ହୁଅନ୍ତା ନାହିଁ । ଚନ୍ଦ୍ର ଓ କୃଷ୍ଣମୁଖ ମଧ୍ୟରେ ଚନ୍ଦ୍ରର କଳଙ୍କହିଁ ଛଡ଼ା ଅଛି ପ୍ରଭେଦ ନାହିଁ । ସୁତରାଂ, କୃଷ୍ଣଙ୍କର ମୁଖ ଚନ୍ଦ୍ରଠାରୁ ମଧ୍ୟ ସୁନ୍ଦର, ଏହା ତାଙ୍କର ଉତ୍କର୍ଷଜ୍ଞାପକ । ଚନ୍ଦ୍ରର ଶ୍ରୀ ମାନ ହେଲା । ଅହୋ, ଚନ୍ଦ୍ର ତ ମୁଖସଙ୍ଗେ ସମାନ ନୁହେ । ତେବେ ଚନ୍ଦ୍ରର କାନ୍ତି ତ ଅତି ଉଜ୍ଜ୍ୱଳ; କୃଷ୍ଣଙ୍କର କାନ୍ତି ସେହି ଅଂଶରେ ସମାନ ହୋଇପାରିବ ନାହିଁ ! ଅଃ, ଏହା କେଉଁ କଥା । କାହିଁକି ? ଚନ୍ଦ୍ରଙ୍କର କଳାର ଯେ ହ୍ରାସ ବୃଦ୍ଧି ହୁଏ, ଏହାଙ୍କର ତ କ୍ଷୟ ହୁଏ ନାହିଁ । ଏ ଯେ ପୂର୍ଣ୍ଣ କଳାକର ।

୬ । ଅମଳ (ଶୁଭ୍ର, ମଳଶୂନ୍ୟ) କଳାକମଳ (ପଦ୍ମ) ଯେବେ ମାଳ ମାଳ କର ଏକାଠି କରବ, କଳେବରକୁ ତ ସମ ହେବ ନାହିଁ । ପଦ୍ମ ମନକୁ ସନ୍ତୁଷ୍ଟ କରେ, କନ୍ତୁ ମୋହନ (ମନ୍ତ୍ରମୁଗ୍ଧ) ତ କରେ ନାହିଁ । ଲୋକେ ତ ପଦ୍ମକୁ ଛଡ଼ପାରନ୍ତ, କନ୍ତୁ କୃଷ୍ଣଙ୍କ ଶଗ୍ରର "ବସର୍ଜନ କର ହୁଏ ନାହିଁ ।" ଏ ଯେ କାମର ମାଦକ (ନଶା) ସ୍ଥଳ, ପଦ୍ମ ତ କାମର ମାଦକ ସ୍ଥଳ ନୁହେ ।

୭ । କଣ୍ଟନଛବ—କାମର ଘୋଗ୍ଭକୁ ।

୮ । କର ହୁଦେ ମାରନ୍ତ ଧାଇଁ—ଯେତେବେଳେ ଶଗ୍ରର ଧୂଳରେ ଧୂସର ହୋଇଯାଏ, ମା ଧାଇଁ ଯାଇ ହୃଦରେ କର (ହାତ) ମାର ଦଅନ୍ତ, ଧୂଳ ଝାଡ଼ ଦଅନ୍ତ ।

୧୦ । ବ୍ରଜପୌଗଣ୍ଡ—(ପାଞ୍ଚ ବର୍ଷରୁ ଷୋଳ ବର୍ଷ ପର୍ଯ୍ୟନ୍ତ ପୌଗଣ୍ଡାବସ୍ଥା) ସଙ୍ଗୀ ଗୌଡ଼ ଟୋକାମାନେ । ଅଳୀ—ଗୋପସ୍ତ୍ରୀମାନେ ନ୍ରୁଛସିବା—ବାତ୍ସଲ୍ୟରେ ମୁଗ୍ଧ ହେବା । ଖେଳ ଖେଳ ବାପ ଦେହକୁ ଏତେ ଶ୍ରମ କରୁଛୁ କାହିଁକ ?

୧୧ । ସାରଙ୍ଗେ—କୋଳରେ । ପରରମ୍ଭ—ଥାଲଙ୍ଗନ । ନୀହାର—କାକର । ଚନ୍ଦ୍ରଶୀତଳ—ଚନ୍ଦ୍ରର ଶୈତଲ୍ୟକୁ । ଦଧିଜ—ଲହୁଣୀ । କୃଷ୍ଣଙ୍କର ଅଙ୍ଗ ଗୋପୀମାନଙ୍କୁ ନୀହାରଠାରୁ, ଚନ୍ଦ୍ରର ଶୈତଲ୍ୟଠାରୁ, ଲହୁଣୀଠାରୁ କୋମଳ ଓ ଶୀତଳ ବୋଧ ହେଉଥିଲା ।

୧୨ । ମାତାତହୁଁ—ମାତାଙ୍କଠାରେ ।

୧୩ । କଳହପ୍ରିୟ—ନାରଦ । କକୁଭ—ଅର୍ଜୁନବୃକ୍ଷ । କୁବେରଙ୍କ ଦୁଇ ପୁତ୍ର (୧) ମଣିଗ୍ରୀବ ବା ବର୍ଣ୍ଣବନ୍ତ ଓ (୨) ନଳକୁବର ବା ମୟୂରଧ୍ୱଜ ନାରଦଙ୍କ ଅଭଶାପରେ ଗୋପରେ ଅର୍ଜୁନ ବୃକ୍ଷ ହୋଇଥିଲେ ।

୨୦ । ପଢ଼ଅ—ବନ୍ଦ, ପୂଜା ବନ୍ଦ କଲେ ।

୨୪ । ସାରଙ୍ଗ—ମୃଗ । ପାଣି—ଜଳ, ହସ୍ତ । ପୟୋଧରେ—କ୍ଷୀର, ସ୍ତନ ।

୨୫ । ଜବଦ୍ଧବନ୍ଧେ—ଜଳବନ୍ଧଦ୍ୱାରା । ବାରି—ଜଳ । ବାର —ବାରଣ କର ।

୨୬ । କିଶୋର—୧୧ରୁ ୧୫ ବର୍ଷ । ମୂଳବନ୍ତ ମୂଳଛା ଦେବେ ।

୨୭ । କ୍ରତୁଧ୍ୱଂସନଅରି—(ଦକ୍ଷଯଜ୍ଞ ନାଶକାରୀ) ଶିବଙ୍କର ଶତ୍ରୁ (କାମ) କରୁ—ହସ୍ତରୁ । ଛଡ଼କା—ଛଡ଼ା ହୋଇଥିବା ।

୨୮ । ସୁରତରୁ—କଳ୍ପତରୁ । ସ୍ମୃତ କଲେ କେଶବ କାର୍ଯ୍ୟରେ ବତ୍ର ଲାଗେ ।

୨୯ । ଦଧିଜ ଲବଣୀ । କାଲକେୟ—ଅସୁର (କାଲକାଗର୍ଭ ସମ୍ଭୂତ ଷଷ୍ଟିସହସ୍ର ଅସୁର) ।

୩୦ । କମଳେ—ପଦ୍ମରେ । ହରି—ସର୍ପ । ବେଢ଼—ବେଢ଼ିଥିବା । କୁନ୍ତଳ—କୁଞ୍ଚକୁନ୍ତଳ । କବରୀ—କେଶପାଶ । କଲ୍ଲୋଳ ବଲ୍ଲିବସ୍ତ —ତରଙ୍ଗାକାର ଅଗ୍ନି ଶିଖା । କୁନ୍ତଳକବରୀ କପୋଳ ଉପରେ ରହି ଅଗ୍ନି ଉପରେ ତରଙ୍ଗାୟିତ ଶିଖାପରି ହୋଇଅଛି ।

୩୧ । ତାଣ୍ଡବ—ନୃତ୍ୟ ।

୩୨ । କାଲକେୟ ସାନ ମଇଡ଼ କାଲକେୟ (ଅସୁର) ଙ୍କ ସାନ (କୁମ୍ଭାସୁର), ତାହାର ମଇଡ଼ କୁମ୍ଭ ଅର୍ଥାତ୍ ଘଟ ।

୩୩ । କୁହୁର—ଚୂଲା । ସାନୁମାନ ପର୍ବତ । କୃଶାନୁସ୍ଫୁଲିଙ୍ଗ —ଅଗ୍ନିକଣା ।

୩୪ । ମାତୃଗର୍ଭର ହେତୁ—ମାତୃଗର୍ଭରେ ଜୀବ ବିକଳରେ ଈଶ୍ୱରଙ୍କୁ ଉଦ୍ଧାର ସକାଶେ ଡାକେ, ସେତେବେଳେ ତାହାର ହସ୍ତ ଥାଏ (ଭାଗବତ—ଜଗନ୍ନାଥ ଦାସ) ।

୪୦ । କୁଣ୍ଠିତ—ସ୍ତମ୍ଭିତ, ବାଣୀଶକ୍ତିହୀନ ଅତଏବ ବାକ୍ୟ ଫୁଟଇ ନାହିଁ ।

୪୧ । କାଳନ୍ଦୀ—ଯମୁନା । ପାପହାରୀ—ଗଙ୍ଗା । ବେନି ବାରି—ଦୁଇ ଚକ୍ଷୁର ଧାର । ଉପମା :—କାୟା=ସଗରସୁତ; କାମ=କପିଳ-ଋଷିଙ୍କ ନେତ୍ର; ଦୁଇ ଚକ୍ଷୁର ଦୁଇ ଧାର=ଗଙ୍ଗା ଓ ଯମୁନା । ସଗରସୁତ-ମାନଙ୍କର ଅଶ୍ୱ ଅନୁସନ୍ଧାନ, କପିଳଙ୍କ ଶାପରେ ସେମାନଙ୍କର ଭସ୍ମୀଭୂତ ହେବା ଏବଂ ସେମାନଙ୍କର ଉଦ୍ଧାରାର୍ଥ ଭଗୀରଥଙ୍କର ଗଙ୍ଗା ଆନୟନ ରାମାୟଣରେ ଦ୍ରଷ୍ଟବ୍ୟ ।

୪୨ । କାମପାଳଙ୍କ ପ୍ରିୟ ପୁଷ୍ପ—କଦମ୍ବ । କାମପାଳ—ହଳଧର । କମଳ—ପଦ୍ମ । ବୃଜିନ—ପାପ ।

## ଷଷ୍ଠ ଛାନ୍ଦ

୨ । ତୁଳନା :—ହୃଦଚକ୍ର=ପଦ୍ମ । କୃଷ୍ଣ ନାମ=ମିତ୍ର ବା ସୂର୍ଯ୍ୟ ।

୩ । କୁନ୍ଦନ—ସୁବର୍ଣ୍ଣ ଅଳଙ୍କାର । ତାରା ମଣି । କୃତ୍ତିବାସଧାରୀ—କୃତ୍ତି (ଗଜାସୁର)ର ଚର୍ମରୂପକ ବାସଧାରଣକାରୀ ଯେ ଶିବ । ହର—ଶିବ । ତାଙ୍କ ଅଙ୍କରେ (କୋଳରେ) ନାରୀ (ପାର୍ବତୀ) । ଶିବଙ୍କ କୋଳରେ ପାର୍ବତୀଙ୍କ ଥିବା ଶୋଭାକୁ ବସଣୀ ନିନ୍ଦା କରୁଛି ।

୪ । ବଚସୀ—ବନସିକଣ୍ଠା । ରାଜୀବ ଯେ ପଦ୍ମର ଭେଦ କରୁଛି, ଅର୍ଥାତ୍ ଭ୍ରମ ଜନ୍ମାଉଛି ।

୫ । କୁନ୍ଦନ—କୁନ୍ଦା ହୋଇଥିବା । ମଞ୍ଜୀର—ନୂପୁର । ରସପୂର—ରସରେ ପୂର୍ଣ୍ଣ ।

୬ । କଣ୍ଠରପୁଳକ—ଫିଦ୍‌ବକ୍ଷ । ବାଳାମାନଙ୍କୁ ନବଚନ୍ଦ୍ର ଭ୍ରମ କରେ (ଭୁଲାଏ) । ପରସଙ୍ଗ—ଅଲଙ୍ଘନ । ଶୃଙ୍ଖଳା—କ୍ଷୁଦ୍ରଘଣ୍ଟିକା ।

୭ । କଂସାରିତ—ଏଠାରେ ବଳରାମ । ସୁରଲତା—କଳ୍ପଲତା । କଳ୍ପଲତା ଦୁଇ ଦୁଇନ୍ନ ହୋଇ ବେଦ ଉପରେ ଖେଳୁଛନ୍ତି କ (ଉତ୍ପ୍ରେକ୍ଷା)? କଳ୍ପଲତାଦ୍ୱୟ ହେଲେ କୃଷ୍ଣ ଓ ବଳରାମ । ବେଦ ହେଲା ପୃଥିବୀ (ବେଦ ତ୍ରିଗୁଣ, ପୃଥିବୀ ମଧ୍ୟ ତ୍ରିଗୁଣ । ବେଦ ସାହାଯ୍ୟରେ କଳ୍ପଲତା (କୃଷ୍ଣ) ଲବ୍ଧ ହୁଅନ୍ତି । କୃଷ୍ଣ ବେଦର ଆତ୍ମାସ୍ୱରୂପ ।

ନାଗରମଣି—ନାଗରମାନଙ୍କର ଶ୍ରେଷ୍ଠ । ନାଗ (ହସ୍ତୀ)ର ମଣି, ହସ୍ତୀ ଦେହରୁ ଲବ୍ଧ ମଣି । ନାଗନାକମଣି—ନାକସଲଗ୍ନଗଜମୁକ୍ତା ।

୧୭ । ପାବଂଗୀ— ଗୋପୀ ।

୧୮ । କମ୍ବୁଧର—ଶଙ୍ଖଧର, ବିଷ୍ଣୁ । କୁଣ୍ଡଳୀ—ସର୍ପ ।

୧୯ । ସାରଙ୍ଗ—ଧନୁ । କାମସାରଙ୍ଗ—କାମଙ୍କର ଧନୁ ।

୨୦ । ପଶୁରଜ୍ଜୁ—ପଶୁ ବାନ୍ଧିବା ଦଉଡ଼ି ।

୨୪ । ତାଲବନପାଳ—ଧେନୁକାସୁର ।

୨୫ । କାଦମ୍ବରୀ—ମଦ୍ୟବିଶେଷ । ରୁ ଅମର ଯାହାର ସେ କଦମ୍ବର (ବଳରାମ) [କଦମ୍ବର + ଅ + ଈ] ।

୨୬ । କୃଷ୍ଣ—ଅଗ୍ନି । "ଇଷିକା ବନ" ଅଗ୍ନିରେ ପୋଡ଼ି ଯାଉ-ଥିବା ବେଳେ ଗୋପ ଓ ଧେନୁମାନେ ଦଗ୍ଧପ୍ରାୟ ହୋଇ ଶ୍ରୀକୃଷ୍ଣଙ୍କୁ ଡାକିଲେ । କୃଷ୍ଣଙ୍କୁ [ଅଗ୍ନିକୁ] କୃଷ୍ଣ [ଶ୍ରୀକୃଷ୍ଣ] ପାନ କରିଥିଲେ ଏବଂ ଗୋପ ଓ ଧେନୁମାନଙ୍କୁ ଉଦ୍ଧାର କରି ଗୋପୀମାନଙ୍କ ମନ ତୋଷ କରିଥିଲେ । ଏରଣ୍ଡବନରେ ଅଗ୍ନି ଲାଗି ବ୍ରଜବାସୀମାନଙ୍କୁ ସ୍ୱିର ଅଜୁ ଘେର ଦଗ୍ଧ କରିବାକୁ ଆରମ୍ଭ କଲା । କୃଷ୍ଣ ସେହି ଅଗ୍ନି ପାନ କରିଥିଲେ ।

୨୭ । କଞ୍ଜସମ୍ଭବରେ—ବ୍ରହ୍ମାଙ୍କୁ । ଗୋବର୍ଦ୍ଧନ—ଗୋବର୍ଦ୍ଧନ ଗିରି । ଗୋବର୍ଦ୍ଧନ—ଶ୍ରୀକୃଷ୍ଣ ।

୨୮ । କାକୋଦର (ସର୍ପ) ଶିରଧର—ସର୍ପଶିରରେ ଯାହା ଥାଏ (ମଣି); ମଣିକୁ ଯେ ଧାରଣ କରିଅଛି ସେ କାକୋଦରଶିରଧରଧର

ଅର୍ଥାତ୍ ବଳରାମ । ବଳରାମ ଅଗେ, ପଛେ ଶ୍ରୀକୃଷ୍ଣ ଚନ୍ଦ୍ରଚନ୍ଦ୍ର । ଗୋବନ୍ଦ=ଶ୍ରୀକୃଷ୍ଣ । ଗୋବୃନ୍ଦ=ଗୋପବାଳକମାନେ । ଗୋବନ୍ଦ= ଗୋରୁଧୂଳ ।

୨୯ । ପାପନାଶିନୀ—ତୁଳସୀ । ତୃଷେ (ଜଳେ)ଶଯ୍ୟ—ପଦ୍ମ । ବନମାଳୀ—ହଅଲୀ (ମୁକ୍ତାବଳୀ) ।

୩୦ । ସମ୍ବର—ମେଘ । କେଶୀକଳାପ—ମୟୂରପୁଚ୍ଛ । ଷଡ଼-ସାରଙ୍ଗ—ଇନ୍ଦ୍ରଧନୁ । କେଶୀକଳାପ ବହୁ ରଙ୍ଗର ଥାଏ, ଇନ୍ଦ୍ରଧନୁ ମଧ୍ୟ ଅନେକ ରଙ୍ଗ ଦେଖାଥାଏ, ସୁତରାଂ ଉଭୟର ତୁଳନା । କାମକଲ୍ଲୋଳରେ—କାମଲହରୀରେ ।

୩୨ । କଳାନିଧାନୀ—କଳାବତୀ ।

୩୬ । କୁମୁଦ—କଇଁ । ସାରଙ୍ଗ—ଚନ୍ଦ୍ର ।

୩୭ । କଞ୍ଜମୁଦ୍ରତରେ—ପଦ୍ମ ବୁଜି ହେବାବେଳେ,ସୂର୍ଯ୍ୟାସ୍ତରେ ।

---

## ସପ୍ତମ ଛାନ୍ଦ

୧ । ହର—ଚନ୍ଦ୍ର ।

୩ । ଶୃଙ୍ଖଳା—କଟିକିଙ୍କିଣୀ । ହରିଚନ୍ଦନ—କଳ୍ପବୃକ୍ଷ, ଅଥବା କୁଙ୍କୁମ ।

୪ । ରଙ୍ଗାଜୀବନାଶ୍ରୀ—ଚନ୍ଦ୍ରକର ସ୍ତ୍ରୀ । ଅଷ୍ଟାପଦ—ସୁବର୍ଣ୍ଣ । ଜରତୀ—ବୃଦ୍ଧା, ଦୂତୀ ।

୬ । କମଠ୍ଠି—ଚଳବୁ । କମଳ—ଜଳ । ହଂହେଷଣର—ନାଗରଶ୍ରେଷ୍ଠ । ଶୃଙ୍ଖଧାନ—ରତ୍ତି (୪ ଧାନ=୧ ରତି ) ।

୮ । କେଳତ—ରତ ।

୯ । ଉପମା :—ଜଳାଶୟର=ମେଘ । ମୟୂରଚୂଳ=ଇନ୍ଦ୍ରଧନୁ । ହାର (ମୁକ୍ତାହାର)=ବଳାକାଶ୍ରେଣୀ (ବକ ପଂକ୍ତି) । କନକ ବସନ=ବିଜୁଳି ।

୧୦ । ଘନ—ଜଳ । ଶୁକବାକ—ମୟୂର ।

୧୧ । ଝଳ—ଦୀପ୍ତ । କଞ୍ଜନାଥ—ସୂର୍ଯ୍ୟ । ଜ୍ୟୋତିରଙ୍ଗଣ—ଜୁଳୁଜୁଳିଆ ପୋକ ।

୧୨ । କାନ୍ତାକଦମ୍ବ—ସ୍ତ୍ରୀସମୂହ ।

୧୪ । ଭାମିନୀଜାଲ—ସ୍ତ୍ରୀସମୂହ ।

୧୫ । କଣ୍ଠୁର—ବାଇଡଙ୍କ ।

୧୬ । କୁମ୍ଭ—ସ୍ତନ, ଘଟ । ପାଣି—ହାତ, ଜଳ ।

୧୭ । ଦର—ଭୟ, ଶଙ୍ଖ ।

୧୯ । ସାରଙ୍ଗ—ଚନ୍ଦ୍ର, ସ୍ତନ, କାମ, ଶର ।

୨୨ । ସାରଙ୍ଗଧର—ପଦ୍ମଧାରଣକାରୀ । ସାରଙ୍ଗଶର—ଧନୁଃଶର । ଅଜ—ବ୍ରହ୍ମା ।

୨୩ । କଲ୍ୟାଣଂ ଦେହିମେ ମଙ୍ଗଳେ (ହଳାୟୁଧ) । କଞ୍ଜନ—କାମ । ୨୩ଶରୁ ୨୭ଶ ପଦ ପର୍ଯ୍ୟନ୍ତ କବି ଋତୁପରିଣତ ବର୍ଣ୍ଣନା କରିଛନ୍ତି ।

୨୪ । ଚଳଦଳ—ଅଶ୍ୱତ୍ଥ । କୃଷ୍ଣମୁଖ—କଳାବର୍ଣ୍ଣର ମୁହଁ । କମଳ—ପଦ୍ମ ।

୨୫ । ଧାତ୍ରୀ—ଅଁଳା । ସାରଙ୍ଗ—ଧନୁ । ଶିଳୀମୁଖ—ଶର । ସାୟକ—ଶର ।

୨୬ । ଶମ୍ପୂଟକ—ଶରୁଆ । ଯମ୍ବପେଟୀ—ପାଣିର ପେଣ୍ଡ, ଯଇଡ଼ ।

୨୭ । କୃପାସକ—କାଞ୍ଚୋଳି, ସ୍ତ୍ରୀ ପରିଧାନ କୁରୁତା ବିଶେଷ । କମଳଭବ (ବ୍ରହ୍ମା) ହୃଦରେ (ତାହାର ମଧ୍ୟରେ) କମଳ (ଜଳ, ସ୍ତନ୍ୟ) ନେଇ ରଖିଲେ ।

୨୮ । ଅଦରଷ—ଦର୍ପଣ ।

୨୯ । ପଙ୍କିଲଃ ଭୃଙ୍ଗେ ପଦ୍ମେ ଚ ଜନକେ ଜଳଜାତକେ ଇତ୍ୟ ଚ୍ଛିକାଣ୍ଡଶେଷଃ । ପଙ୍କିଲଂଭ—ଭୃଙ୍ଗପର । ପଙ୍କିଲକର—ପଦ୍ମ ହସ୍ତରେ ଯାହାର । ପଙ୍କିଲଶମ୍ଭୁ—ସ୍ୱର୍ଣ୍ଣ ଶିବ, ସ୍ତନ ।

୩୦ । ସାରଙ୍ଗଃ କର୍ପୂରେ ଚନ୍ଦ୍ରେ ଭୃଙ୍ଗେ କାମେ ମତଙ୍ଗଜେ ଇତ୍ୟ ଶବ୍ଦମାଳା ; ପତ୍ରାବଳ—ସ୍ତନ କପୋଳାଦରେ ପତ୍ରାବଳ ରଚନା ବା ରଞ୍ଜନ, ଚିତ୍ରୀକରଣ ।

୩୩ । ସାରଙ୍ଗ କରଣ—ଚନ୍ଦ୍ରକରଣ । ଅକର୍ମଶିଳାରୁ ବଜ (ଜଳ) ଜାତ କରେ କ ? ଅର୍ଥାତ୍ କରେନାହିଁ । ସାରଙ୍ଗମଣି—ଚନ୍ଦ୍ରମଣି, ଚନ୍ଦ୍ରକାନ୍ତମଣି । କରଣରୁ—କୃଷ୍ଣ କୀର୍ତ୍ତିରୂପ ଚନ୍ଦ୍ରର କରଣ ଲାଗି ।

୩୪ । ଉପମା :—ଭୂତ = ଶମ୍ଭୁ । ମୋଢମାଳ = ଜାହ୍ନବୀ ।

୩୫ । ଗୋପୀ କହୁଛ, ତୁମ୍ଭେ ବ୍ରଜମାନଙ୍କର ରାଜା, ତୁମ୍ଭେ କପଟ ଚୋଷ୍ଟୂର ହେବ ?

## ଅଷ୍ଟମ ଛାନ୍ଦ

୧ । କାର୍ତ୍ତସ୍ୱର—ସ୍ୱର୍ଣ୍ଣ । ମଞ୍ଜୀର—ନୂପୁର । ଝିଲ୍ଲୀ—ବାଦ୍ୟ ଯନ୍ତ୍ର ବିଶେଷ, ଗିନ୍ନି ।

୩ । ବୈରବ—କୁମୁଦ । ସାରଙ୍ଗଭାନୁ—ଚନ୍ଦ୍ରକରଣ ।

୪ । ଗୁପତ୍ତ—ଗୁପ୍ତିଅସ୍ତ୍ର । ସ୍ନେହଶାଣ ଦେଇ—ତେଲରେ ଶାଣିତ କରି ।

୫ । ଶାତକୁମ୍ଭକୁମ୍ଭ—ସ୍ୱର୍ଣ୍ଣକୁମ୍ଭ ।

କପର୍ଦ୍ଦୀଅରି—କାମ । ଭାନୁ—ଦୀପ୍ତିମାନ୍ । ଚୋହଟ . କରୁଣା ନ ହେବାରୁ କାମକୁ ଦୀପ୍ତିମାନ୍ (ତେଜ) କରୁଛି । ସାରଙ୍ଗ—ଶର, ଚାପ ।

୬ । କଲମ୍--ଶର । ଘନାଘନ—ବାୟୁ, ଅମ୍ବର । ଭୂଦେବ—ବ୍ରାହ୍ମଣ ।

୭ । କଲ୍ୟାଣ—ସୁବର୍ଣ୍ଣ । କୃଷ୍ଣ ହୃଦସାରଙ୍ଗ—କୃଷ୍ଣଙ୍କର ହୃଦରୂପକ ପଦ୍ମ ଉପରେ ସୂର୍ଯ୍ୟ କିରଣ ପଡ଼ନ୍ତା ପରି ହର (ହରଣ କଲ, ମୁଗ୍ଧ କଲ) । ହେମଧାମ—ହେମ । ତୁଷାର ର ଧାମ (ପଦ୍ମ), ଚନ୍ଦ୍ର ।

୮ । ବରଲବ୍ଧ—ଚମ୍ପକ । ଗନ୍ଧମାଦନ—କଳା ଭ୍ରମର । ଷଟ୍‌ପଦ—ଭ୍ରମର ।

୧୦ । ଦ୍ୱିଜରାଜ—ଗରୁଡ଼ । ଦ୍ୱିଜରାଜଅରାତି (ସର୍ପ)କୁ ମସ୍ତକରେ ଧାରଣ କରେ ଯେ (ଶିବ) ତାଙ୍କ ଅରାତି (କାମ) । ଶିଲୀମୁଖ—ଶର । କାମଶର ମୋତେ ଅରାତି ହେଲା । ଗର୍ଭକ—କେଶଭୂଷଣ ପୁଷ୍ପ, ଖୋସାର ମାଳ । ତ୍ରିବେଣୀ—ମଧ୍ୟାଧାର, ଖଲେଇ । ନିର୍ଗ୍ରନ୍ଥିଏ—ପ୍ରସ୍ତୁତ ହୋଇଅଛି ।

୧୧ । କାଚପାତ୍ରରେ ଜଳର ବର୍ଣ୍ଣପରି ପ୍ରତିଲୋକର ଚକ୍ଷୁକୁ ନିର୍ମଳ ମନୋହର ଦିଶୁଛି ।

୧୨ । ରମ୍ଭୋରୁ ଭୂ କନକ ରମ୍ଭା ତରୁବରେ (ସୁନାର କଦଳୀ ବୃକ୍ଷରେ) ମତ୍ତ ସାରଙ୍ଗ (ମତ୍ତ ହସ୍ତୀ) ବାନ୍ଧିବୁ । ଉତ୍ପ୍ରେକ୍ଷା । ସାରଙ୍ଗ—ରାତ୍ରି । ଚନ୍ଦ୍ରର କିରଣ ରାତ୍ରିର ଅନ୍ଧାର ଦୂର କରେ, କିନ୍ତୁ ତୋର ଆନନଚନ୍ଦ୍ର କାମଅନ୍ଧାର ଜାତ କରାଏ ।

୧୩ । ତୁଳନା :—ଦେହ—କୁନ୍ଦନ ମଣ୍ଡିରୁହ ( କୁନ୍ଦଲତା ) । ମୁଖ—କମଳ । ଚକ୍ଷୁ—ଇନ୍ଦୀବର । ଦନ୍ତ—କରକ ପୁଷ୍ପ । ଅଧର ଓଷ୍ଠ—ବନ୍ଧୁଳୀ । ନାସିକା –ତିଳ ପୁଷ୍ପ ।

୧୪ । ରଥାଙ୍ଗ—ରଥ । ବାମଦେବ—ଶିବ । ମନ୍ଦୋଦରୀ ସ୍ତ୍ରୀଶ୍ରେଣ୍ୟାଂ ଅମରଃ । ମନ୍ଦୋଦରୀ—ରେ ମନ୍ଦୋଦରୀ । ମନ୍ଦୋଦରୀ ନାୟକ—ପାର୍ବତୀ ପତି ।

